# ଶୀତ ଲହରୀ

କିଶୋରୀ ଚରଣ ଦାସ



ଫ୍ରେଣ୍ଡସ୍ ପବ୍ଲିଶର୍ସ
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ, କଟକ-୨

ଶୀତ ଲହରୀ ॥ ଲେଖକ : କିଶୋରୀ ଚରଣ ଦାସ ॥
ପ୍ରକାଶକ : ସହଦେବ ପ୍ରଧାନ ॥ ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ,
ବିନୋଦ ବିହାରୀ, କଟକ-୭୫୩୦୦୨ ॥ ପ୍ରଥମ ସଂସ୍କରଣ : ୧୯୮୬ ॥
ପ୍ରଚ୍ଛଦପଟ : ଅସିତ ମୁଖାର୍ଜି ॥ ମୁଦ୍ରଣ : କଳିଙ୍ଗ ମୁଦ୍ରଣୀ,
ନିମଚଉଡ଼ି, କଟକ-୭୫୩୦୦୨ ॥

**SITALAHARI** : Author : KISHORI CHARAN DAS :
Publisher : SAHADEV PRADHAN, FRIENDS' PUBLISHERS, Binod Behari, Cuttack-753002 (Orissa)
First Edition : 1986, Cover Design : Asit Mukherjee :
Printed at KALINGA MUDRANI, Nimchouri, Cuttack-2

**Price—Rs. 30·00**

ମୋର ସହଧର୍ମିଣୀ କୁମର ସ୍ନେହୀ ଭାଇଭଉଣୀମାନେ,

ଗୌଶୀଅପା, ପାପୁ, ଲୁନ, ବାବୁ, ଆବୁ, ଯେଉଁମାନେ ମୋର ଗପଫପକୁ ଭଲ ପାଆନ୍ତି ଏବଂ ସ୍ୱର୍ଗତଃ ଅଜୁ, ଯେ ସବୁଠାରୁ ବେଶୀ ଭଲ ପାଇଥାଆନ୍ତା ବୋଲି ମୋର ବିଶ୍ୱାସ, ତାଙ୍କର ପାଇଁ ଏଇ ବହିଟି—

କେଶ

# ସୂଚୀପତ୍ର

# ନିଜ କଥା

ବୟସର ଷଷ୍ଟିପୂର୍ତ୍ତି । ଗଳ୍ପ ବୟସର ଦଶକ । ଭାବିବାକୁ ମନ ହୁଏ ଯେ ଏଇଠି ଜୀବନ ଓ ସାହିତ୍ୟ ଉପରେ କିଛି ଗୋଟାଏ ସାରକଥା କହିବା ବିଧେୟ । ବିଜ୍ଞତାର ପରିଚୟ ଦେବା ପାଇଁ ଏଇ ହେଉଛି ଉପଯୁକ୍ତ ସମୟ । କିନ୍ତୁ ଗଭୀର ଦୁଃଖ ଓ ଲଜ୍ଜାର ସହିତ ମାନିବାକୁ ପଡୁଛି ଯେ, ଘଣ୍ଟା ଗଡ଼ିଗଲେ କ'ଣ ହେବ, ମୋର ପରୀକ୍ଷାଖାତା ସରି ନାହିଁ । ଶେଷକଥା କହିବାର ଦମ୍ଭ ଆସିବାକୁ ନାହିଁ । ପରୀକ୍ଷକମାନେ ପାଟି କରିଲେଣି ଯେ ଏଣିକି ମାର୍କ ମିଳିବ ନାହିଁ, ପ୍ରକାରାନ୍ତରେ କହି-ସାରିଲେଣି (ଆଜି ନୁହେଁ, ଅନେକ ଦିନୁ) ଯେ ଆମେ ତୁମକୁ ଯାହା ମାର୍କ ଦେବାର ଦେଇ ଯଥାସ୍ଥାନରେ ଥୋଇ ସାରିଲୁଣି, ତୁମ ଲାଗି ପୁଣି ଥାକ ସଜାଡ଼ିବୁ ଏଭଳି ଆଶା କରିବା ବୃଥା । ତେଣୁ କଥାଟାକୁ କୌଣସି ମତେ ତୁଣ୍ଡେଇଦେଲେ ଭଲ ହୁଅନ୍ତା ନାହିଁ ? ମୋ ପାଟିରୁ ବାହାରି ଆସୁଛି ଯେ ଆଜ୍ଞା, ମୋ ଚରିତ୍ରଗୁଡ଼ାକ ତ ଅଧାପନ୍ତରିଆ ହୋଇ ରହିଗଲେ, ମୁଁ ଏମିତି କୋଉ··· କିନ୍ତୁ ପରୀକ୍ଷକମାନଙ୍କୁ ରଗେଇ ଲାଭ ନାହିଁ । ତେଣୁ ଇଚ୍ଛା ବିରୁଦ୍ଧରେ ଏଣୁତେଣୁ କିଛି କହିବାକୁ ଯାଉଛି, ସାର କି ଅସାର ଜାଣେ ନାହିଁ, ନିଜର ସ୍ୱୀକାରୋକ୍ତି କହିଲେ ଚଳେ ।

ପ୍ରଥମ କଥା ହେଲା ଯେ (ମୋ) ସାହିତ୍ୟର ଜୀବନ ଉପରେ ମନ୍ତବ୍ୟ ଦେବାର ଅଧିକାର ନାହିଁ । କାରଣ ଜୀବନର ଏଇ "ଅବୈଧ" ସନ୍ତାନ ଅଦ୍ୟାବଧି ତା' ବାପକୁ ଖୋଜୁଛି । ଖୋଜି ନ ପାଇବା ଯାଏଁ ସେ କେଉଁ ସାହସରେ ମାଆର ରୂପଗୁଣ ବଖାଣିବ ? କିନ୍ତୁ କିଏ ତା ବାପ ? ପରୀକ୍ଷକ ମହାଶୟ ଯେ ଯଥାକଥା ମାର୍କ ଦେଇ ପାସ୍-ଫେଲ୍ କରେଇ କାମ ସାରି ଦିଅନ୍ତି ? ପାଠକ ମହାଶୟ ଯେ କାଦୁଅ କମ୍ପା କମ୍ପୀରକୁ ଉର ଗହୀରରେ ପଶିବା ପାଇଁ ନାରାଜ ? ନା ଲେଖକର ଦୁର୍ଦ୍ଧର୍ଷ ପୋଡାମୁହାଁ ଇଗୋ, ଯେ ନିଜ ହାତରେ ଚଉଦ ପା', ଷୋଳକୁ ମାନ କରି ଖପରରେ ଖାଇବାର ଆନନ୍ଦ ଦେଖେଇ ହୁଏ ? ନା ! ଏମାନେ

କେହି ସାହିତ୍ୟର ବାପ ହେବାର ଯୋଗ୍ୟ ନୁହଁନ୍ତି । କାହିଁ ତାର ଐଶ୍ୱର୍ଯ୍ୟମୟୀ ମାଆ, ଆଉ କାହିଁ ଏଇ ଧନହୀନ ପରସ୍ମୃରକ ଦଳ ! ମାଆର ସ୍ୱାମୀ ଐଶ୍ୱର୍ଯ୍ୟରୁ ବଳି ଗୁଣ, ସୁନ୍ଦର ଓ ମହାନ୍ । ତା'କୁ ଖୋଜି-ବାକୁ ହେବ, ଲେଢ଼ିବାକୁ ହେବ···ସେଇ ହନ୍ତସନ୍ତହିଁ ସାହିତ୍ୟର ଶାସ୍ତି । ମୋର ସାହିତ୍ୟ ତଦ୍ରୂପ ଶାସ୍ତିର ଅଧିକାରୀ ହୋଇପାରିଛି କି ନାହିଁ, ହେଲେ ଯେତେଦୂର ହୋଇଛି, ଜାରଜ ଦୋଷରୁ ମୁକ୍ତ କରେଇ ପାରିଛି ନିଜକୁ, ତା'ର ହିସାବ ଯଢ କରି ହୁଅନ୍ତା !

ହେଲେ ଅସ୍ୱବର ଅନୁଭବହିଁ ଯଥେଷ୍ଟ ମୋ ପାଇଁ । ସେତିକ ନ ଆସିଲେ ମୂଳରୁ ଶେଷ ଯାଏଁ ସବୁ ଅକାରଣ । ପ୍ରସିଦ୍ଧ ଗାଳ୍ପିକ ଉଇଲିୟମ ସାରୋୟାନ୍ ତାଙ୍କର ଷଷ୍ଠୀପୂର୍ତ୍ତି ପରେ କହିଲେ ଯେ ମୁଁ ଯେମିତି ନାସ୍ତିର ହୋଇ ଜନ୍ମ ହେଲି, ନାସ୍ତିର ହୋଇ ମରିବାକୁ ଯାଉଛି, ସେମିତି ନାସ୍ତିର ହୋଇ ଲେଖୁଛି, ଲେଖୁଥିବି । ହାୟ ! ଏଇ ହେଉଛି ମୋ ସାହିତ୍ୟର ଶେଷ କଥା ? ଅଣବାପୁଆପଣରେ କାନ୍ଦିବା କଣ ଏହାଠାରୁ ଶ୍ରେୟସ୍କର ନୁହେଁ ।



# ଶୀତ ଲହରୀ

[ ଯେଉଁଠୁ ସେ ରଗିଲେ ଯେଇ ବୁଢ଼ା ନ ହୋଇ ମଧ୍ୟ ବୁଢ଼ା ବୋଲଉଥିବା ସଦାବିହାରୀ ବାବୁଙ୍କ ଉଦ୍ଦେଶ୍ୟରେ । ତାଙ୍କର ନକଲ ଢଙ୍ଗରୁ ଏଇ ମହାଭାରତ ସୃଷ୍ଟି ହେଲା । ]

ଘରର ଯେ କୌଣସି ସ୍ଥାନରୁ ଆଖି ଫାଡ଼ି ଅନାଇଲେ ମଧ୍ୟ ସମୁଦ୍ର ଦେଖାଯାଏ ନାହିଁ । କିନ୍ତୁ ଲହଡ଼ି ଭଙ୍ଗାର ଘୋ'ଘୋ' ଶବ୍ଦ ଶୁଣିବାକୁ ମିଳେ । କାର୍ତ୍ତିକ ବାବୁଙ୍କର ବିରକ୍ତ ହେବାର କାରଣ ହେଉଛି ଯେ ଆଜିକାଲି ସ୍ପଷ୍ଟ ଶୁଣାଯାଉଛି ଯେହେତୁ ଘରେ ପାଟିତୁଣ୍ଡ କରିବାକୁ କେହି ନାହିଁ । ରଙ୍ଗିଆ ମାଆ ବାସନ ମଜା ଛାଡ଼ିଦେଇ ଏବଂ ଅଇଁଠା ଖଡ଼ିକା ହାତରେ ଧରି ଦନେଇ ଚାକର ସାଙ୍ଗରେ ସମ୍ମୁଖ ଯୁଦ୍ଧ କରିବାର ପ୍ରଶ୍ନ ଉଠୁ ନାହିଁ । ରଙ୍ଗିଆ ମାଆ ମଲାଣି । ଦନେଇ ବଡ଼ ପୁଅର ହାତବାରିଶି ହୋଇଥିଲା, ଏବେ ତା'ର ସାଙ୍ଗରେ ବୁଲୁଛି ପୃଥିବୀ ସାରା । ପଲେ କୁକୁଡ଼ା କ୍ୟାଉଁ କ୍ୟାଉଁ ହୋଇ ଦୌଡ଼ୁ ନାହାନ୍ତି କି କୋଉ ଚଗଲା ପୁଅ ତାଙ୍କ ପଛରେ ଗୋଡ଼ଉ ନାହିଁ । ଗେଲ୍‌ପୁଅ ଏଇକ୍ଷଣି କଲିକତାରେ ବସିଛି, ହାର୍ଟ ଡାକ୍ତର ହୋଇ ଟଙ୍କା କମାଉଛି । ସୁନାନାକୀ ଝିଅ ଥାଇ ଥାଇ ଭେଁ କରି ରଡ଼ି ଛାଡ଼ୁ ନାହିଁ । କୋଉ କ୍ୟାଣ୍ଟନ୍‌ମେଣ୍ଟ ବଙ୍ଗଳାରେ ପାର୍ଟି ଦେଉଛି, ଫେସନ କରୁଛି । ମାଙ୍କଡ଼ଗୁଡ଼ାକ ପିଜୁଳି ଗଛରେ ବସି କିଚିରି ମିଚିରି ହେଉନାହାନ୍ତି (ମାଙ୍କଡ଼ମାନେ ବି କ'ଣ ଖତମ ହୋଇଗଲେଣି ?) । ଏବଂ ପରିତା ନାହିଁ । ଯାହାର କଥାରେ ପଡ଼ି ଘର ଖଣ୍ଡିକ କିଣି ପକେଇଲି । କେତେ

ଆଶା ବାନ୍ଧିଥିଲି ଯେ ରିଟାୟାର କଲାପରେ ଆମେ ବୁଢ଼ାବୁଢ଼ୀ ଏଇ ସ୍ନେହିଆ ସମୁଦ୍ରକୂଳିଆ ଘରେ ଆସି ରହିବା, ସମୁଦ୍ରର ସଙ୍ଗୀତ ଶୁଣିବା । କହିଲି ମୋ ନାଆଁ ସରିତା ବୋଲି ଜାଣିନାହଁ ? ହୁଁଃ ! ସଙ୍ଗୀତ ନା ଫଙ୍ଗୀତ, ଉପରବାଲା ତାକୁ ଟାଣି ନେଇଗଲା । ଆଉ ମୁଇଁ ଶୁଣୁଛି ବସି ସେଇ ଘମର ଗର୍ଜନ, ଗୁଳୁଛି ତ ଗୁଳୁଛି·····

ଏବେକାର ପିଲାଗୁଡ଼ା ବି ମହାଡ଼ ଅବାଗିଆ, ପୋଡ଼ାମୁହାଁ । ରମୁ କୋଉ କଣରେ ପଶିଥିବ ଯାଇଁ । ଭେଣ୍ଡା ଟୋକା, ଅସି କୋଡ଼ିଏ ବର୍ଷ ହେଲାଣି, ସ୍ବଚ୍ଛଘରେ ପଡ଼ି କମିକ୍ ପଢ଼ିବା ଫିଲ୍ମଷ୍ଟାରଙ୍କ ଛବି ଦେଖିବା ଛଡ଼ା ଆଉ କିଛି କାମ ନାହିଁ ତା'ର । ପଚାରିଲେ ଭିଡ଼ମୋଡ଼ ହୋଇ ଦାନ୍ତ ଦେଖାଇବ, କହିବ ମୋତେ ବୋର୍ ଲାଗୁଛି । କାହିଁକି, କେଜେ ସାଙ୍ଗରେ ବସି ଗପ କରୁନୁ ? ଏକ୍ସପୋର୍ଟ—ଇଂପୋର୍ଟ ବାପ ସାଙ୍ଗରେ ଏତେ ଆଡ଼େ ବୁଲିଲୁ, କେତେ କଣ ଦେଖିଲୁ, କିଛି ବଖାଣିବାକୁ ନାହିଁ ? ନହେଲେ କେଜେଜ ବୁଢ଼ାକୁ ଡାକୁନୁ, ଚାଲ ଏଠିକି ଯିବା ସେଠିକି ଯିବା ? ରାମବାବୁ ଦୋକାନରେ ଚପ୍ ଖାଇବା । ନହେଲେ ସମୁଦ୍ରକୂଳକୁ ଯିବା । ଖାଲି ଶବ୍ଦ ନଶୁଣି ବେଦହେଲ ଢେଉମାନଙ୍କ ମୁକାବିଲା କରିବା । ତୁ ପଶିଯିବୁ ତାଙ୍କ ଭିତରେ, ତାଙ୍କ ଭିତରକୁ ଡେଇଁବୁ, ତଳେ ତଳେ ଖସିଯିବୁ, ଆଉ ମୁଁ କୂଳରେ ବସି ତାଳି ମାରିବି । ନାଃ, ସେସବୁ ହବ ନାଇଁ ତୋ ଦେଇ । ତୁ ତୋ ବାପାର ପୁଅ ନୁହଁ । ମାଆର ! ମାଇଚିଆ !

ତଥାପି କାର୍ତ୍ତିକବାବୁ ଆପଣା ଆରାମଚଉକି ଆସ୍ଥାନରୁ ଟଳିବା ପାଇଁ ପ୍ରସ୍ତୁତ ନ ଥିଲେ । ଏବଂ ହାଣ ମୁହଁକୁ ବେକ ଦେଖାଇଲା ପରି ଢେଉମାନଙ୍କର ଶବ୍ଦକୁ ଶୁଣୁଥିଲେ । ଗର୍ଜୁଥା' ଗର୍ଜୁଥା' ଶୁଣାଉଥା' କେତେ ଶୁଣାଇବୁ । ବଡ଼ ହେଲେ ତୁ ଥପ୍‌କିନା ରହିଯିବୁ । କାହିଁକିନା ମୁଁ ନ ଥିବି—ବୁଝିଲୁ ?

ତୋଟପଡ଼ିଆର ମାହାଲାର ଖଣ୍ଡିଆ ଖପରେଲ ଛାତ ଉପରେ କାଉଟାଏ ଥିର ହୋଇ ଠିଆ ହୋଇପାରୁ ନ ଥିଲା । ନାଚ କରୁଥିଲା ।

କାର୍ତ୍ତିକବାବୁ ତା'ଙ୍କୁ ଦେଖି ଦେଖି ନିରୀକ୍ଷଣ କଲେ । ନିଃସଙ୍ଗ ନିରନ୍ତରତା ଭିତରେ ଏଇ ବ୍ୟତିକ୍ରମ କୁଆଡ଼େ ଆସି ପହଞ୍ଚିଗଲା ବୋଲି ତାଙ୍କୁ ମଜା ଲାଗିଲା । କିଏ ମୋତେ ଭୁଲେଇବାକୁ ଆସିଛୁ ? ତୋ ବୟସ କେତେ ? ଟୋକା ନା ଟୋକୀ ?

କ୍ଷଣକ ପରେ ତାଙ୍କୁ ମଜା ଲାଗିଲା ନାହିଁ । ଚଉକିର ହାତରୁ ଝୁଲୁଥିବା ବାଡ଼ି ଖଣ୍ଡିକ ହଲେଇଲେ କାଉ ଆଡ଼କୁ ।

କେତେବେଳକେ ତାଙ୍କର ମନେହେଲା ଯେ ଏଥର ଆସ୍ଥାନରୁ ଉଠିଲେ ହେବ । ମୋ ଇଚ୍ଛା । ବୁଢ଼ା ହୋଇ ଗଲଣି ବୋଲି ମୁଁ ଅକର୍ମଣ୍ୟ ନୁହେଁ । ଖାଲି ହାତ ଗୋଡ଼ ଚଳୁଛି କହିଲେ ଯଥେଷ୍ଟ ନୁହେଁ । ରୋଗ-ବଇରାଗ କିଛି ନାହିଁ ମୋର, ନା ବ୍ଲଡ୍‌ପ୍ରେସର, ନା ଡାଏବେଟିସ୍, ଶ୍ୱାସ ଇତ୍ୟାଦି ଇତ୍ୟାଦି । ଯେଉଁଥିରେ ଆମ ଦେଶର ଯେତକ ବୁଢ଼ା ଘାଣ୍ଟି ହୁଅନ୍ତି । ତା'ଛଡ଼ା ମୋର ମସ୍ତିଷ୍କ । ସେମିତି ସତେଜ ସଜାଗ ଅଛି, ଦଶ ବର୍ଷ ପୂର୍ବେ ଯେମିତି ଥିଲା । କହିବାକୁ ଗଲେ ବୟସ ବେଳେ ଯେମିତି ଥିଲା । ବରଂ ଆହୁରି ପ୍ରଖର ହୋଇଯାଇଛି, କାହିଁକିନା ତାତିଉଠିବା ତରଳି ଯିବାର ପ୍ରବଣତା ଚାଲିଗଲାଣି । ବୁଦ୍ଧି ଖର୍ଚ୍ଚ କର । ଦେଶକୁ ନେଇ, ସମାଜକୁ ନେଇ, ଅଥବା ପୁଅର ଅମାନିଆପଣ ଝିଅର କାରବାରକୁ ନେଇ ଉଃ ଆଃ ହେବାର ପ୍ରୟୋଜନ ନାହିଁ । କେବଳ ଲକ୍ଷ୍ୟ କର, ବୁଦ୍ଧିରେ ଖେଳେଇ ଦିଅ, ହସିଲେ ହସ । କୈଳାସରେ ବସିଛ ଏଇକ୍ଷଣି...

କୈଳାସରୁ ଉଠିବାକୁ ହେବ । କାର୍ତ୍ତିକବାବୁ ଆପଣା ରସବୋଧ, ସେନ୍ସ ଅଫ୍ ହ୍ୟୁମର୍‌ରେ ହସିଲେ ମନକୁ ମନ । ଠିଆ ହୋଇପଡ଼ି ବାଡ଼ିଟାକୁ ଶୂନ୍ୟରେ ଘୂରେଇ ଦେଲେ । ଆଖି ସାମନାରେ କାଉ କମ୍ବା ସେହିଧରଣର ପ୍ରାଣୀ ଥିଲେ ନାହିଁତ ? ତେଣୁ ଧରିନିଅ ଯେ ସେ ବିରକ୍ତିକର ଚେଢ଼ମାନଙ୍କର ଶବ୍ଦକୁ ଘଉଡ଼ା ବୋଲି କହିଲେ ।

ଦାଣ୍ଡପିଣ୍ଡା ଯାଏଁ ଆସୁ ଆସୁ ସେ ରମୁର କୋଠରୀରୁ ଗୁଞ୍ଜନର ଧ୍ୱନି ଶୁଣିବାକୁ ପାଇଲେ । ଆବେ, ଏତେ ଖୁସ୍ ଅଛୁ ଯଦି, ଗଳା ଛାଡ଼ି ଗୀତ ଗାଉନୁ ? ଲାଜ ମାଡୁଛି ?

ଦାଣ୍ଡପଟ୍‌ଟା ଅନେଇଲେ ମଧ୍ୟ ସକାଳଟା ସେଇଆ । ଶେତା, କାଉଁଳିଆ । ବାଷ୍ପରେ ଜୁଡ଼ୁବୁଡ଼ୁ, କିନ୍ତୁ ଝଁରଝଁର ଝରିବାର କୌଣସି ଲକ୍ଷଣ ନାହିଁ । ପୁରୀର ପାଣିପାଗ କଣ ଆଗରୁ ଏମିତି ଥିଲା ? ମୁଁ ଯେତେବେଳେ ପ୍ରଥମେ ରହିଥିଲି ଏଠି, ସବୁଟା କହିଲା ଟାଟ୍‌ପ୍ପାର୍ କଲାପରେ ଏମିତି ଗୋଟିଏ ଘରେ···ଇତ୍ୟାଦି ? କାର୍ତ୍ତିକବାବୁ ବିଶ୍ୱାସ କଲେ ନାହିଁ । ଏବଂ ତାଙ୍କୁ ଅବେଳରେ ଶୀତ କରୁଛି, ଶାଲ୍ ଘୋଡ଼ାଇବା ଉଚିତ ବୋଲି ସ୍ୱୀକାର କଲେ ନାହିଁ । ପାହାଚରୁ ତଳକୁ ଓହ୍ଲାଇଲେ ।

କୁଆଡ଼େ ଯିବା ? ନିଜକୁ ସମ୍ମାନାର୍ଥେ ସମ୍ବୋଧିଲେ, ଯେପରିକି ଯିବା ମାନେ ଖାଲି ବୁଲିବା ନୁହେଁ, କାର୍ଯ୍ୟ ସାଧନ । ଦେଉଳକୁ, ସମୁଦ୍ର କୂଳକୁ କିମ୍ବା ଯୁ'ଠା' ଘରକୁ ନ ଯାଇ ଟିକିଏ ବୁଲି ଆସିଲେ ମଧ୍ୟ ଶରୀରକୁ ହିତ । କାର୍ତ୍ତିକ ବେଉରିଆ ଏବେ ମଧ୍ୟ ବେକାର ନୁହେଁ । ସରକାର ଘରୁ ଅବସର ନେଲା ଦିନଠୁ ପନ୍ଦର ବର୍ଷ ହେଲାଣି, ତଥାପି ସେ ନିରୁଦ୍ଦିଷ୍ଟ ନୁହେଁ । ଅନେକ ଧନ୍ଦାରେ ହାତଦେଇ ଗୁଡ଼ଦେଇ ଶେଷକୁ ଏଇ ପୁରୀ ଘରେ ଅବଶିଷ୍ଟ ଜୀବନ ବିତେଇବାକୁ ଆସିଛି, ତଥାପି ସେ···

ହଠାତ୍ ରାସ୍ତା ସେପାଖରେ ଥିବା ଗୋଟିଏ ଚମ୍ପାଛଡ଼ା ହଳଦିଆ କୋଠା ତାଙ୍କୁ ଆହ୍ୱାନ କଲା । ନିମନ୍ତ୍ରଣ ନୁହେଁ, ଆହ୍ୱାନ । ଯେହେତୁ କୋଠାଖଣ୍ଡିକ ଜଣାଶୁଣା ପୁରୁଣା ହେଲେ ହେଁ ସେଥିରେ ବର୍ତ୍ତମାନ ବାସିନ୍ଦା ଆଦୌ ରୁଚିପ୍ରଦ ନୁହନ୍ତି । ଗୋଟିଏ ବୁଢ଼ା; ଆଉ ତା'ର ଗୋଟାଏ ପିଲା । ଥରେ ଭଦ୍ରଲୋକ ସାଙ୍ଗରେ ସମୁଦ୍ରକୂଳରେ ଦେଖା ହୋଇଥିଲା, କଥା ପଡ଼ୁ ପଡ଼ୁ ତା'ର ଠିକଣା ବତେଇଲା, ସେଇଠୁ ଜଣାପଡ଼ିଲା ସେ ପାଖ ପଡ଼ୋଶୀ । "ଆମ ଘରକୁ ନିଶ୍ଚୟ ଆସିବେ" ବୋଲି ହେଁ ପରସ୍ପରକୁ ଅନୁରୋଧ କରିଥିଲେ କିନ୍ତୁ କାର୍ତ୍ତିକବାବୁ ମନେ ମନେ ସ୍ଥିର କରିଥିଲେ ଯେ ସେଠିକି ଯିବାର ନୁହେଁ । ସେ ମୋର ପରି ଗୋଟିଏ ବୁଢ଼ା ବୋଲି ମୁଁ ତା' ସାଙ୍ଗରେ ଦୁଃଖ ସୁଖ ହେବାକୁ ଯିବି ? ଆପଣଙ୍କ ପେଟରେ ବାୟୁ ହେଉଛି କି ନାହିଁ, ଆଖିକୁ ଦିଶୁଛି କି ନାହିଁ, ପିଲାମାନେ ପଚାରୁଛନ୍ତି କି ନାହିଁ, ଇତ୍ୟାଦିର ଗପ ଯୋଡ଼ିବି ? ମୁଁ ସେମିତିକା ଲୋକ ନୁହେଁ । କିନ୍ତୁ

ଆଜିକାର ସକାଳରେ ଟେଜରର ଶବ୍ଦରେ, ଅଥବା ନାତିଟୋକାର ଏକୁଟିଆ ଗୁଞ୍ଜନରେ କିଭଳି ତାଡ଼ନା ଥିଲା କେଜାଣି ସେ ତାଙ୍କ ଅନିଚ୍ଛାକୁ ଚ୍ୟାଲେଞ୍ଜ୍ ବୋଲି ଭାବିଲେ । କହିଲେ ମୁଁ ସେଠିକି ଯିବି । ମୁଁ ତାର ବୁଢ଼ା ପଣକୁ ଡରୁଛି ନା କଣ ?

ବରଂ ମୁଁ ନିଜେ ଲଜ୍ଜା ଦେବି । ଏତେଗୁଡ଼ାଏ ପିଲା, ଯେଥିରୁ କେଉଁଠା ମୋ ନାତିଠାରୁ ସାନ ହେବେ, ମୁଁ ନିଜେ ଦେଖିଛି, ତାକୁ ଏମିତି କେତେ ବୟସ ହୋଇଥିବ କି ? ଅଥଚ ତା ମୁଣ୍ଡବାଳ ପାଚି ଖୋଟ ହୋଇଗଲାଣି, ଚମ ଓହଳିଗଲାଣି, ନକଲି ଦାନ୍ତ ଲଗାଇଛି । ମୁଁ ତାକୁ ଦେଖେଇ ଦେବି ଯେ ମଣିଷ ବୟସର ଦାସ ନୁହେଁ । ମନକୁ ଟାଣ ରଖି ପାରିଲେ ସବୁଦିନେ ଜବାନ୍, ଭାଙ୍ଗିବ ପଛକେ ନଇଁବ ନାହିଁ । କାର୍ତ୍ତିକବାବୁ ଆଗକୁ ପାଦ ବଢ଼େଇଲେ । ଉଚ୍ଚ କଣ୍ଠରେ ନାତିକୁ ଡାକି ଗୁଡ଼ିଲେ,—ରମୁ, ଏ ରମୁ, ଶୁଣ୍, ଏଠିକି ଆ......

ନହନଦକା ଟୋକାଟାଏ ଘରୁ ବାହାରି ଆସିଲା । ପାଖକୁ ଆସି କଅଣ ବୋଲି ପଚାରିଲା । ତା ନଣ ପରି ସେ ମଧ୍ୟ ସାମାନ୍ୟ ଟଳକୁ ଝୁଙ୍କି ଆସିଛି । ଦୃଷ୍ଟି କଟୁ, କିନ୍ତୁ କାର୍ତ୍ତିକବାବୁ ସେ ବିଷୟରେ କହିବା ଛାଡ଼ି ଦେଲେଣି ଯେବେଠୁ ଦେଖିଲେଣି ଯେ ଏଇ ଧଡ଼ିଆ—ନଇଁଲା—ଓହଳା ଫେସନ ସେଆଡ଼କାର ନୁହେଁ, ଆମ ଗାଁ ଗଣ୍ଡାର ଟୋକାମାନେ ମଧ୍ୟ ସେମିତି ଦିଶୁଛନ୍ତି ଆଜିକାଲି । ଯାହାହେଉ ସେ କାଳବ୍ୟୟ ନ କରି ଶୁଣେଇଲେ ।

“ମୁଁ ଯାଉଛି ସେଇ ହଳଦିଆ କୋଠାକୁ । ବୁଝିଲୁ ? ସେଠି ଜଣେ ଭଦ୍ରଲୋକ ଅଛନ୍ତି, ତାଙ୍କ ସାଙ୍ଗରେ ମୋର ସମୁଦ୍ର କୂଳରେ ଦେଖା ହୋଇଥିଲା ।”

ରମୁ ମୁଣ୍ଡ ଟୁଙ୍ଗାରିଲା ।

“ବାଞ୍ଛାକୁ କହିବୁ ଟିକିଏ ଯତ୍ନରେ ରାନ୍ଧିବ, କାଲି ଯାହା ରାନ୍ଧିଥିଲା ନା—”

ଏଥର ମଧ୍ୟ ରମୁ ମୁଣ୍ଡ ହଲାଇଲା । କିନ୍ତୁ ମାଟେଇ ମାନେଇ ବାଧ୍ୟ ହେଲାପରି ।

କାର୍ତ୍ତିକବାବୁ ତା'ର ମର୍ମ ବୁଝିଲେ । ରମୁ ପାଣିଚିଆ ଅଣମସଲା ତରକାରୀ ଭଲ ପାଏ । ଇଏ ବି' ଗୋଟିଏ ଫେସନ୍ ଆଜିକାଲିକା ପିଲାଙ୍କର । ଭିନ୍ନ ଚେହେରା, ଭିନ୍ନ ବେଶ, ଭିନ୍ନ ସଙ୍ଗୀତ, ଭିନ୍ନ ତରକାରୀ । ଆଉ କଣ ବାକି ରହିଲା ? ପୁଅଝିଅଙ୍କ ଜେନେରେସନକୁ ଅନ୍ତତଃ ସେଥିରୁ ବାଛି ହେଉଥିଲା । ଏମାନଙ୍କ ଦୁନିଆକୁ ଅଟକେଇ ହେବ ନାହିଁ । କୋଉ ମଙ୍ଗଳ ଗ୍ରହରୁ ଖସିଛନ୍ତି ସବୁ !

"ଆଚ୍ଛା ହଉ, ମୁଁ ଯାଉଛି । ତାଙ୍କ ଘରେ ଅନେକ ପିଲା ଅଛନ୍ତି, କେଇଜଣ ତୋର ବୟସର ହେବେ । ଯାଉ'ନୁ କେବେ ଚିହ୍ନାପରିଚ ହେବୁ ?"

ରମୁ ଉତ୍ତର ଦେଲା ନାହିଁ ସିନା, ତା'ର ଓଠରେ କି ଗୃହାଣୀର ସ୍ଫୁରଣ ଦିଶି ଯାଉଛି ବୋଲି ମନେହେଲା । ଯେମିତିକି ସେ ଉତ୍ତର ଦେଇ ପାରନ୍ତା ହେଲେ "ଯାନେ ଦୋ" ଭାବରେ ରହିଯାଇଛି ।

ନୀରବ ପ୍ରତିକ୍ରିୟାକୁ ହେଲେଇ ଦେଇ କାର୍ତ୍ତିକବାବୁ ଅଗ୍ରସର ହେଲେ । ସମାଜରେ ସହଜ ହସଖୁସି ହେବା ତାଙ୍କ ଶାସ୍ତ୍ରରେ ନାହିଁ । ତମମାନଙ୍କ ମତିଗତିକୁ ବୁଝିବାକୁ ହେଲେ—। ସ୍ୱଗତ ବାକ୍ୟ ଶେଷ କରି ହେଲା ନାହିଁ ।

ଚାଲିଲା ବେଳେ ହିଁ ତାଙ୍କ ସ୍ୱାସ୍ଥ୍ୟ ସୌଷ୍ଠବର ମର୍ଯ୍ୟାଦା ଫୁଟି ଉଠେ । ଓଜନିଆ ଚେହେରା; ବାଘୁଆ ନ ହେଲେ ମଧ୍ୟ ବେଶ୍ ବହଳିଆ ଦରପାଚିଲା ନିଶ, ମୁଣ୍ଡ ଉପରେ ଦରପାଚିଲା ଚୁନ୍‌ଚୁନ୍ ବାଳର ଝୋପର, ଲମ୍ବା ପାହୁଣ୍ଡ ଓ ସଳଖ ଠାଣି । ହାତଧରା ବାଡ଼ିକୁ ବିଶ୍ରାମ ନାହିଁ, କେତେବେଳେ ପବନରେ ଘୂରି ଆସୁଛି ତ କେତେବେଳେ ଭୂଇଁକୁ ଠକ୍ ଠକ୍ କରୁଛି । କେହି କହିବ ନାହିଁ ଯେ ବାଡ଼ି ଖଣ୍ଡକ ତାଙ୍କର ଖେଳସାଥୀ ଛଡ଼ା ଆଉ

କିନ୍ତୁ ହୋଇଥିବ । ଏବଂ କେଜାଣି କହିବ ନାହିଁ ଯେ ଆଖିତଳ ଗାତରେ, ପେଟର ଗୋଳିଆଇରେ କମ୍ବା ଅଳ୍ପ ଜରେ ସାଁ ସାଁ ହେବାରେ ତାଙ୍କ ବୟସ ବାଣ ହୋଇ ଯାଉଛି ।

ହାଳଦିଆ କୋଠାରେ ଏତେ ଅଧିକ ଚର୍ଚ୍ଚା ମିଳିବ ବୋଲି ସେ ଆଶା କରି ନ ଥିଲେ । ଗୃହସ୍ୱାମୀ ନମସ୍କାରାନ୍ତେ ତାଙ୍କ ଦୁଇହାତକୁ ଧରି ପକାଇଲେ ଏବଂ ଏମିତି ଗଦ୍‌ଗଦ ହେଲେ ଯେ ମନେହେବ କୋଉ ପିଲାଦିନର ବନ୍ଧୁ ଆସି ପହଞ୍ଚିଗଲା । ଖାଲି ସେତିକି ନୁହେଁ, ତାଙ୍କ ସ୍ତ୍ରୀଙ୍କ ଛଡ଼ା ସମସ୍ତ ପରିବାର କାହିଁକି ଯେ ଯେଇ ବାହାରେଇ ଗଲେ, ସହାସ୍ୟ ବଦନରେ ଲମ୍ବା ଲମ୍ବା ନମସ୍କାର ପକେଇଲେ ଏବଂ ବାବୁ ତାଙ୍କ ନାଆଁ ବତେଇ ଦେଲେ, କୋଉ ସ୍କୁଲରେ କଲେଜରେ ପଢୁଛି ବୋଲି ବଖାଣିଲେ, ବୁଝିହେଲା ନାହିଁ । ସବୁ ଅତିଥିମାନଙ୍କୁ ସେ କ'ଣ ଏମିତି ଆଦୃତ କରନ୍ତି ? ନା ଭାବୁଛନ୍ତି ଯେ ଯେହେତୁ ମୁଁ ବୟୋବୃଦ୍ଧ ? ସେ ଏମିତି କୋଉ ଠୋକା ହେଇଛି ? ହେଲେ କାର୍ତ୍ତିକବାବୁ ନିଜକୁ ତତେଇ ପାରିଲେ ନାହିଁ । କାରଣ ସେ ଏକ ଅପୂର୍ବ ଆନନ୍ଦ କୋଳାହଳର ଆବେଶରେ ଆଚ୍ଛନ୍ନ ହୋଇପଡ଼ିଲେ । ତାଙ୍କର ମନେହେଲା ଯେ ଯେଉଁମାନେ ତାଙ୍କୁ ନମସ୍କାର କରି ବାହାରକୁ ଗୁଞ୍ଜିଗଲେ ସେମାନେ ତାଙ୍କୁ ଇଁ ଢେର ଖୁସି ହେଉଛନ୍ତି, ବଲ୍ କି କଅଣ ଫିଙ୍ଗା ଫିଙ୍ଗି ହେଉଛନ୍ତି, ପରସ୍ପରକୁ ଷ୍ଟୁପିଡ଼୍ ବୋଲି କହୁଛନ୍ତି, ଆଉ ଖିଲି ଖିଲି ହୋଇ ହସୁଛନ୍ତି । କିନ୍ତୁ ନୂଆ କଥା ନୁହେଁ, ମୋ ସଂସାରରେ ବି' ଏମିତି ହେଉଥିଲା ଦିନେ, ବଡ଼ ବଡ଼ ପିଲା-ଗୁଡ଼ାକ ଏମିତି ଧେଇ ଧେଇ ହେବା ଉଚିତ ନୁହେଁ, ଏହିପରି ଭାବରେ ନିଜକୁ ଚେତେଇଲେ ମଧ୍ୟ ତାଙ୍କୁ ଭଲ ଲାଗିଲା । ଭଦ୍ରଲୋକଙ୍କ ଅକାଳ ବାର୍ଦ୍ଧକ୍ୟଠାରୁ ତାଙ୍କ ନାଚିଲା ଗୃହିଣୀର କୌତୁକ ତାଙ୍କ ଆଖିରେ ପଡ଼ିଲା । ସତେକି ଯେ ଜାଣିଶୁଣି ବୟସର ମୁଖା ପିନ୍ଧିଛନ୍ତି ସଂସାରକୁ ଠକେଇବା ପାଇଁ । ପ୍ରକୃତରେ ଅସଲ ଜଣେ । ଏବଂ ସବୁର ଭିତରେ ଗୋଟିଏ ଗୋଟା ଅଳ୍ପ ବୟସୀ (ଅଳ୍ପ କଅଣ ମ, ଷୋଳ ସତରରୁ କମ୍ ହେବ ନାହିଁ) ଯେ ହଜାର ଥର ଘରୁ ବାହାରକୁ ବାହାରୁ ଘରକୁ ଯା ଆସ କରୁଥିଲା, ତା ନାଁ ନଳିନୀ, ମାଳିନୀ, କି ସେମିତି କଅଣ, ତାଙ୍କୁ ଆକୃଷ୍ଟ କଲା । ଏତିକି ଟୋକିଟିଆ

ମୁହଁ, କୁନି ଓଠ, ଗେଣ୍ଡୀଟିଏ, ତା' ବାପ ପରି, ହେଲେ ସେଇଥିରେ କି ତେଜ ! କି ଦର୍ପ ! କି ପାଟି ! କିନ୍ତୁ ପାଖକୁ ଡାକିଲେ ଲାଜେଇ ଯିବ ସତେକି ମାଟିକୁ ମ' ଛୁଏଁ ନାହିଁ । କାର୍ତ୍ତିକବାବୁଙ୍କର ମନହେଲା ତାକୁ ସବୁ ଚଟକଣିଟିଏ ମାରି କୋଳକୁ ଟାଣି ଆଣିବେ । ରମୁଠାରୁ ଟିକିଏ ସାନ ହେବତ, ଆଉ କଅଣ ! ରମୁ ଆମର ନାତି ନ ହୋଇ ନାତୁଣୀ ହୋଇଥିଲେ······

କାର୍ତ୍ତିକବାବୁ ନିଜ ଭାବନାର ଉଦ୍ଦେଶ୍ୟ ବୁଝି ପାରିଲେ ନାହିଁ । ମୋ ପୋଡ଼ାମୁହାଁ ନାତି କଣ ମୋର ପ୍ରିୟ ନୁହେଁ ? ନା ମୁଁ ସେଇ ବୟସରେ ଅଛି ଯେ ଶାଢ଼ୀ ପିନ୍ଧା କଅଁଳିଆ ଦେହଟିଏ ଦେଖିଲେ ମୋ ରକ୍ତ ଚଞ୍ଚଳ ହୋଇ ଉଠିବ ? ଧ୍ୟାତ୍ !! ଏମାନେ ସବୁ ମୋ ଆଖିରେ ପୋକ ଜୋକ ପରି । କିନ୍ତୁ······ସତରେ କୁକୁମନିଆ ପୋକଟିଏ । କାର୍ତ୍ତିକବାବୁଙ୍କ ଓଠରେ ସ୍ମିତହାସମାନ ଉତୁରି ଆସିଲା । ସେ ତାକୁ ରୋକି ପାରିଲେ ନାହିଁ । ବରଂ ଆସିଲାରୁ ଦ୍ରବ୍ୟ ବଢେଇ ଦେଲେ ଏବଂ ବନ୍ଧୁଙ୍କୁ ଆପ୍ୟାୟିତ କଲେ ।

ପରସ୍ପର ଜୀବନ କାହାଣୀର ସାରାଂଶ ଓ ବର୍ତ୍ତମାନ ପରିସ୍ଥିତିର ଆଦାନପ୍ରଦାନ ହେଲା । କାର୍ତ୍ତିକବାବୁ ଜାଣିଲେ ଯେ ବନ୍ଧୁଙ୍କର ନାଆଁ ସଦାବହାରୀ ଜେନା । ଡି.ଏସ୍.ପି. ଥିଲେ, ଚାକିରିର ମିଆଦ ପୂରିବାର ଦି ବର୍ଷ ଆଗରୁ ନିଜ ଇଚ୍ଛାରେ ରିଟାୟାର୍ କରିଛନ୍ତି । ନିଜ ଇଚ୍ଛାରେ ନା ତାଙ୍କୁ ବାଧ୍ୟ କରାଗଲା ? କିଛି ଗପ ଲଗି ନାହିଁ ବୋଲି କିଏ କହିବ ? ନାଚଲ ଗୃହାଣୀ ଧୂର୍ତ୍ତ ହୋଇପାରେ । କିନ୍ତୁ ଏଭଳି ଅନୁମାନ ହେତୁ ବନ୍ଧୁଙ୍କର ଚରିତ୍ର ଇଣ୍ଟରେଷ୍ଟିଙ୍ଗ୍, ସ୍ପୃହଣୀୟ ମନେହେଲା । ସତେକି ତାଙ୍କ ସ୍ଖଳନ ଏବଂ ମାଳମୀ ଝିଅର ଲାସ୍ୟ ଏକା ଧାତୁରେ ଗଢ଼ା, ମାତନଧୂମକୁ ଆଖି ମିଟିକା ମାରିଲା ପରି । ପୁଣି ବୁଝିଲେ ଯେ ସ୍ତ୍ରୀଙ୍କ ସ୍ୱାସ୍ଥ୍ୟୋନ୍ନତି ଉଦ୍ଦେଶ୍ୟରେ ସେ ଆସିଛନ୍ତି ଏଠିକି, ଭଡ଼ାଘର ନେଇ ଅଛନ୍ତି, ସ୍ୱସ୍ଥାନ ଢେଙ୍କାନାଳକୁ ଫେରିଯିବେ, ଯେଉଁଠି ତାଙ୍କର ଗ୍ରେଟିଆ ମୋଟିଆ (ଭାବଭଙ୍ଗୀରୁ ଜଣାପଡ଼ିଲା ବିରାଟ) ଫାର୍ମ ଅଛି । ପିଲାମାନେ ସମସ୍ତେ ବିଭିନ୍ନ ସ୍କୁଲ କଲେଜରେ ପଢ଼ନ୍ତି, କିନ୍ତୁ ଏଇଠି ଆସି ରୁଣ୍ଡ ହୋଇଛନ୍ତି ଏଇକ୍ଷଣି, କାହିଁକିନା ଷ୍ଟ୍ରାଇକ୍ ଯୋଗୁ ପଢ଼ାପଢ଼ି ବନ୍ଦ । ମାଳମୀ କୁଆଡ଼େ ସବୁଦିନେ ଜଗନ୍ନାଥଙ୍କୁ ଥରେ ଲେଖାଏଁ ଡାକୁଛି—ହେ

ଚକୋଡୋଲା, ଷ୍ଟ୍ରାଇକ୍ ଲମ୍ବି ଲମ୍ବି ଯାଉ, କର୍ତ୍ତୃପକ୍ଷ ଅନ୍ତରର ଅଡ଼ ବସନ୍ତୁ, ଗ୍ରୁପମାନେ ଆହୁରି ବିକ୍ଷୋଭ କରନ୍ତୁ, ଆହୁରି ଗୋଟାଏ ଦି'ଟା ଜିପ୍ ଜାଳେଇ ଦିଅନ୍ତୁ......। ଦୁହେଁ ଠୋ ଠୋ ହୋଇ ହସି ଉଠିଲେ। ଏବଂ ମାଳମା ପ୍ରତି କାର୍ତ୍ତିକବାବୁଙ୍କର ଶ୍ରଦ୍ଧା ଦଶଗୁଣ ବଢ଼ିଗଲା । ସତରେ ମହା ପାଜିଟାଏ ! କିନ୍ତୁ ପରକ୍ଷଣରେ ଆଶଙ୍କା ହେଲା ଯେ ଚକାଡୋଲା ତା'ର ଡାକ ଶୁଣିବେ ନାହିଁ। ଖବରକାଗଜରେ ଯାହା ବାହାରୁଛି ସେଥିରୁ ସ୍ପଷ୍ଟ ଜଣା ପଡ଼ୁଛି ଯେ ସମାଧାନ ହାତ ପାହାନ୍ତାରେ। ତା'ମାନେ ମାଳମା ସମେତ ପିଲାମାନେ ଶୀଘ୍ର ଗୃହକୁ ଫେରିଯିବେ ଏଠୁ......।

କାର୍ତ୍ତିକବାବୁ ଅନ୍ୟ ମନସ୍କ ହୋଇ ପଡ଼ିଥିଲେ । ତେଣୁ ହିନ୍ଦୀଭାଷୀ ବାବୁ ତାଙ୍କ ପରିବାର ଘରବାଡ଼ି ବିଷୟ ଅଉ କ'ଣ ସବୁ କହୁଥିଲେ ପୁରାପୁରି ଶୁଣି ହେଲା ନାହିଁ । ତେବେ ସେ ଚେଇଁ ଉଠିଲେ ଯେତେବେଳେ ଶୁଣିଲେ ବନ୍ଧୁ କହୁଛନ୍ତି—ଆଜ୍ଞା ମୁଁ ବହୁତ ଡେରିରେ ବିଭା ହେଲି, ତା' ଆଗରୁ ଯାହା ଥିଏଟରରେ ମାତିଥିଲି, ହେଇଲାଗି ଏଇ ବୁଢ଼ା ବୟସରେ ଗୁଡ଼ାଏ ପିଲା, ମଣିଷ ହୋଇ ନାହାନ୍ତି ଆଜଯାଏଁ, କିନ୍ତୁ ମୋର ଚିନ୍ତା ନାହିଁ, ଭଗବାନ୍ ତାଙ୍କୁ ନିଶ୍ଚୟ ଚଳେଇ ନେବେ···।

ଚେଇଁଉଠି ସେ ସାମାନ୍ୟ ଉତ୍ତେଜନାଭରା କଣ୍ଠରେ କହିଲେ,— ସକାଳରେ ବିଭା ହୋଇଥିଲେ ଅଧିକା କଣ ହୋଇଥାନ୍ତା ? ଉଦୟ ରହିଗଲା ଯେ ତାହାହେଲେ ଆଜକାର ଏ ଦୃଶ୍ୟ ଦେଖିବାକୁ ମିଳି ନ ଥାଆନ୍ତା । ମୋତେ ଏଥିରୁ ବଞ୍ଚିତ କଲେ ଆପଣଙ୍କର ବିଶେଷ ଲାଭ ହୋଇ ନ ଥାଆନ୍ତା ।

ନିଜ ବିଷୟରେ କହିଲାବେଳେ କାର୍ତ୍ତିକବାବୁଙ୍କର ମନେହେଲା ଯେ ସେପଟୁ ବଡ଼ା ହୋଇଥିବା ଶିଶୁ ଖେଚଡ଼ି ବିଜନମୟରେ ତାଙ୍କୁ ଶୁଖିଲା ରୁଟି ଯାଚିବାକୁ ପଡ଼ୁଛି। ନିରଳିଆ ସଂଭ୍ରାନ୍ତ ସମ୍ପଦ । ସରଳ ରେଖା । ଯାହା- ହେଉ ସେ ଠିକେ ଠିକେ କହିଦେଲେ ଯେ ସେ ଏକଦା ଜଣେ ସରକାରୀ ଅଫିସର୍ ଥିଲେ । ହେଡ୍ ଅଫ୍ ଦ' ଡିପାର୍ଟମେଣ୍ଟ ହୋଇଥିଲି ବୋଲି କହିଲେ କଣ ମିଳିବ ତାଙ୍କୁ ? ରିଟାୟାର୍ କରିବାର ପନ୍ଦର ବର୍ଷ ହେଲାଣି। ଏତିକି କହିବାକୁ ପଡ଼ିବ । ଦୁଇପୁଅ, ଗୋଟିଏ ଝିଅ । ବଡ଼ପୁଅ ବ୍ୟବସାୟ

କରୁଛି । ହାଏ କ୍ଲାସ୍ ବଜିନେସ୍, ଦେଶ ବିଦେଶ ବୁଲୁଛି, ଇତ୍ୟାଦି ଜଣେଇଲେ ଅଧିକା କଣ ହେବ ? ସାନପୁଅ କଲିକତାରେ 'ହାଡ଼ ଡାକ୍ତର' । ବର୍ଷରେ ଠଙ୍କା କମାଉଛି, ବାଲିଗଞ୍ଜ୍‌ରେ ଫ୍ଲାଟ୍ କିଣିଲିଣି ବୋଲି କହିବା ନିଷ୍ପ୍ରୟୋଜନ । ଝିଅ ବାହାସାହା ହୋଇ ଭଲରେ ଅଛି । କାହାକୁ ବାହା ହୋଇଛି, କେମିତି ଭଲରେ ଅଛି, ତା'ର ପ୍ରମାଣ ଦେବାକୁ ପଡ଼ିବ ନାହିଁ । ସବୁ ବାହାହେଲି ଝିଅ ଭଲରେ ଥାଆନ୍ତି । ବଡ଼ପୁଅର ପୁଅ ରମୁ, ସେ କଲେଜ ପଢ଼ା ସାରି ଏଇଠି ପାଖରେ ଅଛି, ରହିବ କିଛିଦିନ, ଆପଣଙ୍କ ପୁଅ କି ଝିଅ ସାଙ୍ଗର ହେବ...।

"ଆଚ୍ଛା ?", ସଦାଶିବଦାଶବାବୁ ବିସ୍ମୟ-ଆନନ୍ଦର ପରାକାଷ୍ଠା ଦେଖାଇଲେ ।

"ହଁ, ମୁଁ ତାଙ୍କୁ ଏଇକ୍ଷଣି କହୁଥିଲି ପରା, ଯେ ତୋର ସାଙ୍ଗର ପିଲାମାନେ ଅଛନ୍ତି—"

କିନ୍ତୁ ଏଇ କଥାଟି କହିଲା ପରେ ତଥା ଘରକୁ ଫେରିବା ବାଟରେ ସେ ବାରମ୍ବାର ଦୁଃଖ କରୁଥିଲେ ଯେ ରମୁଟା ଅପଦାର୍ଥ । ଟୋକା-ଟୋକୀଙ୍କ ଭଳି ହେବା ଉଚିତ୍ । ମୋର ଯେତେବେଳେ ବୟସ ଥିଲା... ସେଣିକି ସେ ଭାବିବାକୁ ଚାହିଁଲେ ନାହିଁ । ହାଲିଆ ଲାଗିବ । ଅନେକ ଦିନର ହିସାବ ।

ସେଦିନ ମଧ୍ୟାହ୍ନ ଭୋଜନ ଓ ମଧ୍ୟାହ୍ନ ଶୟନ ପରେ କାର୍ତ୍ତିକବାବୁ ଗୋଟାଏ ଅସ୍ୱାଭାବିକ କାମ କଲେ । ବାଙ୍ଗୀ ହାତରେ ଏକତମ ପୁରୁଣା ଟ୍ରଙ୍କ ଖୋଲେଇ ନାନାଦି ଉଇଖିଆ ଧୂସର କାଗଜପତ୍ର ଭିତରୁ ଗୋଟାଏ ମୋଟା ଆଲ୍‌ବମ୍ ଉଦ୍ଧାର କଲେ । ଏବଂ ଖୁସିଟାଏ ହେଲେ ଯେ ଉଇମାନେ ତାଙ୍କ ମନକଥା ବୁଝିଲାପରି ତା'ର ବିଶେଷ କ୍ଷତି କରିନାହାନ୍ତି । ଅଧିକାଂଶ ଷ୍ଟାମ୍ପ୍ ନିଖୁଣ ହୋଇ ରହିଛି,—ଜାର୍ ଯୁଗର ରୁଷିଆ, ହିଟ୍‌ଲର୍ ପୂର୍ବର ଜର୍ମାନୀ, କେତେ ଲୁପ୍ତ ରାଜ୍ୟ ଯଥା ନାଟ୍‌ଭିଆ, ଟାଙ୍ଗାନିକା...। ମୂର୍ଖ ପୁଅମାନେ କେହି ଆଗ୍ରହ ଦେଖେଇଲେ ନାହିଁ । କିନ୍ତୁ ଏଇକ୍ଷଣି ଯା'ର ଅମୂଲ ମୂଲ ହେବ । କଥା କଥାରେ ଥରେ ରମୁକୁ ପଚାରି ଥିଲି । କହିଲା ସେ ପିଲାଦିନେ ଷ୍ଟାମ୍ପ୍ କଲେକ୍ଟ କରୁଥିଲା, ସତେକି ଏସବୁ ପିଲାଳିଆ ଖେଳ । ଠିକ୍

ଅଛି, ମୁଁ ମାଳମାକୁ ଦେବ । ମୁଁ ଜାଣେ ସେ ସ୍ମା'କୁ ଦେଖି ନାଚି ଉଠିବ । ଭଦ୍ରତାରେ ନାଇଁ ଥାଉ ବୋଲି କହୁ ନ କହୁଣୁ ମୋ ହାତରୁ ନେଇଯିବ, ଧନ୍ୟବାଦ ଦେବାକୁ ଭୁଲିଯିବ । ଅବଶ୍ୟ ତା'ର ଭାଇମାନେ ଅଛନ୍ତି (କେଉଁଟା ଭାଇ ?), ସେମାନେ ମଧ୍ୟ ନେବାକୁ ଚାହିଁ ପାରନ୍ତି । କିନ୍ତୁ ମୋର ଇଚ୍ଛା ହେଲା ମୁଁ ଯାହାକୁ ଦେବି, ସେଥିରେ କାହାର କଣ କହିବାର ଅଛି ? ତା'ଛଡ଼ା ଆଜିକାଲିକାର ପୁଅମାନେ ସମସ୍ତେ ସେଇ ରମୁ କାଟର । ନିଜକୁ କଣ ବୋଲି କଣ ଭାବନ୍ତି ।

କାର୍ତ୍ତିକବାବୁଙ୍କ ଆଶା ପୂରଣ ହେଲା । ତା' ପରଦିନ ଜିନିଷଟି ମାଳମା ହାତକୁ ବଢ଼େଇଦେଲାରୁ ସେ ହୁଏତ ନାଚି ଉଠି ତାଳି ମାରିଲା ନାହିଁ, କିନ୍ତୁ ଷ୍ଟାମ୍ପମାନଙ୍କୁ ଆଖି ପୂରେଇ ଦେଖିଲା, ଓ "କି ସୁନ୍ଦର !" ବୋଲି କହିଲା । ଏବଂ ସଦାବିହାରୀବାବୁ ତାକୁ ଚେତେଇ ନ ଦେବା ଯାଏଁ ସେ ପ୍ରକୃତରେ ଥ୍ୟାଙ୍କସ୍ ଦେବାକୁ ଭୁଲି ଯାଇଥିଲା ।

ଷ୍ଟାମ୍ପ ଆଲବମ୍ ପରେ ଆଉ କଣ ଅଛି ? ଆଉ କଣ ଦେଇ ହେବ ? ଏଇ ପ୍ରଶ୍ନ ତାଙ୍କୁ ବ୍ୟତିବ୍ୟସ୍ତ କରିବାକୁ ଲାଗିଲା, ଯଦିଓ ସେ ପ୍ରତିଥର ତାକୁ ଠିକଣା ଜବାବ ଦେଇ ଦୂରକୁ ଘଉଡ଼େଇ ଦେଲେ । ସେ କଣ ମୋର ପ୍ରେମିକା ନା ନିଜ ନାତୁଣୀ ଯେ ମୁଁ ତାର ମନ ନେବାକୁ ବସିଛି ? ଗୋଟାଏ ଜିନିଷ ପଡ଼ି ରହିଥିଲା ଘରେ, ଜଣକ କାମରେ ଆସିଲା । ବାସ୍ । ତା' ବେଳକୁ ମୁଁ କଣ ରେଶମ-ଜରି ଗୋଲାପ ଫୁଲ ଯାହାକୁ ମୋ ଝିଅ ପ୍ରେଜେଣ୍ଟ ଦେଇଥିଲା ମୋତେ, ତାକୁ ଯାଇ ଦେଇଆସିବି ? ନା ପୁଅମାନେ ଯେଉଁସବୁ ଗ୍ରେଟମୋଟ ଜିନିଷ ଆଣି ଦେଇଛନ୍ତି କେଉଁଠୁ କେଉଁଠୁ, ମାର୍ବଲ ଘୋଡ଼ା, ଚମଡ଼ାର କୁନି ହୁକ୍କା, ବେଙ୍ଗ ରୂପକ ଅଳେଇଚ ଡ଼ିବା, ଝିଲିମିଲି ହାତ ବାଞ୍ଛଣା, ଯାହାକୁ ଲେଡ଼ିମାନେ ବ୍ୟବହାର କରନ୍ତି ? ହୁଁ ! ସେଇଠୁଁ ଗୋଟାଏ ବଗୁଲିଆମି ତାଙ୍କ ମନକୁ ଆସିଲା । ଏଇ ରମୁ ଯେତେବେଳେ ପିଲା ହୋଇଥିଲା, ତା' ଜେଜେଙ୍କ ପାଖକୁ ଛବି ଆଙ୍କି ପଠେଇଥିଲା । ଘର ଆଉ ବଗିଚା । ଫୁଲଗୁଡ଼ାକ ଡେଙ୍ଗା ଡେଙ୍ଗା ହୋଇ ଉଠିଛନ୍ତି ତାଳଗଛ ପରି, ସୂର୍ଯ୍ୟ ଗୋଟିଏ କୋଣରେ ଥାଇ ଖରା ପେଷୁଛି,

ମନ୍ଦିରରେ ଗାନ୍ଧୀ ଟୋପିଗୁଡ଼ିକ ଘରଟିଏ ଗଳା ପଡ଼ୁଛି । ସେଇଆକୁ ଦେଇଆସିବ କି ପାଇଁ ? କହିବ ଦେଖ ମୋ ନାତିର ଆର୍ଟ, କେଡ଼େ ବଢ଼ିଆ ହୋଇଛି । ରମୁ ଜାଣିଲେ ଖରାପ ହୋଇଯିବ କିନ୍ତୁ ଅନ୍ତତଃ ସେଇ ବାହାନାରେ ତାଙ୍କ ଘରକୁ ଯିବ, ଆଉ ସେ ଝିଅ ସାଙ୍ଗରେ ଲଢ଼େଇ କରିବ ।

ନା, ଆଜିକାଲିକା ପୁଅଝିଅ ସେମିତି ଲଢ଼େଇ କରନ୍ତି ନାହିଁ । ଖାଲି ଅଭଦ୍ରାମି କରନ୍ତି । ମାନେ ଯେଉଁମାନେ ସାଧାରଣ ଘରର ପିଲା । ଆମ ରମୁ ଶ୍ରୈରମୁହାଁ ହୋଇପାରେ କିନ୍ତୁ ବଜାରି ନୁହେଁ । କାର୍ତ୍ତିକବାବୁ ରମୁ ପାଇଁ ଦୁଃଖିତ ହେବା ସତ୍ତ୍ୱେ ଆଶ୍ୱସ୍ତ ହେଲେ ଯେ ସେ ଖରାପ ହୋଇ ନ ପାରେ ।

ଯାହାହେଉ ତାଙ୍କ ଘରକୁ କାହିଁକି ଯାଉନାହୁଁ ବୋଲି ସେ ପୁଣି ରମୁକୁ ବକେଇଲେ ନାହିଁ । ସଦାବହାର ବାବୁଙ୍କର ଶର୍ଟଷ୍ଟ ଭିଜିଟ୍‌ର ଅପେକ୍ଷା କଲେ ।

ଆଶ୍ଚର୍ଯ୍ୟ ! ଆସି ହପ୍ତାକରୁ ଉପରେ ହୋଇଗଲାଣି । ଲୋକଟା ଶର୍ଟଷ୍ଟ ଭିଜିଟ୍‌ର ନାଁ ଧରୁନାହିଁ ? କାର୍ତ୍ତିକବାବୁ ବିରକ୍ତ ହେବା ସ୍ୱାଭାବିକ, ତଥାପି ସେ ଉଦାର ମନୋଭାବ ଦେଖେଇବାକୁ ଚାହିଁଲେ । ହୁଏତ "ବୁଢ଼ା" ବେମାର ହୋଇଥିବ । ସମସ୍ତଙ୍କର କଣ ମୋ ଭଳିଆ ସ୍ୱାସ୍ଥ୍ୟ ଅଛି ? ହୁଏତ ପିଲାପିଲାଙ୍କୁ କେହି···ମାଲତୀ···ଉହୁଁ, ମାଲତୀ ଆସିଥିଲା ସେଦିନ, ଷ୍ଟ୍ୟାମ୍ପ ବିଷୟରେ କଣ ମତାମ ଉଚାରି କରି ପଳେଇ ଗଲା । ନାଃ, ଆଉଥରେ ତାଙ୍କ ଘରୁ ବୁଲି ଆସିଲେ ହେବ । ଏହି ଭାବରେ କାର୍ତ୍ତିକବାବୁ ତୃତୀୟବାର ସେଠିକି ଗଲେ । ତୃତୀୟରୁ ଚତୁର୍ଥ । କାହିଁକିନା ସଦାବହାରବାବୁ ବିନୀତ କ୍ଷମା ମାଗିନେଲେ ଯେ ତାଙ୍କ ସ୍ତ୍ରୀଙ୍କ ଅସୁସ୍ଥତା ଟିକିଏ ବଢ଼ିଯାଇଛି, ସେଇଥିପାଇଁ ସେ ଆସିପାରୁ ନାହାନ୍ତି । ସେଇଠୁ ପାଇଁ ତାଙ୍କର ମନେପଡ଼ିଲା ଯେ ହଁ, ବନ୍ଧୁଙ୍କର ଗୋଟିଏ ସ୍ତ୍ରୀ ଅଛି, ତା'ର ସ୍ୱାସ୍ଥ୍ୟ ଭଲ ନାହିଁ, ଏବଂ ସେ ସେଇଥିପାଇଁ ପୁରୀକୁ ଆସିଛନ୍ତି । ତେଣୁ କାର୍ତ୍ତିକବାବୁ ତାଙ୍କୁ କ୍ଷମା କରିଦେଲେ, ଏବଂ ଚତୁର୍ଥରୁ ପଞ୍ଚମବାର ଯିବାକୁ ପ୍ରସ୍ତୁତ ଥିଲେ । କିନ୍ତୁ ତାଙ୍କ ଉଦ୍ୟମ ହଠାତ୍ ଅପ୍ରକାଶିତ ରହିଗଲା ।

ସମୁଦ୍ରକୂଳ । ଫ୍ଲାଗ୍ ଷ୍ଟାଫ୍ ପାଖରେ ନୁଚ୍ଛେ । ବି.ଏନ୍.ଆର୍ ସେସଫଟକୁ । ବେଳେ ବେଳେ କାର୍ତ୍ତିକବାବୁ ସେ ଆଡ଼କୁ ବୁଲି ଯାଆନ୍ତି, ଓ ନିରୋଳାରେ ନିଜ ସାଙ୍ଗରେ ଢେଉମାନଙ୍କୁ ଏବଂ ସେମାନଙ୍କ ଗର୍ଜନ, ଆସ୍ଫାଳନ ଓ ମରଣକୁ ଉପଭୋଗ କରେଇବାକୁ ଚାହାଁନ୍ତି । ଚ୍ୟାଲେଞ୍ଜ କଲାପରି । ନିଜ ମନରେ ହିନ୍ଦୁ ଦର୍ଶନର ଟୀପ୍ପଣୀ କରନ୍ତି, କହନ୍ତି ମୁଁ ଯେତେବେଳେ ପୁରୁଷ ଓ ତୁ ହେଉଛୁ ପ୍ରକୃତି । ଯେତେ ଖାମ ରଙ୍ଗ ଦେଇ ଆଖି ଦେଖେଇଲେ କ'ଣ ହେବ, ମୁଁ ଜାଣେ ତୁ ନର୍ଜୀବ ନିଷ୍ପ୍ରାଣ । ସେଦିନ ତାଙ୍କର ଏଇ ଧାରଣା ବେଶ୍ ଧାରୁଆ ହୋଇ ଉଠିଥିଲା । କାରଣ ସକାଳର ପ୍ରାପ୍ତ ଚେତନା ଏପର୍ଯ୍ୟନ୍ତ ଲିଭିଯାଇ ନଥିଲା, ଓ ତାକୁ ଚେତିବାରେ ଅସୁବିଧା ହେଉ ନଥିଲା । ସକାଳେ ସେ ସଦାନିନ୍ଦାରୀ ବାବୁଙ୍କ ଘରକୁ ଯାଇଥିଲେ । ସେଠି ମାଳିନୀ ତାଙ୍କର ପାଖରେ ବସି ଷ୍ଟ୍ୟାମ୍ପ ଆଲ୍‌ବମ୍ ମେଲେଇ ଦେଇଥିଲା ଓ ହଜାରେ ପ୍ରଶ୍ନ ପଚାରି ଗୃଲିଥିଲା । ଯାହାର ଉତ୍ତର ଅନାବଶ୍ୟକ । ପ୍ଲେ କଣ ତାଙ୍କ ରାଜାଙ୍କ ଛବି ? ମିଛ, ମୋଟେ ରାଜା ଭଳିଆ ଦେଖାଯାଉ ନାହିଁ । ଏଇ ହେଉଛି କଙ୍ଗାରୁ ? ବାପା କହୁଥିଲେ ସାହେବ ଗୁଡ଼ା ତାଙ୍କ ମାଂସ ବି ଖାଇ ଯାଆନ୍ତି । ଛି ! ମଉସା, ଆପଣ କଙ୍ଗାରୁ ଦେଖିଛନ୍ତି ? (ସେଇ ପ୍ରଥମଥର ସେ ମଉସା ବୋଲି ସମ୍ବୋଧନ କଲା, ଓ କାର୍ତ୍ତିକବାବୁ ତାଙ୍କ ଛାତି ଭିତରେ ଏକ ଅଭିନବ ବୁଦ୍‌ବୁଦର ଶବ୍ଦ ଶୁଣି ପାରିଲେ । ମୋତେ ଅଜା ବୋଲି ଡାକିବାର କଥା, ହେଲେ ମଉସା ଡାକୁ କିଛି କ୍ଷତି ନାହିଁ) ଷ୍ଟ୍ୟାମ୍ପରେ ତାରା ଫୁଟିଛି କଣ ନା ? ତାରା କଣ ଖାଲି ତାଙ୍କର ଦେଶର ? ମଉସା, ତାରାମାନଙ୍କ ବିଷୟରେ ଜାଣିଛନ୍ତି ? ପିଲାଦିନେ ମୋର ଜଣେ ଟିଉସନ୍ ମାଷ୍ଟର ଥିଲେ, ମୋତେ ଚିହ୍ନେଇ ଦେଉଥିଲେ, ସପ୍ତର୍ଷି, ଅରୁନ୍ଧତୀ, ଧ୍ରୁବ, ଗଜଉଦ୍ଧାର ଏମିତି କେତେ କଣ । ଥରେ କହିଲେ ଯେ ଗୋଟାଏ ଆଖି ବୁଜିକରି ଦେଖେ, ଅରୁନ୍ଧତୀ ଦେଖାଯିବ, ଦେଖା ନ ଗଲେ କୁଆଡ଼େ ଅଳ୍ପଦିନ ଭିତରେ···ବାଜେ କଥା···(ମୂର୍ଖ ମାଷ୍ଟର ! ପିଲାମାନଙ୍କୁ ଏମିତି କଥା କୁହନ୍ତି ? ରହ ଲୋ ଝିଅ, ମୁଁ ତୋତେ ସାଇଣ୍ଟିଫିକ ଭାବରେ ବୁଝେଇ ଦେବି । ରହ) ଇତ୍ୟାଦି ଇତ୍ୟାଦି । ସେଇସବୁ ଅଳୀକ ଅଳି ଆବ୍‌ଦାର୍ ମନେପଡ଼ି ଯାଉଥିଲା, ଓ ତାଙ୍କ ଚେତନାକୁ ପୁଣି ରଙ୍ଗେଇ ଦେଇ

ପାରୁଥିଲା । ଏବଂ କାର୍ତ୍ତିକବାବୁ ଧାର୍ମିକତାର ସବୁ ଚେତ୍ତମାନଙ୍କୁ ଅନଭୁଥିଲେ । ମୁଁ ବଞ୍ଚିଛି । ତୁ ବଞ୍ଚିତ, ଅନନ୍ତ କ ଅସୀମ ଦେଳେ ହୋଇ ଥା' । ତୋର କିଛି ନାହିଁ !

ଏଇ ସମୟରେ ସେ ଦେଖିଲେ ସେମାନଙ୍କୁ । ଲହରେଇ ମାଡ଼ି ଆସୁଥିବା ପାଣି ସାଙ୍ଗରେ ଖେଳୁଛନ୍ତି । ଅବଶ୍ୟ କେତେବେଳଠୁ ଦେଖିଲେଣି । ଗହଳରୁ ଖସିଯାଇ ଏକାନ୍ତ ଆନନ୍ଦ କରିବାର ଅଧିକାର କଅଣ ଆଜ କାହାର ନାହିଁ ?—ଏହି ମର୍ମରେ କାର୍ତ୍ତିକବାବୁ ସେମାନଙ୍କ ଉପସ୍ଥିତି ସ୍ୱୀକାର କରି ନେଇଥିଲେ, ତେଣୁ ଆପଣା ଅନୁଭବରେ ଆଞ୍ଚ ଲାଗିବାର କୌଣସି କାରଣ ନ ଥିଲା । କିନ୍ତୁ ବର୍ତ୍ତମାନ ସେ ସେମାନଙ୍କୁ ଦେଖିଲା ପରି ଦେଖିଲେ । ଜୁଆରର ତାଡ଼ନାରେ ସେମାନେ କ୍ରମଶଃ ତାଙ୍କ ପାଖ ହୋଇ ଆସିଥିଲେ କି କଅଣ, ଦୁ'ଜଣଙ୍କ ଚେହେରାର ପଶ୍ଚାଦ୍‌ଭାଗ ବାରି ହୋଇଗଲା । ପୁଅଜଣକ ଜିନସ୍ ପିନ୍ଧିଛି, ନଳୀ ଗୋଡ଼ । ଠିଆହୋଇ ରହିଲେ ଅଳ୍ପ ବହୁତ ଝିଙ୍କିଲା ପରି ମନେ ହେଉଛି । ହସିଲାବେଳେ ତା' ମୁଣ୍ଡକୁ କେମିତି କଣ କରୁଛି କେଜାଣି, ଚହଲା ଚହଲା ଲାଗୁଛି । ହଠାତ୍ ଗୋଟାଏ ପ୍ରଚଣ୍ଡ ତେଜ ଅତର୍କିତରେ ମାଡ଼ ଆସିଲା ଓ ସେମାନଙ୍କ ପାଖରେ-କିନ ଭାଙ୍ଗି ପଡ଼ିଲା । ଚକିତ ଉଲ୍ଲାସରେ ଏବଂ ମିଛି ମିଛିକା ଭୟରେ ସେମାନେ ବୁଲି ପଡ଼ିଲେ ଓ ତାଙ୍କର ଆଡ଼କୁ ଧାଇଁ ଆସିଲେ କିଛି ବାଟ । କାର୍ତ୍ତିକବାବୁ ପ୍ରଥମେ ପୁଅକୁ ଦେଖିଲେ । ତା'ର ସମ୍ପୂର୍ଣ୍ଣ ସମ୍ମୁଖ ଚେହେରାକୁ ଦେଖି ପାରିଲେ । ଇଏ କିଏ···ରମୁ ? ରମୁ ?? ଆଉ ତା' ସାଙ୍ଗରେ ସେ ଝିଅଟି କିଏ ?

ରମୁ ପାଖରେ ସେ ନିହାତି ସାନ ଦେଖାଯାଉଛି । ଅସ୍ତବ୍ୟସ୍ତ କେଶର ଆବରଣ ଭିତରେ ତା'ର ମୁହଁ ଅଳ୍ପବହୁତ ଦିଶିଯାଉଛି । ଗୋଲ୍, ଗୋରା । ଆଉ ତାର ଓଠ···ଅନେକଟା···ହୁଏତ ମୋର ଭ୍ରମ, କିନ୍ତୁ ଭ୍ରମର କାରଣ ନାହିଁ, ମୋର ଦୃଷ୍ଟିଶକ୍ତି ଚାଲିଯାଇ ନାହିଁ, ଅନ୍ଧାର ଘନେଇ ନାହିଁ···ତା'ଛଡ଼ା ପୃଥିବୀରେ ମାଳତୀ ପରି ଆଉ କେତେଟା ଝିଅ ଅଛନ୍ତି ?

ରମୁ ଆଉ ମାଳତୀ !

ନାଡ଼ଟୋକା ବୁଡ଼ ବୁଡ଼ ପାଣି ପିଉଥିଲା ? କାର୍ତ୍ତିକବାବୁ କଥାଟାକୁ ପରିହାସ ଛଳରେ ଉଡ଼େଇ ଦେବାକୁ ଚାହିଁଲେ । କିନ୍ତୁ ପାରିଲେ ନାହିଁ । ତାଙ୍କର ମନେ ହେଲା ସେମାନେ ସମସ୍ତେ ତାଙ୍କ ପ୍ରତି ଶଠତା ଆଚରଣ କରିଛନ୍ତି । ରମୁ ମାଳତୀ, ତଥା ମହାବିହାରୀବାବୁ ଓ ତାଙ୍କ ପରିବାର । ଏପରିକି ଏଇ ନାଗା ଖଣ୍ଡିକ, ଯାହାକୁ ସେ ନିଜର ବୋଲି ଭାବୁଥିଲେ, ଯେଉଁଠି ସେ ମନଇଚ୍ଛା ସମୁଦ୍ରକୁ ଦେଖୁଥିଲେ ଓ ନଚଉଥିଲେ । ସିଏ ବି' ବାଦ କଲା ମୋ ସାଙ୍ଗରେ ।

କ'ଣ ନା ମୋତେ ବୋର୍ ଲାଗୁଛି । ମୋ ଆଗରେ ଭିଡ଼ ମୋଡ଼ ହେଉଥିଲା, ହାଇ ମାରୁଥିଲା । ଏଣେ କେତେବେଳେ ଚୂପକିନା ଖସି ପଳେଇ ଯାଉଥିଲା ରେବୁରଙ୍କ ପରି । ହଲଦିଆ କୋଠାକୁ ଯାଉନୁ ସେଠି ତୋ ବୟସର ପିଲାମାନେ ଅଛନ୍ତି ବୋଲି କହିଲାରୁ ଅସ୍ଥିର ହେଲା ପରି କାହିଁକି ଅନେଇଲା ମୋ ଆଡ଼କୁ, ତା'ର କାରଣ ବୁଝିପାରିଲି । ଧନ୍ୟବାଦ । ପୁଣି ବନ୍ଦ କମରା ଭିତରୁ ଗୁଞ୍ଜନର ଧ୍ୱନି । ସେତେବେଳକୁ ଟୋକା ନିକଟରେ ଫେରିଥିଲା ତାଙ୍କ ଘରୁ, କମ୍ପା ହୁଏତ ପିବ ବୋଲି ସଜ ହେଉଥିଲା । ସେଇଥି ପାଇଁ ଉଚ୍ଛୁଳୁଥିଲା, ଉବୁରୁଥିଲା, ଲୁଚେଇ ଲୁଚେଇ···ଲଜ୍ଜା ନାହିଁ ତମକୁ !

ଏତେ କଟୂକ୍ତି କଲା ପରେ ମଧ୍ୟ ତାଙ୍କର ମନେ ହେଲା ଯେ ଅପସରି ଯାଉଥିବା ଯୁଗଳ ମୂର୍ତ୍ତି ତାଙ୍କୁ ପିଠି କରି ଚାଲି ଯାଉ ନାହାନ୍ତି । ରୁଷୁଛନ୍ତି । ସେଇଠୁଁ ସେ ସ୍ୱର ବଦଳେଇଲେ ।

ଆରେ ପାଗଳା ! ମୁଁ ତମ ଉପରେ ରାଗୁଛି ନା କଣ ? ନା ମୋର ହିଂସା ହେଉଛି ? ଖାଲି ଦୁଃଖ ହେଉଛି ଯେ ଏତେ ଦୂରକୁ ଦିବା ଆଗରୁ ମୋତେ ଟିକିଏ ପଚାରିଲ ନାହିଁ । ରମୁ ପୁଅ, ମୁଁ ତୋତେ ନିଜେ ତା' ପାଖକୁ ନେଇ ଯାଇଥାଆନ୍ତି, ତମ ଦି'ଜଣଙ୍କୁ ଏକାଠି କରିଥାଆନ୍ତି । କିନ୍ତୁ ତା' ଆଗରୁ ତମକୁ ସାବଧାନ, ମାନେ ତମ ମନକୁ ପ୍ରସ୍ତୁତ କରେଇ ଥାଆନ୍ତି । ଅର୍ଥାତ୍ ମୁଁ ତୋତେ କହି ଥାଆନ୍ତି ମାଳତୀ କେମିତିକା ପିଲା, ଫାଜିଲ୍, ଚେହେଲେଇ, ଫୁଟିଲଇ···ମୁଁ ତାର ନିନ୍ଦା କରୁନାହିଁ, ତାକୁ ଦେଖିଲାକ୍ଷଣି ଖୁସି ଲାଗେ,

କିନ୍ତୁ ତୁ ସେମିତିକା ଇଣ୍ଡିପେଣ୍ଡେଣ୍ଟ୍, ମୁଁ ତୋତେ ପୂର୍ବରୁ ଚେତେଇ ଦେଇ ଥାଆନ୍ତି । ତା'ଙ୍କିଡ଼ା ତା'ର ଭାଇ ଭଉଣୀ, ବାପା ମାଆଙ୍କ ବିଷୟ, କହି ଥାଆନ୍ତି ତୋତେ । ଆଉ ମାଳମି, ତୁ କଣ ମୋ ସାଙ୍ଗରେ ଖେଳୁଥିଲୁ ? ଷ୍ଟାମ୍ପ୍ ଫାମ୍ପ ସବୁ ମିଛ ? ସେଇ ବାହାନାରେ ତୁ ସେଦିନ ଆସିଥିଲୁ ଆମ ଘରକୁ ? ମୁଁ ତୋତେ ସ୍ୱାଜିଲାଣ୍ଡ୍ ଷ୍ଟାମ୍ପ୍‌ର ଅପୂର୍ବ ବର୍ଣ୍ଣବିଭବ ବୁଝେଇଲା ବେଳେ ତୋ'ମନ କୋଉଠି ଥିଲା ? ତୁ କେମିତି ଖସିଯାଇ ତା'ର ବନ୍ଦ କମରାକୁ ଯିବୁ ବୋଲି ଚାହୁଁଥିଲୁ—ନା ? ବନ୍ଦ କମରା ନୁହେଁ, ଖୋଲା ସମୁଦ୍ରକୂଳ···କାର୍ତ୍ତିକବାବୁ ଧୀରେ ଧୀରେ ଅତୃଷ୍ଣ ହୋଇ ଯାଉଥିବା ଦି'ଜଣଙ୍କ ଆଡ଼କୁ ବିକଳ ଚାହାଣୀରେ ଅନେଇଲେ । ତମେ ଏଇ ସମୁଦ୍ରକୂଳରେ ବୁଲୁଥାଅ, ରଙ୍ଗରସ ହୁଅ, କିନ୍ତୁ ବିପ୍ଲାକଙ୍କ ଘର ଭିତରକୁ ଯାଅ ନାହିଁ, ବରଜା ବନ୍ଦକରି ଦିଅନାହିଁ ।

ମୋର ଅଗରେ ଗୋଟିଏ ସୁନ୍ଦର ବସ୍ତୁ ନଷ୍ଟ ହୋଇଯାଉଛି, ନଷ୍ଟ ହୋଇଗଲା ପରା, ଏହି ଭାବରେ କାର୍ତ୍ତିକବାବୁ ଆଖି ବୁଜିଦେଲେ । କ୍ଷଣକ ପରେ ସେ ନିଜେ ଆଶ୍ଚର୍ଯ୍ୟ ହେଲେ ଯେ ତାଙ୍କ ଆଖି କୋଣରେ ଲୁହ ଜକେଇ ଆସୁଛି ।

ସେଇଠୁ ସେ ରାଗିଲେ ସେଇ ବୁଢ଼ା ନ ହୋଇ ମଧ୍ୟ ବୁଢ଼ା ବୋଲାଉଥିବା ସଦାବିହାରୀବାବୁଙ୍କ ଉପରେ । ତାଙ୍କରି ନକଲି ଢଙ୍ଗରୁ ଏଇ ମହାଭାରତ ସୃଷ୍ଟି ହେଲା ଯେତେବେଳେ ଆମର ସମୁଦ୍ରକୂଳରେ ଭେଟହେଲା, ଆଉ ସେ ନିଜକୁ ସମବୃଦ୍ଧ ବୋଲି ଦେଖେଇ ହେଲେ । ଅସଲ ଜଣେ, ଧୂର୍ତ୍ତ, ଆପଣା ମତଲବରେ ବିଠାପ୍ଲାର୍ କରି ଯାଇଛି, ଜାଣିଶୁଣି ଆମ ଘର ପାଖରେ ଘର ଭଡ଼ା ନେଇ ରହିଛି, ଆଉ·····

କ୍ରମଶଃ ଅନ୍ଧାର ହୋଇଗଲା । ଆଶା କରିବା ସ୍ୱାଭାବିକ ଯେ ବସ୍ତୁତଃ କାର୍ତ୍ତିକବାବୁ ଆଖି ବୁଜି ରହିଥାନ୍ତେ, ଅନେକ ବିଗତ ସନ୍ଧ୍ୟାର ଅନୁଭବକୁ ଚେତନାରେ ଖେଳେଇ ଫସାଶେଷଂ ଅଜ୍ଞାତ ବିଚିତ୍ର ବୋଲି କହି ଥାଆନ୍ତେ, ଏବଂ ଧୀରେ ଧୀରେ ଶାନ୍ତ ହୋଇ ଯାଇଥାଆନ୍ତେ । ସେଥିକୁ ତେଉମାନେ ସାହାଯ୍ୟ କରିଥାଆନ୍ତେ । କିନ୍ତୁ ସେମିତି ହେଲାନାହିଁ । କାର୍ତ୍ତିକବାବୁ ଚଟ୍‌କିନି

ଉଠି ପଡ଼ିଲେ । ଫେରିବାକୁ ବସିଲେ । ଓଦାବାଳକୁ ହାତଧରୀ ବାଡ଼ିରେ କେଞ୍ଚି ଗହ୍ବରିଆ କଣା କରିଦେଲେ । ଶୁଖିଲା ବାଲିରେ ଫୁଟିଥିବା ଫୁଲଗୁଡ଼ାଙ୍କ ଉପରେ ବାଡ଼ି ଚଳେଇ ଦେଲେ । ଫୁଲର ନାଁଆ ସଦାବହାରୀ ବୋଲି ମନେ ପଡ଼ିଲାରୁ ଟିକିଏ ହସ ହସିଲେ । ଏବଂ ଭିନ୍ନ ବାଟ ଦେଇ ଆପଣା ଘରେ ପହଞ୍ଚିଲେ ।

ତେବେ ଶୀନ୍ତ ଆସିଲା ପନ୍ଦର ଜୁନ ପରେ । ସେଇ ସମୁଦ୍ରକୂଳରେ ଏବଂ ସନ୍ଧ୍ୟାବେଳେ ।

ଇତି ମଧ୍ୟରେ ରମୁ ବାରମ୍ବାର କହି ସାରିଲାଣି ଯେ ଆଉ ମାସେ ରହିଗଲେ ହୁଅନ୍ତା । କଲେଜପଢ଼ା ତ ସରିଗଲାଣି । ଖାଲି ଏଠିକି ସେଠିକି ଦରଖାସ୍ତ ଦେବାକଥା । ସେଥିପାଇଁ ବମ୍ବେ ଯାହା, ଦିଲ୍ଲୀ ଯାହା, ପୁରୀ ସେଇଆ । ବାପାଙ୍କ ପାଖରେ ରହିବା ଯାହା··· । କାର୍ତ୍ତିକବାବୁ ତା'ର ଉତ୍ତର ଦେଇ ନାହାନ୍ତି, ଅଳସ ଅନ୍ତରଞ୍ଜିତ ଭଙ୍ଗୀରେ ମୁଣ୍ଡ ଟୁଙ୍ଗାରିଛନ୍ତି, ଯେମିତିକି ନାହିଁ ବୁଝିବ ଯେ ମୁଁ ବୁଝିଛି । ଡାକ୍ତରପୁଅ ଚିଠି ଲେଖିଛି ଯେ ରମୁ ଫେରିଗଲା ପରେ ତା'ର ଖେଳୁଆଡ଼ି ପୁଅ ଗନା ବନାମ ଗୌରବର ଆସିବାର କଥା, କିନ୍ତୁ ସେ କୋଉ ମ୍ୟାଚ୍ ପ୍ରାକ୍ଟିସ୍ ପାଇଁ ଅଟକି ଯାଇଛି, ଅତଏବ ସେ ନଜେ ତା'ର ଡାକ୍ତରୀ ପ୍ରାକ୍ଟିସ୍ ଛାଡ଼ି ଆସିବ କିଛିଦିନ ପାଇଁ । କାର୍ତ୍ତିକବାବୁ ତା'ର ତୁରନ୍ତ ଉତ୍ତର ଦେଇ କହିଲେ; ଆଉ ଦରକାର ନାହିଁ । ତାକୁଇ ବ୍ୟାଖ୍ୟା କରି ପ୍ରାୟ ପୃଷ୍ଠାଏ ଖଣ୍ଡେ ଲେଖିଗଲେ ଯେ ମୁଁ କୋଉ ପୁଅ ଝିଅ ଜ୍ଞାତି କୁଟୁମ୍ବିକୁ ହଇରାଣ କରିବାକୁ ଚାହେଁ ନାହିଁ । ମୁଁ ମୋର ଭଲ ଅଛି । ପୁରୀର ଏଇ ଘର ସମୁଦ୍ର, ଶ୍ରୀମନ୍ଦିର (ମୁଁ ମିଛ ଲେଖି ନାହିଁ । ମୁଁ ଦେଉଳକୁ ବିଶେଷ ଯାଏ ନାହିଁ ବୋଲି କ'ଣ ମୋର ଜଗନ୍ନାଥଙ୍କଠାରେ ଆସ୍ଥା ନାହିଁ !) ମୋର ଶେଷ ଜୀବନର ସମ୍ପତ୍ତି । ଝିଅ ପାଖରୁ ମଧ୍ୟ ଖଣ୍ଡେ ଚିଠି ଆସିଥିଲା, ତାକୁ ପଢ଼ି ସେ ଉତ୍ତେଜିତ ନ ହୋଇ ରହି ପାରିଲେ ନାହିଁ । କେଡ଼େ ସାହସରେ ଲେଖିଛି ଯେ ପୁରୀ ଘରକୁ ଭଡ଼ା ଲଗେଇ ଦେଇ ମୋ ପାଖରେ ଆସି ରୁହ । ଆମର ଏଠି ବଡ଼ ବଙ୍ଗଳା, କ୍ୟାଣ୍ଟନ୍‌ମେଣ୍ଟର ନିର୍ମଳ ପବନ, ବୋଲକରା ଜବାନ୍ ଭେଳାକୁ ଭେଳା, ସେବା ଯତ୍ନର ତ୍ରୁଟି ହେବ ନାହିଁ । ଝିଅ ମୋତେ କ'ଣ ବୋଲି ଭାବିଛି କି ? ତା'ର ସ୍ୱାମୀ ବ୍ରିଗେଡ଼ିଅର୍ ହେଉ କି ବାଦ୍‌ସା ହେଉ, ମୁଁ ଶେଷକୁ ତା'ର ପାଖରେ ପଡ଼ି

ରହିବ ? ମୋର କ'ଣ ଆତ୍ମସମ୍ମାନ ନାହିଁ ? ତା'ଛଡ଼ା···ମୋର ଅଭାବ କଅଣ ? ଦୁଃଖ କଅଣ ? ଯିଏ ଯେତେବେଳେ ମୋ ପାଖକୁ ଆସୁଛ ଆସ ମୁଁ ତୁମକୁ ଖୋଇବି, ପେଇବି । ତୁମେ ଏଠି ନାଚ, କୁଦ, ପ୍ରେମକର କିନ୍ତୁ ଦୟା ଦେଖେଇ ମୋ ପାଖକୁ ଆସୁଛ ବୋଲି କୁହ ନାହିଁ । ମୁଁ ଭଲ ଅଛି । ଫାଷ୍ଟକ୍ଲାସ ! କାର୍ତ୍ତିକବାବୁ ଚିଠିର କଡ଼ା ଉତ୍ତର ଦେବାକୁ ଚାହିଁଲେ । କିନ୍ତୁ ତାଙ୍କର ମନେପଡ଼ିଲା ଯେ ଝିଅଟା ନିହାତି ସେନ୍‌ସିଟିଭ୍, ନାକକାନ୍ଦୁରୀ । ଶେଷକୁ ଉତ୍ତର ନ ଦେଇ ରହିଗଲେ । ଏଣେ ସେ ଖବରକାଗଜରୁ ପଢ଼ି ଆପ୍ୟାୟିତ ହେଲେ ଯେ ଛାତ୍ରମାନଙ୍କର ଧର୍ମଘଟ ତୁଟିଗଲା । ସ୍କୁଲ କଲେଜ ଶୀଘ୍ର ଖୋଲିଯିବ । ଏବଂ ସେ ପନ୍ଦର ଦିନଯାକ ପ୍ରାୟ ସବୁଦିନ ସମୁଦ୍ରକୂଳକୁ ଗଲେ । ମଝିରେ ମଝିରେ ସେମାନଙ୍କୁ ଦେଖିଲେ, କିନ୍ତୁ ସେଥିରେ ମୁଣ୍ଡ ଖେଳେଇଲେ ନାହିଁ । ନିଜକୁ କହିଲେ ଯେ ମୋ ଭଳି ଜଣେ ବରିଷ୍ଠ ଲୋକ, ଯେ ଖାଲି ବୟସର ଗାରିମା ନୁହେଁ, ବ୍ୟକ୍ତିତ୍ୱର ବଡ଼ିମାରେ ବୁଢ଼ା, ତା'ର ସମୁଦ୍ର ସାଙ୍ଗରେ ବିଶେଷ ସମ୍ପର୍କ ରହିଥିବା ସ୍ୱାଭାବିକ । ଚେଉମାନେ ତା'ର ସମାସ୍କନ୍ଧ ବନ୍ଧୁ କହିଲେ ଚଳେ ।

ତା' ଉତ୍ତାରୁ ଯେଉଁ ସନ୍ଧ୍ୟାଟି ଆସିଲା, ସେଥିର ଅନ୍ୟତମ ବିଶିଷ୍ଟତା ହେଉଛି ଯେ ତା'ର କାମ୍ୟ ରୂପର କୌଣସି ପୂର୍ବାଭାସ ନଥିଲା । ଢେଉମାନଙ୍କ ଚେହେରା ଚରିତ୍ର ନିତିଦିନିଆ ବୋଲି ମନେ ହେଉଥିଲା । ବେଳାଭୂଇଁର ଆଇଁଷିଣିଆ ଗନ୍ଧ ଠିକଏ ଉତ୍‌କଟ ହୋଇ ଉଠୁଥିଲା । ତା'ଛଡ଼ା ବାଲିରେ ଖେଳେଇ ହୋଇ ପଡ଼ିଥିବା ଉଚ୍ଛିଷ୍ଟ ବ୍ୟଞ୍ଜନର ବାସ୍ନା, ବିକଟେନାକୁ କିନା ପିନ୍ଧି ତାର ଗୋରା—ନାଲି ଚମକୁ ଦେଖାଇ ପହଁରୁଥିବା ବିଦେଶିନୀ ଇତ୍ୟାଦିର ଦୃଶ୍ୟ ଶାନ୍ତ ଚେତନାର ଅନୁକୂଳ ନଥିଲା । ତଥାପି ସେ ସମସ୍ତକୁ କାଟିଦେଇ କାର୍ତ୍ତିକବାବୁ ଅମୃତ ହାସଲ କରିନେଲେ, ଏବଂ ସେଥିରେ ବେଶ୍ କିଛି ସମୟ ବୁଡ଼ିଗଲେ, ଏହାର କୃତିତ୍ୱ ଅନ୍ୱସୀକାର୍ଯ୍ୟ ।

ବସୁ ନ ବସୁଣୁ ସେ ଟୋକାକୁ ଦେଖିଲେ । ସେଇ ନିଜ ଟୋକା, ରମୁ । ଏକୁଟିଆ ଠିଆ ହୋଇ ରହିଛି । ସମୁଦ୍ରକୁ ଅନେଇଛି ।

ଅନେଇଛି ତ ଅନେଇଛି । ଆଉକିଛି ଦେଖା ଦର୍ଶନ ନାହିଁ । କଥା କଅଣ ?

ଟୋକା ଠିଆ ହେବା ଗୁଡ଼ ବସି ପଡ଼ିଲା । କିଛି ସମୟ ପରେ ଆଣ୍ଠୁରେ ମୁହଁ ମାଡ଼ିଲା ଓ ସେଇ ଅବସ୍ଥାରେ ବସି ରହିଲା । ମୁଣ୍ଡ ଟେକିଲା ପରେ ବାଲିରୁ କଅଣ ଗୋଟାଏ ଗୋଟେଇ ସମୁଦ୍ର ଉପରକୁ ଫିଙ୍ଗିଲା । ପୁଣି ଠିଆ ହେଲା, ଆକାଶକୁ ଅନେଇ ଅନେଇ ଚାଲିଲା ପାଗଳଙ୍କ ପରି । ଏବଂ କ୍ରମଶଃ ସମୁଦ୍ରର କଡ଼େ କଡ଼େ ନ ଚାଲି ତା' ଭିତରକୁ ପଶି ଯାଉ ହେବ ବୋଲି ମନେ ହେଲା । କାର୍ତ୍ତିକବାବୁ ତତ୍‌କ୍ଷଣାତ୍ ଧାଇଁ ଯିବାକୁ ଚାହିଁଲେ, କିନ୍ତୁ ଦେଖିଲେ ଯେ ଭଗବାନଙ୍କ କୃପାରୁ ସେ ଖାଲି ପାଦ ଧୋଇ ଫେରି ଆସୁଛି । ନା, ସେ ସେଭଳି ମନ୍ଦ ବୁଦ୍ଧି କରିବ ନାହିଁ । କିନ୍ତୁ କିଏ ଜାଣିଛି, ଆର ଥରକୁ ସେ ହୁଏତ ଆଉ ପାଦେ ଆଗେଇ ଯିବ, ସେଇଠୁଁ ଅଉ ପାଦେ···କାହିଁକିନା ମନର ଅବସ୍ଥା ସଙ୍ଗୀନ୍ ବୋଲି ଜଣାପଡ଼ୁ ଯାଉଛି ।

ଆସି କେତେବେଳ ହେଲାଣି, ମାଳତୀ ଆସିବାକୁ ନାହିଁ । ମାଳତୀ ଆସିବ ନାହିଁ ।

ସ୍କୁଲ କଲେଜ୍ ଖୋଲିଗଲାଣି, ତେଣୁ ମାଳତୀକୁ ପୁଣି ଗୁଡ଼ ଚାଲିଯିବାକୁ ହେବ । ଉହୁଁ, ସେତିକି ହୋଇଥିଲେ ପୁଅ ଏମିତି ଭାଙ୍ଗି ପଡ଼ନ୍ତା ନାହିଁ । କାରଣ ଭିନ୍ନ । ବିଚରା ହାରି ଯାଇଛି । ପ୍ରଥମ ପ୍ରେମ ଭାଙ୍ଗି ଯାଇଛି । ପ୍ରଥମ ପ୍ରେମ ନୁହେଁ ତ ଆଉ କଅଣ ? ପିଲାଟା କାଲି ସକାଳେ ନିଦ ଉଠିଛି, ସେ ଛଅଟା କି ନଅଟା ପ୍ରେମ କରିଥିବ ବୋଲି ଭାବୁଛ ? ଆହା, ସେଇଥିପାଇଁ ତ ଏଇ ଅବସ୍ଥା । ଭାବୁଛି ସଂସାର ସରିଗଲା ଏଇଠୁଁ । "ତା'ର" ଛଡ଼ା ଆଉ କେହି ନାହିଁ, ଆଉ କିଛି ନାହିଁ । ମୁଁ ଜାଣିଛି, ମୁଁ ଜାଣିଛି, ମୋର ବି ସେମିତି ହୋଇଥିଲା କେବେ, ଅନେକ ଯୁଗତଳେ । ତାକୁ ହସି ଉଡ଼େଇ ଦେବାର ନୁହେଁ ।

ସେଇଠୁଁ କାର୍ତ୍ତିକବାବୁ ନିଜକୁ ପାଇଲେ । ନିଜଠାରେ ନାତିକୁ ପାଇଲେ । ଅତୀତ ବିତେଇଥିବା ଅଗଣିତ ସନ୍ଧ୍ୟାର, ହୃଦାପୁର, ସରିଯିବାର ଅନୁଭବକୁ ବର୍ତ୍ତମାନର ବୁଢ଼ାପଣରେ ମାଖି ଦେଇ ଏକ ଅପୂର୍ବ ବିଷାଦର ପ୍ରସାଦ, ଶୀତ ସୁଖର ଅଧିକାରୀ ହେଲେ । ପାଇବାରୁ ନାତିକୁ ଦେଲେ । କହିଲେ, ଶେଷକୁ ମୁଁ ଯାହା ଭୁ ସେଇଆ । ତୋର ଏଇ ସନ୍ଧ୍ୟା କଟିବ,

ସକାଳ ଆସିବ, କିନ୍ତୁ ସେଥିକରେ ସରଳ ନାହିଁ, ପୁଣି ସେଇକଥା, କେତେ ଭାବରେ, କେତେ ରୂପରେ, ଲମ୍ବୁବଲସ୍ଫୁର ଲୀଳା, ଏଇ ଢେଉମାନଙ୍କ ପରେ...କିନ୍ତୁ ଏମାନେ ରହିଥିବେ, ଆମେ ଚାଲିଯିବା । ଦୁଃଖ ନାହିଁ । ଶାନ୍ତି ଉତ୍ସରୁ, ସ୍ୱୀକାର ପଛକୁ ଦୁଃଖ କାହିଁ ?

ଆରେ ବୋକା, ଏଇ ସନ୍ଧ୍ୟାକୁ ଗୋଳି ମାର୍ । ଆଜି ନ ମାରିଲେ କାଲି ମାରିବୁ । ଉଦ୍ଧଣ୍ଡୀ । ଫୁଲେଇ । ବୈରିଣୀ ମାଆର ଝିଅ । ଧୂର୍ତ୍ତ ବାପର ଝିଅ । ଆମ ଖାନ୍‌ଦାନର କେବେ ପଛରେ । ଏମିତି ଭାବିବା ଉଚିତ । ସନ୍ଧ୍ୟା ପରେ ସନ୍ଧ୍ୟାକୁ ଏମିତି ନାଶ କରିଦିବୁ, ବୁଢ଼ା ହେବୁ, ସେଇଠୁଁ ଶାନ୍ତି । ସମାପ୍ତି । ପ୍ରଶାନ୍ତି । ଆଃ !

କାର୍ତ୍ତିକବାବୁ ଆଖି ବୁଜି ନଥିଲେ । ଆଖି ବୁଜିଲେ ମଧ୍ୟ କିଛି ପ୍ରଭେଦ ହୋଇ ନ ଥାଆନ୍ତା । ରମ୍ମୁ ଆଖିରୁ ଉହାଡ଼ ହୋଇଗଲା, କିନ୍ତୁ ସେ ଜାଣି ପାରିଲେ ନାହିଁ । ଉପଲବ୍ଧିର "ଆଃ"ରେ ନାତିକୁ ନିଜକୁ, ଏବଂ ଅଭିଳ ସଂସାରଟାକୁ ଘୋଡ଼େଇ ଦେଲେ ।

ଘରେ ଯାଇଁ ପହଞ୍ଚିଲା ବେଳକୁ ରମ୍ମୁ ଆସିଗଲାଣି । କାର୍ତ୍ତିକବାବୁ ତା'ର ମୁହାଁମୁହିଁ ହେବାକୁ ଚାହିଁ ନଥିଲେ, କିଛି ପଚାରିବା ତ ଦୂରର କଥା । କାଳେ ସେ ହଡ଼ବଡ଼େଇ ଯିବ, ଧରା ପଡ଼ିଯିବାର ଲଜ୍ଜାରେ ମଉଳିଯିବ । କିନ୍ତୁ କିଏ ଜାଣିଥିଲା ସେ ତାଙ୍କୁ ପଛରୁ ଡାକି ଏମିତି ଗୋଟାଏ ପ୍ରଶ୍ନ ପଚାରିବ ?

"ଜେଜେ, ଆପଣଙ୍କ ପାଖରେ ହଣ୍ଡୁରାସର ଷ୍ଟାମ୍ପ୍ ଅଛିକି ? ସେଠିକାର ଷ୍ଟାମ୍ପ୍ କୁଆଡ଼େ ସବୁଠାରୁ ରଙ୍ଗୀନ୍ ?"

କାର୍ତ୍ତିକବାବୁ ନାତିର ମୁହଁକୁ ଅନେଇଲେ । ସରଳ ନିର୍ଦ୍ଦୋଷ । କିନ୍ତୁ ଢେଉମାନଙ୍କ ଦେହରେ ବାଣିଗଲା ଜଳ ଜଳ ହୋଇ । ସେମାନେ ଫେଁ ଫେଁ ହୋଇ ହସୁଛନ୍ତି ।

[ନାରଙ୍ଗୀ,ଗୌହାଟୀ—୭।୧୦।୭୬]



# ଇନ୍ଦିରା

ବଡ଼ ବିରକ୍ତିକର ଶବ୍ଦ । ଶ୍ରୁତିକଟୁ । ଅଶ୍ଳୀଳ ।

ଅନ୍ୟାୟ ।

ନିର୍ମମ !

ଅନ୍ୟାୟ !!

ଯୋଡ଼ାଏ ଫିର୍ଣ୍ଣିମିରା ଚିତ୍ରିତ ମଙ୍ଗଳ କଳସ ପାଖାପାଖି ଥୁଆ ହୋଇଥିଲା । ମନେ ହେବ ଯୁଗ୍ମ । କିନ୍ତୁ ଇନ୍ଦିରାଙ୍କୁ ଜଣାଥିଲା ଯେ ସେମାନେ ଭିନ୍ନ । ଗୋଟିକର ମୁହଁରେ ଢ଼ାଙ୍କୁଣି ଦିଆହୋଇଥିଲା । ତା'ପରେ ପାଣି ପଡୁଥିଲା କି ନାହିଁ କିଛି ହେବନାହିଁ; ସେଥିର ଶବ୍ଦ ନିଶବ୍ଦ । ଅନ୍ୟଟିର ମୁହଁ ଖୋଲା । ତା'ର ଉପରେ ପାଣି ପଡୁଛି ତ ପଡୁଛି···ଟୁପ୍ ଟୁପ୍ ଟୁପ୍ ନୁହେଁ, ଟୁବ୍ ଟୁବ୍ ଟୁବ୍··ଶୂନ୍ୟ ଗମ୍ଭୀରକୁ ଏକ୍‌ଦମ୍ ଭିତରକୁ ଗଳିଯାଉଛି, କାହିଁକିନା ସେ ନିରସ । ଏମିତି କାହିଁକି ହେବ ? ଯେଉଁ ଜଣକ ଉପରେ ପାଣି ପଡୁଥିବ ? ପଡ଼ି ଚାଲିଥିବ ? ତାଳୁ ନାହିଁ, ଭିତ ଦେଉ ନାହିଁ, ଖାଲି ଚିହ୍ନି ଚିହ୍ନି ଟୁବ୍ । ହେଲା ନା ଆଉ ଦରକାର କିଛି ପୁଣି ଗୋଟାଏ ଟୁବ୍, ହାଜତରେ ଥିବା ଆସାମୀକୁ ଖୁଣ୍ଟା ମାରିଲା ପରି, ଛିଗୁଳେଇଲା ପରି···

ଇନ୍ଦିରାଙ୍କର ମନ ହେଲା ଉଠିଯାଇ କବାଟ ଖୋଲି ଦେଇ ଅଗଣାକୁ ଯିବେ, ଓ କଳସଟିକୁ ପାଣି ମୁହଁରୁ ଘୁଞ୍ଚେଇ ଆଣିବେ । ହୁଏତ ମୁଁ ଟିକିଏ ତିନ୍ତି ଯିବ । ସହଜେ ଦେହଟା ଭଲ ଲାଗୁନାହିଁ, ଥଣ୍ଡା ଲାଗି ଜର ହୋଇପାରେ । କିନ୍ତୁ ମୁଁ ସେଥିକୁ ପରୁଆ କରିନାହିଁ । ମୁଁ ସବୁଦିନେ ଆପଣା ସ୍ୱାର୍ଥ ଭୁଲିଯାଇ ଅନ୍ୟର ଦୁଃଖକଷ୍ଟ ଦୂର କରିବାକୁ ଚାହିଁଛି ।

ଚେଷ୍ଟା କରନ୍ତି । କିନ୍ତୁ କେହି ତା'ର ମୂଲ୍ୟ ଦେଇ ନାହାନ୍ତି । କଥା ପଦକରେ ମଧ୍ୟ ସ୍ୱୀକାର କରିନାହାନ୍ତି । ସତେକି ଏମିତି କରିବା କଥା, ଏଇ ପରିସ୍ଥିତିରେ ଯେତେକ ରମା ଦାମା ଶାମା (ଯେତକ ଭଉଣୀ ଭାଇ ବନ୍ଧୁ ବାନ୍ଧବ) ବି' ସେଇଆ କରିଥାଆନ୍ତେ ! ଅନ୍ୟାୟ ! ଆଜି ନୁହେଁ, ସବୁଦିନେ । ପିଲାଦିନୁ ଜୀବନଟାସାକ । ଇନ୍ଦିରାକୁ କେହି ତା'ର ପାଉଣାର କାଣିଚାଏ ଦେଇନାହାନ୍ତି, କହି ନାହାନ୍ତି ଯେ ସେ ଏତେ କରୁଛି ଅନ୍ୟମାନଙ୍କ ପାଇଁ ।

ଏତେ ସୁନ୍ଦର ସକାଳ୍‌ଟାରେ ରାଗ ରୁଷା ଶୋଭା ପାଏନାହିଁ ବୋଲି ଇନ୍ଦିରାଙ୍କୁ ତିଆରିବା ଅନୁଚିତ । ମନେ ରଖିବାକୁ ହେବ ଯେ ସେ ତାଙ୍କ ନିଜ ଘରେ (ସ୍ୱାମୀ ଘରେ) ନାହାନ୍ତି, ଅତି ନିଜ ଘରେ (ବାପ ଘରେ) ଆସି ଅଛନ୍ତି କେତେଦିନ ହେଲା । ଏଠି ବାରି ଆଡ଼େ ଭୂତ ଅଛି । ଆଣୁଆ ଗୋପାଳ ମାଟି କଣ୍ଡେଇ ମଧ୍ୟ ମହଜୁଦ୍ ଅଛି, ଯଦିଓ ତା'ର ସର୍ବାଙ୍ଗ ଖଣ୍ଡି ଆଖାବିରା । ଆଖିରେ ପଡ଼ିଲେ ଇନ୍ଦିରା ମନେ ମନେ କହି ହୁଅନ୍ତି ଯେ ମୋର ବୋଲି ଅଛି । ରମା, ପଦ୍ମାଙ୍କ ଦାମିକା କଣ୍ଢେଇମାନ କେବେଠୁଁ ଧୂଳିସାତ୍ ହୋଇଗଲାଣି । ତା'ର ଅର୍ଥ ନୁହେଁ ଯେ ଇନ୍ଦିରା କୃପଣ, ଧୂଆ ଜିନାଠିକ ସାଇତି ରଖେ, ଆଉ ଅନ୍ୟମାନେ ଉଦାର ବୋଲି ଯେତିକି ଜିନିଷ ବାଣ୍ଟି ଦିଅନ୍ତି, ଭାଙ୍ଗି ଦିଅନ୍ତି, ଉଡ଼େଇ ବୁଡ଼େଇ ଦେଇ ଖୁଦନ୍ତି ଆମର ଆହୁରି ଦରକାର । ହେଲେ ସେଇମାନେ ପାଆନ୍ତି, ମୁଁ ମାଗିଲରୁ ମୁଁ ହୁଏ ବାଦଦାଇ, କଳକାଣ୍ଡୋଇ । ମୋର ଦୋଷ ଭିତରେ ମୁଁ ଜିନିଷପତ୍ରର ଯତ୍ନନିଏ । ସୁନ୍ତି ଏଠି ସେହି ପିଜୁଳି ଗଛ ଅଛି, ଦେଖିଆ ତଥାପି ଫଳୁଛି । ରମାଅପା ତା' ଉପରକୁ ଚଢ଼ିଯିବ ମାଙ୍କଡ଼ଙ୍କ ପରି । ଫ୍ରକ୍ ଟେକି ହୋଇ ଯାଉଥିବ, ଫଡ଼ା ଫଡ଼ା ଜଙ୍ଘ ଦେଖାଯାଉଥିବ, ଫଳଗୁଡ଼ାକ ଦାନ୍ତେଇ ଫିଙ୍ଗି ଦେଉଥିବ । କିନ୍ତୁ ମୁଁ ତା'ଠାରୁ ବର୍ଷେ ସାନ ହେଲେ ମଧ୍ୟ ଗଛ ଚଢ଼ିବାକୁ ନାରାଜ ବୋଲି କୁହାଯାଏ, କାହିଁକିନା ମୁଁ ଲେସେମା । ବାପା କହନ୍ତି ଲେସେମା, ମାଆ କୁହେ ଡରକୁଳୀ । କହିଲ ନାହିଁ ଯେ ସେ ଗୋଟି ବୋଲି ଜଙ୍ଘ ଦେଖେଇ ପାରିଲା, ଆଉ ମୁଁ କାଳୀ ବୋଲି···? ଲଜ୍ଜା ନାରୀର ଭୂଷଣ ବୋଲି କଏ କହୁଛି ମ ? ଆମ ଘରେ ସେ କଥା ନାହିଁ ।

ଏବଂ ଏଠି ମାନ୍ଧାତା ଅମଳର ଆରାମ ଚଉକି ଅଛି, ଯେଉଁଥିରେ ବାପା ଆଖି ବୁଜି ପଡ଼ି ରହନ୍ତି, ଆଉ ଅଲିଅଳି ପଦ୍ମା ନାଥିକିନି ବସିପଡ଼େ ତାଙ୍କ ଉପରେ । ସେ ତାକୁ ମିଚ୍ଛିମିଚ୍ଛିକା ରାଗ ଦେଖେଇ ଦୁଷ୍ଟ ବୋଲି କୁହନ୍ତି, କିନ୍ତୁ ଗେହ୍ଲା କରନ୍ତି । ଅଥଚ ମୁଁ ପାଖକୁ ଯାଇ କିଛି ଗୋଟାଏ ପ୍ରଶ୍ନ ପଚାରିଲେ 'ଓଃ' ବୋଲି ପାଟିକରି ଉଠନ୍ତି । ସେଇଠୁଁ ମାଆ କୋଉଠି ଥାଏ ଧାଇଁ ଆସେ, କୁହେ—ଏଡ଼େ ବଡ଼ଟିଏ ହେଲୁଣି, ତୋର ଟିକିଏ ବୁଦ୍ଧିସୁଦ୍ଧି ନାହିଁ ? ବାପାଙ୍କୁ ମୁହୂର୍ତ୍ତେ ବିଶ୍ରାମ ଦେବାକୁ ନାହୁଁ ? ମୁଁ କେଡ଼େ ବଡ଼ ନା ମୋତେ ଏଗାର, ପଦ୍ମାକୁ ନଅ ! ଏମିତି କେତେ ସନ୍ଧି ଏଠି, ଦେଖିଲା କ୍ଷଣି ସ୍ମୃତିର ହାବୁକାଏ ପିଠି ହୋଇଯାଏ । ଅବଶ୍ୟ ଇନ୍ଦ୍ର ସେଥିରେ ବ୍ୟସ୍ତବ୍ୟସ୍ତ ହେବାକୁ ଚାହାନ୍ତି ନାହିଁ, କହନ୍ତି କୋଉ ପିଲାଳିଆ କଥାକୁ ଗଣ୍ଠି କରି ଧରିବା ମୋର ଅଭ୍ୟାସ ନୁହେଁ । ଏବଂ ରୁଗ୍ଣା ମାଆର ଡାକ ଶୁଣିଲା କ୍ଷଣି ଧାଇଁ ଯାଆନ୍ତି ତା'ର ସେବା କରିବା ପାଇଁ । କିନ୍ତୁ ସ୍ମୃତି-ଭୂତଗୁଡ଼ା ବାଡ଼ିଆଡ଼େ ଛପିକରି ଥାଆନ୍ତି କି କିଅଣ, ରାତିରେ ଜମି ଯାଆନ୍ତି ତା'ମନ ଭିତରେ । ସେଇଲାଗି ବର୍ତ୍ତମାନ ବର୍ଷା ଶେଷ ସକାଳରେ ଭିଜା ଗଙ୍ଗଶିଉଳି କେମିତି ଓହ୍ଲେଇ ଆସୁଛି ଓଦାମାଟିର କୋଳକୁ, ମୋ ମରଣଟି କେଡ଼େ ମଧୁରିଆ ବୋଲି ଦେଖେଇ ହେଉଛି, ଏଣେ ବୁଢ଼ା କଦଳୀପତ୍ର କେମିତି ଠୋକା ସାଜୁଛି, ଶାଗୁଆ ଚକଣିଆ ହୋଇ ବୁନ୍ଦାଏ ପାଣିକୁ ନେଇ ବିଳସୁଛି, ସ୍ମୃତିର ବାରିବଗିଚାରେ କେତେ ରସ, କେତେ ରଙ୍ଗ, ପୁଣି କେତେ ନାଚ୍‌କୁଦ, କିଯାକଲେ ଏଇକ୍ଷଣି ବି' ଗୋଟିଏ କଅଁଳ ବାଛୁରି କୁଦା ମାରୁଛି, କିଜଳପାଖି ଝିଙ୍କିପୋକମାନଙ୍କୁ ଗୋଡ଼ଉଛି···ଇତ୍ୟାଦି ଦୃଶ୍ୟ ତା' ଆଖିରେ ପଡ଼ୁନାହିଁ । କେବଳ ସେଇ ସ୍ଥାବର କଳସ ଦୁଇଟି, ପାଖାପାଖି, ଏକା ଭଳି, ହେଲେ ଗୋଟିକର କିଛି ହେଉ ନାହିଁ, ଆରଟି ସହୁଛି, ଅନ୍ୟାୟର ଯନ୍ତ୍ରଣା, ଅବିରତ ଠୁକ୍ ଠୁକ୍ ଠକ୍···

ଇନ୍ଦ୍ର ନିରେଖି ଦେଖିଲାରୁ ଆବିଷ୍କାର କଲେ ଯେ ଯେଉଁ କଳସ ଉପରେ ଏଭଳି ଅତ୍ୟାଚାର କରାଯାଉଛି, ସେ ତାଙ୍କର ନୁହେଁ । ତାଙ୍କ ବାହାଘର ବେଳକୁ ଦୋସର କପମର ଚନ୍ଦ୍ର ଅଙ୍କା ହୋଇଥିଲା, ସେଥିରେ

ମୟୂର ଥିଲା, ଏଥିରେ ମୟୂର ନାହିଁ । ଆଉ କଳସଟି କିନ୍ତୁ ପଦ୍ମାର । ମୋର ଠିକ୍ ମନେ ଅଛି ଯେ ତା' ନାଆଁ ପଦ୍ମା ବୋଲି ନାଲୁଅପା ମୋଟା ମୋଟା ପଦ୍ମ ଆଙ୍କି ଦେଇଥିଲେ ସେଥିରେ··· ଗୁଡ଼, ସୋଉଟା ଯାହାର ହେଉ କିଛି ଯାଏ ଆସେ ନାହିଁ । କଥା ହେଉଛି ଯେ ଏଇଆକୁ କହନ୍ତି ପାତର ଅନ୍ତର । ଯାହା ଆମ ଘରେ ହୋଇ ଆସିଛି ସବୁଦିନେ···

କେତେବେଳେ ତାଙ୍କର ଖିଆଲ ହେଲା ଯେ ଏଇ ଘରେ ଖାଲି ସେ ଓ ଭଉଣୀ ରମା ଅପା, ପଦ୍ମା ବାହା ହୋଇନାହାନ୍ତି । ଦାଦିଝିଅ ଭଉଣୀ ମୁକ୍ତି ବି' ବାହା ହୋଇଛି, ଆଶ୍ରିତା ଘନବୋଉ ଖୁଡ଼ୀଙ୍କ ଝିଅ ସାବି ବାହା ହୋଇଛି । ପ୍ରତି ବରକନ୍ୟାଙ୍କ ପାଇଁ ଘର ଆଗରେ ଯୋଡ଼ିଏ କଦଳୀଗଛ ଓ ମଙ୍ଗଳ କଳସର ନିମନ୍ତ୍ରଣ ଗଡ଼ା ହୋଇଥିବ । ସେମାନଙ୍କ ଭିତରୁ କେବଳ ଏଇ ଦିଓଟି ବଞ୍ଚିଛନ୍ତି, ବାକିମାନେ କୁଆଡ଼େ ଭାଙ୍ଗିରୁଜି ମରି ହଜି ଗଲେଣି ।

ହଠାତ୍ ତାଙ୍କର ହସିବାକୁ ଇଚ୍ଛା ହେଲା । ବାହାଘର ମାନେହିଁ ଶଙ୍ଖ, ହୁଳହୁଳି, ମଙ୍ଗଳ କଳସ । ସତେ ଯେମିତି ପ୍ରତି ବାହାଘର ଏକା ଭଳି ସୁନ୍ଦର, ମଙ୍ଗଳମୟ, ତା'ର ଅତୀତରେ ଯାହା ଥାଉ କି ଭବିଷ୍ୟତରେ ଯାହା ହେଉ । ସେଇଠୁ ? ମଙ୍ଗଳ ଘଡ଼ା, କାମ ସରିଲେ ଗଡ଼ଗଡ଼ା । କେଉଁ ଘଡ଼ାର ହେରେ-ହେରେଇନ୍ କୁଆଡ଼େ ଗଲେ କିଏ ପଚାରୁଛି ? ସମାଜର ଏଇ ବିଚିତ୍ର ବିଧାନ ସାଙ୍ଗରେ ଆପଣା ଅଭିମାନକୁ ଯୋଡ଼ିଦେଇ ତାଙ୍କୁ ଏମିତି ହସ ଲାଗିଲା ଯେ ମନହେଲା ହ୍ୟାପି ଯୋଡ଼ାଏଯାକ କଳସକୁ ଗୋଇଠା ମାରି ଫଟେଇ ଦିଅନ୍ତେ । ଯେତିକି ଭଣ୍ଡ ଉପଚାର ! ଚରିତ ଜୋକର୍ ।

ପୃଥିବୀର ଯେତିକି ରମା ଅପା, ପଦ୍ମା, ଇନ୍ଦିରା, ସାବି ମୁକ୍ତି ଠୁସି··· ତମ ପ୍ରତ୍ୟେକର ଜୀବନ ତମ ନିଜର, ଭିନ୍ନ, ତା'କୁ କୋଉ ମଙ୍ଗଳ କଳସ ଧନ୍ୟ କରିପାରିବ ନାହିଁ । ବାହାଘର ମାନେ ମୋଡ଼ ଭାଙ୍ଗିବା କଥା । ହୁଏତ କାଦୁଅରୁ ମରୁଭୂମି । କିମ୍ବା ଶସ୍ୟଶ୍ୟାମଳା ବସୁନ୍ଧରା । କିଏ କହିବ ? ହୁଏତ ଏଇ ଇନ୍ଦିରା ଯେ ସବୁଦିନେ ସହି ଆସିଛି, ସେଇ ବି' ଦିନେ ରାଣୀ ହୋଇ ବସିବ । ସେତେବେଳେ କୋଉ ଅନ୍ୟାୟ ତାକୁ ଛୁଇଁ ପାରିବ ନାହିଁ ।

ଲକ୍ଷ୍ମୀ ପଦ୍ମାଳୟା ପଦ୍ମା କମଳା ଶ୍ରୀହରିପ୍ରିୟା, ଇନ୍ଦିରା ଲୋକମାତା ମା କ୍ଷୀରାବ୍ଧିତନୟା ରମା···ବାପା ତନୋଟିଯାକ ଝିଅଙ୍କୁ ଲକ୍ଷ୍ମୀକରି ଥୋଇ ଦେଲେ । କିନ୍ତୁ କିଏ ଜାଣିଛି କୋଉ ଜଣକ ସତେ ମାଆ ଠାକୁରାଣୀଙ୍କ ପରି ହୋଇପାରିବ ?

କିଛି ନ ହେଲେ ଧଳା ପେଚାଟିଏ ହେବ । ଇନ୍ଦିରା ଝାଡ଼ଝୁଡ଼ ହୋଇ ଉଠି ପଡ଼ିଲେ । ବିଷାଦପର୍ବକୁ କୌଣସିମତେ କାଟି ଦେଲାପରି । କିନ୍ତୁ ସକାଳକୁ ଆବାହନ କଲେ ବୋଲି ଠିକ୍ କହି ହେବନାହିଁ । ବରଂ କହିଲେ ହେବ ଯେ ଏଇ ବାପଘର ନାମକୁ ସ୍ତିତିକୁ, ଅତୀତକୁ, ସାହସର ସହିତ ଉତାରି ଦେବାକୁ ଚାହିଁଲେ । ହାସ୍ୟାମ୍ଳିଦ ମଙ୍ଗଳଘଡ଼ା ସହିତରେ ଯେତେକ ଘର ଅଗଣା, ପିଜୁଳି ଗଛ, ବଉଳ ଗଛ, ଗେଣ୍ଡୁ, ବଣ ତୁଳସୀ, ବଡ଼, ଆମ୍ବର, ଠଣା, ଏରୁଣ୍ଡି ଇତ୍ୟାଦିର ସଂସାରକୁ ବିଦାୟ ଜଣାଇଲେ । ବିଦାୟର ବାଣୀ ହେଲା ଏଇ ଯେ, କାହାରି ପ୍ରତି ମୋର ଅଭିଯୋଗ ନାହିଁ । କିନ୍ତୁ ସମ୍ପର୍କ ମଧ୍ୟ ନାହିଁ, କାହିଁକିନା ଏଣିକି ତମେମାନେ ମୋର ଭଲ କି ମନ୍ଦ କିଛି କରିପାରିବ ନାହିଁ । ତମ ବଡ଼ପଣ ତମ ପାଖରେ, ଧନ୍ୟବାଦ ।

ମୁଁ ଇନ୍ଦିରା ନାଏକ ନୁହେଁ, ମିସେସ୍ ଇନ୍ଦିରା ମହାପାତ୍ର ।

ମୁଁ ଅଭିଆଡ଼ି ମଝିଆଁ ଝିଅ ନୁହେଁ, ଯାହାର ସାନଭଉଣୀ ଆଗରୁ ବାହା ହୋଇ ଯାଇଛି କାହିଁକିନା ସେ ବେଶି ସୁନ୍ଦର । ଯାହାର ବଡ଼ ଭଉଣୀ କେବେଠୁଁ ଲଭ୍ ମ୍ୟାରେଜ୍ କରିଛି, କାହିଁକିନା ସେ ଖାଲି ସୁନ୍ଦର ନୁହେଁ, ଗୋଷି, ଚଞ୍ଚଳୀ । ମୋତେ ଦେଖି କାହାରି ଆହା ଚୁ'ଚୁ' କରିବା ଦରକାର ନାହିଁ ।

ମୁଁ ଦରପାଠୋଇ ନୁହେଁ, ଅଫିସରଆଣୀ, ଗ୍ରେଟମୋଟ ମେମ୍-ସାହେବ ।

ମୁଁ ମାଛ ତରକାରି ଭଲ ରାନ୍ଧି ନ ପାରିଲେ ନାହିଁ, ମୁଁ କେକ୍ କରି ଜାଣିଛି । ତା'ଛଡ଼ା ସେ ମୋତେ ଭଲ ପାଆନ୍ତି···

ଭଲ ପାଆନ୍ତି ନା ଲଭ୍ କରନ୍ତି ? ଭାବିଲାବେଳକୁ ଲଜ୍ଜା ଲାଗେଇ ଗଲେ । ମନେ ପଡ଼ିଲା ସେ ଥରେ ବଡ଼େଇ ଦେଇଥିଲେ ଯେ ଇଂରେଜୀରେ ଲଭ୍-ମେକିଙ୍ଗ୍‌ର ମାନେ ହେଉଛି···ଧ୍ୟାତ୍ତ ! ସେଇଠୁଁ ସେ କେକ୍ କଥା ଭାବିଲେ । ଯେମିତିକି ବାପଘରେ ଅଭଦ୍ର ଭାବନାକୁ ପ୍ରଶ୍ରୟ ଦେବାର ନୁହେଁ । ଆଜି ମୁଁ ମାଆକୁ କେକ୍ କରି ଖୁଆଇବି । ରମାଅପା କେକ୍ ନାଆଁରେ ଯାହା କରୁଥିଲା ନା—ପୋଡ଼ପିଠା ! ସେ କେମିତି ଜାଣିବ ? କୋଉ ବେକିଙ୍ଗ୍ କ୍ଲାସ୍ ନେଇଛି ନା ସାହେବୀ ଘରୁ ଶିଖିଛି ? ମୁଁ ମାଆପାଇଁ ଗୋଟାଏ ଚକୋଲେଟ୍ କେକ୍ କରିବି, ଆଇସିଙ୍ଗ୍ ସୁଗର୍ ଦେଇ ଫୁଲ ଆଙ୍କିବି, ହୁଏତ ଟିକିଏ ସମୟ ଲାଗିପାରେ । କିନ୍ତୁ ମୋର ଏଠି କୋଉ କାମଟା ଅଛି ?

ଥାଇ ଥାଇ ମାଆ ଅଛି, ଆଉ ଏଇ ଘରଖଣ୍ଡିକ । ମୋତେ ବାହାଦେବାର କେଇଟା ମାସ ଭିତରେ ବାପା ଚାଲିଗଲେ । ମୁଁ ଗୋଟାଏ ବୋଝ ହୋଇଥିଲି କିନା, ମୋତେ ଖଲାସ କରିଦେଇ ଆପଣା ରାସ୍ତା ଧରିଲେ । ଭଉଣୀମାନେ ତାଙ୍କ ଶାଶୁଘରେ । ବଡ଼ ଭାଇ ବମ୍ବେରେ ନାନା ଧନ୍ଦାରେ ପଶି ଛନ୍ତି, ଘରକୁ ଆସନ୍ତି ନାହିଁ । ଏଠି ଖାଲି ଅଛି ଆମ ସାତସାନ କାଳୁ, ଅପରିଆଣି । ମାଆର କୋଡ଼ପୋଛା ମୁଁ ଦି'ଦିନ ପାଇଁ ଆସିଛି କୁଣିଆ ହୋଇ । କାହା ସାଙ୍ଗରେ ମୋର କ'ଣ ଅଛି ? ମାଆ ବହୁମୂତ୍ର ରୋଗରେ ଭୋଗୁଛି, ତାକୁ ଟିକିଏ ଭଲମନ୍ଦ କରି ଖୁଆଇବି, ଦୁଃଖସୁଖ ହେବି, ମୁଁ ତା'ର ଗେହ୍ଲାଝିଅ ନ ହେଲେ ନାହିଁ······

କିନ୍ତୁ ମାଆ କେକ୍‌ର ମର୍ଯ୍ୟାଦା ବୁଝିବ ନାହିଁ । ତା'ଛଡ଼ା ଜରୁଆ ପାଟିକୁ ସେମିତିକା ଜିନିଷ ଭଲ ଲାଗିବ ନାହିଁ ତା'କୁ । ବରଂ ତା' ପାଇଁ ବଡ଼ ଟମାଟୋ, ଚଟଣି କି ଟିକିଏ ଚାହାପାଣି···

ଆଶ୍ଚର୍ଯ୍ୟର ବିଷୟ ଯେ ମୁହୂର୍ତ୍ତିକ ଆଗରୁ ଅଜ୍ଞାତକୁ ମୋକଚାମୋକଚି କରି ଫିଙ୍ଗି ଦେଇଥିଲେ ମଧ୍ୟ ତାଙ୍କ ଆଖିରେ ଟୁହୁଁ ଟୁହୁଁ ଲୁହ ଭରିଗଲା । କାରଣ ତାଙ୍କର ଆଶଙ୍କା ହେଲା ଯେ, ମାଆର ପାଟିରୁ ବାହାରି ପଡ଼ିବ, ନଷ୍ଟସ୍ୱ ବାହାରିବ, ମୋତେ ବାନ୍ଧିଲେ ବାନ୍ଧୁ,—ଦକ୍ଷିଣ ଜିନିଷ ରାନ୍ଧିବା

ପାଇଁ ପଦ (ପଦ୍ମା)କୁ ଡାକ ଦେଇଥିବ । ତା' ହାତ ଆଉ କେହି ପାଇ ନାହାନ୍ତି, ନୁହେଁ ? ସେ ଗଳ୍ପ ଦିନୁ...

ଏହିପରି ଭାବରେ ଛବିଶ ବର୍ଷ ବୟସର ଇନ୍ଦିରା ବାହାଘର ପରେ ପ୍ରଥମ ଥର ବାପଘରକୁ ଆସି ଦ୍ୱିତୀୟ ଦିନ ସକାଳର ମୁକାବିଲା କଲେ । ଦିନ ବଡ଼ିଲାରୁ ଯଥାକ୍ରମେ ତାଙ୍କର ଲଜ୍ଜା ଶୁଖି ଯାଇଥିଲା । ଏବଂ ସେ ମାଆଙ୍କ ପାଇଁ କେକ୍ ନୁହେଁ କି ଗୁରୁପାଣି ନୁହେଁ, ଗୋଟାଏ ସାଦା ସନ୍ତୁଳା ରାନ୍ଧିଲେ, କାହିଁକି ସେ ନିଜେ ବୁଝିପାରିଲେ ନାହିଁ । ତେବେ ମାଆ ଖୁସିହୋଇ ଖାଇବାର ଦେଖି ସେ ଭାବିଲେ ଯେ ହୁଏତ ସେ ଗୁରୁପାଣି ଇତ୍ୟାଦି ରାନ୍ଧିପାରି ଥାଆନ୍ତେ ଓ ମାଆ ତା'ର ପ୍ରଶଂସା କରିଥାଆନ୍ତି । ଯାହାହେଉ ଭାଇ ଲେଉଟିଲା ବେଳକୁ ତାଙ୍କ ମନ ଏକାଧାରରେ ଶାନ୍ତ ଓ ଉଦାସ ଥିଲା ବୋଲି କହିବାକୁ ହେବ । ସେଇ ସମୟରେ କଲେଜ ପଢ଼ୁଆ କାଲୁ କୋଉଠି ଥିଲା ଅଗଣାର ସବୁ ଭିତରକୁ ପଶିଆସି ପାଟିଟାଏ କଲା—

"ଜାଣିଛୁ ମାଆ ଜାଣିଛୁ ? ଆମ ଇନ୍ଦୁ ଅପା ପ୍ରଧାନମନ୍ତ୍ରୀ ହୋଇଗଲା ! ମୁଁ ଏଇକ୍ଷଣି ଶୁଣିକରି ଆସିଲି ପରା ! ଇନ୍ଦୁଅପା ଫିଷ୍ଟ ଦେବ ଆମକୁ... ଆକୁଳର ବଡ଼ ରସଗୋଲା, ନାଇଁ ନାଇଁ, ଗୋପୀ ଦୋକାନର ମଟନ୍ ଚପ୍..."

ଯଥାକ୍ରମେ ବୁଝାଗଲା ଯେ ଆଜି କଂଗ୍ରେସ ପାର୍ଟି ଇନ୍ଦିରାଗାନ୍ଧୀଙ୍କୁ ଦଳର ନେତ୍ରୀ ରୂପେ ବାଛିଛନ୍ତି । ଲାଲ୍‌ବାହାଦୂର ଶାସ୍ତ୍ରୀଙ୍କ ପରେ ତାଙ୍କୁହିଁ ବଛାଗଲା, ମୋରାରଜୀ ଦେଶାଇ ହାରିଗଲେ । ତେଣୁ ପହିଲି ବାର ଦେଶର ପ୍ରଧାନମନ୍ତ୍ରୀ ହେବେ ଜଣେ ନାରୀ, ଶ୍ରୀମତୀ ଇନ୍ଦିରା ଗାନ୍ଧୀ, ଇନ୍ଦିରା ପ୍ରିୟଦର୍ଶିନୀ...

କହିବା ବାହୁଲ୍ୟ ଯେ କାଲୁ ଇନ୍ଦୁଅପାକୁ ଚିଡ଼େଇଲା । ମଧୁର ପରିହାସ । ମନ୍ଦ ଉଦ୍ଦେଶ୍ୟ ଥିଲା ସେଥିରେ । ଅପରପକ୍ଷେ କେହି ମନେକରି ନ ଥିବ ଯେ ସେ ଇନ୍ଦୁଅପାକୁ ପ୍ରକୃତରେ ବଧେଇ ଦେଲା, ସତେକି ଇନ୍ଦୁଅପା ଇନ୍ଦିରାଗାନ୍ଧୀଙ୍କ ଆତ୍ମିକ ଭଉଣୀ ବା ସେମିତି କିଛି । ଇନ୍ଦିରାଙ୍କ

ଛଡ଼ା କାଳୁର ଘୋଷଣା ଯେଉଁମାନେ ଶୁଣିଲେ, ଯଥା ମାଆ ସୁମଙ୍ଗଳା ଦେବୀ, ଆଗନ୍ତୁକା ବାସନ୍ତୀଦେବୀ ବନାମ ବସିଖୁଣ୍ଟୀ, ସଦ୍ୟ କ୍ଷୀର ଦୁହାଁଆଣି ପହୁଞ୍ଚିଥିବା ନବା ଗଉଡ, ମାଆଙ୍କ ହାତବାରଣି ଗୃହକର୍ମୀଟୋକୀ ଚମ୍ପୀ, ସମସ୍ତଙ୍କ ମୁହଁରେ କ୍ଷଣକେ ବିସ୍ମୟ ଓ ଆନନ୍ଦର ଲକ୍ଷଣ ଦେଖାଗଲା,—କିଏ କେତେଦୂର ଏବଂ କ'ଣ ବୁଝିଲା ଭଗବାନ ଜାଣନ୍ତି । ଏବଂ ପ୍ରତ୍ୟେକେ ପରିହାସକୁ ଉପଭୋଗ କଲାପରି ସ୍ମିତହାସଟିଏ ଇନ୍ଦିରାଙ୍କ ଆଡ଼କୁ ବଢ଼େଇ ଦେଲେ । ଜଣାଥିଲା ଯେ ଇନ୍ଦିରା ମଧ୍ୟ ପାଲଟା ସ୍ମିତହାସ ଦେବେ, ପରିହାସକୁ ସତ ମଣିବାର ଗୃହିଣୀ ଦେଖାଇବେ, ଓ ତତ୍‌କ୍ଷଣାତ୍ ଲୋକ ପଠେଇବେ ରସଗୋଲା କିଣି ଆଣିବା ପାଇଁ । ତାହାହିଁ ହେଲା । କିନ୍ତୁ ସେଥିପୂର୍ବରୁ କ୍ଷଣକ ପାଇଁ, ମାତ୍ର କ୍ଷଣକ ପାଇଁ ତାଙ୍କ ପୁରୁଳା ଶ୍ୟାମଳ ମୁହଁ ଏମିତ ଝଲ ଉଠିଲା କାହିଁକି ? ମନେହେବ ଯେ ଶୁଭସନ୍ଦେଶ ବସ୍ତୁତଃ ତାଙ୍କର ପାଇଁ, ତାଙ୍କର ମୁଣ୍ଡରେ ସୁନାକଳସ ଢଳା ହେଲା !

ସେଇ ନିମେଷର ଉଜ୍ଜ୍ୱଳନକୁ କେବଳ ଜଣେ ଲକ୍ଷ୍ୟ କରି ପାରିଲା । କାଳୁ ଇନ୍ଦିରାଙ୍କ ଠାରୁ ପ୍ରାୟ ଆଠବର୍ଷ ସାନ । ଅନ୍ୟ ଭାଇଭଉଣୀଙ୍କ ସାଙ୍ଗରେ ସେ ମଧ୍ୟ ଧରି ନେଇଥିଲା ଯେ ଆମ ଇନ୍ଦଅପାଟି ହୁଣ୍ଡୀ । ନରମ, ସରଳଆ, ନାକକାନ୍ଦୁରୀ, ଏବଂ ହୁଣ୍ଡୀ । କିନ୍ତୁ ତା' ବୋଲି···?

କାଳୁର ଚେତନାରେ ଯେଉଁ ଉଦ୍ଭାସିତା ଇନ୍ଦିଅପାର ଛବି କ୍ଷଣକ ପାଇଁ ଆସି ଚାଲିଗଲା, ତା'କୁ ସେ ଠଉରେଇ ପାରିଲା ନାହିଁ, କିନ୍ତୁ ଦେଖି ମୁଗ୍ଧ ହେଲା । ସେଥିରେ ଭାବପ୍ରବଣତା କେତେ ଅବା ନିର୍ବୋଧତା କେତେ ତଉଲେଇ କରି ଭାବିବାର ଅଭିଜ୍ଞତା ନ ଥିଲା ତା'ର । ସେ ଖାଲି ତା'ର ବିରଳ ସୁନ୍ଦର ଲକ୍ଷଣ ଗୁଡ଼ିକୁ ଦେଖିଲା, ଚିହ୍ନିଲା । ସାବନା ମୁହଁ (ମୁଁ ତା'ଠୁଁ ସେମିତ କିଛି ବେଶି କଳା ନୁହେଁ, ସହିଓ ମୋ ନାଆଁ କାଳୁ ଦିଆ ହୋଇଛି) ପୁଣି ଏଡ଼େ ତୋଫା ଦେଖାଯାଇ ପାରେ ? ଆଖିତଳେ କଳାଦାଗ ଥିଲେ ଥାଉ, ତା'ର ଗୃହିଣୀକୁ ମାନନା ବୋଲି କିଏ କହିଲା ? ତା'ଛଡ଼ା ସେ ଯେମିତ ହସହସ ହେଲା ହସିବା ଆଗରୁ···କାଳୁର ବୁଦ୍ଧିବୃତ୍ତି ତା'କୁ କହି ପାରିଲା ନାହିଁ, ବୁଝି ପାରିଲା ନାହିଁ ଯେ ସେଉଟି ଅଲଭ୍ୟ ଲଭର ପ୍ରସାଦ, ଆକାଶରୁ ଖସେ, ଓଠରେ ବସିବା ଆଗରୁ

ସର୍ବାଙ୍ଗରେ ଚହଟିଯାଏ । ସେ କେବଳ ଦେଖିଲା, ଏବଂ ଶୁଣିଲା ଆଉ ଥିକଏ ଦେଖି ଥାଆନ୍ତି କ—। ବର୍ଷିଙ୍କ ବଦଳେଁ କଳା ବୋଲି ମଣ୍ଟିଆଣୀ ଅପା ପ୍ରତି କଣ୍ଟିତ୍ ଦୁର୍ବଳତା ହୃଏତ ରହି ଆସିଛି, କିନ୍ତୁ ଆଜ ତା'ର ମନରେ ଏକ ବଶିଷ୍ଟ ଭାବ ଜାଗି ଉଠିଲା । ଦୟା ଓ ଭଲପାଇବା ମିଶାମିଶି । ସେ ପ୍ରକୃତ ପକ୍ଷେ ସେ ଇନ୍ଦିଅପାର ବଡ଼ ଭାଇ । ମୁଁ ଦେଖିଛି, ଇନ୍ଦିଅପା ଖାଲି ମୋର ପାଖରେ ଧରା ପଡ଼ିଯାଇଛି । ମୋର ହୃଣ୍ଡୀ ଅପାଟି !···

ତେଣୁ କାଲୁର ପଛେ ପଛେ ତା'ର ସାଙ୍ଗ ଜଗତ ବ' ଆସି ପହଞ୍ଚିଯାଇ ଯେଉଁ ପ୍ରତିକୂଳ ବାର୍ତ୍ତା ଶୁଣାଇଲା, ଯେ ଇନ୍ଦିରାଗାନ୍ଧୀ ନିଜ ଗୁଣରେ ପ୍ରଧାନମନ୍ତ୍ରୀ ହୋଇ ନାହାନ୍ତି, ବାପା କହୁଥିଲେ ସେମାନେ ତାଙ୍କୁ ସଖୀ କଣ୍ଢେଇ ପରି ବସେଇଛନ୍ତି ଗାଦିରେ, ବେଳ ଉଣ୍ଡି ନକାଳି ଦେବେ, ଇତ୍ୟାଦି । କାଲୁ ତା'ର କୁହାଳିଆ ପଣକୁ ଆଦୌ ପସନ୍ଦ କରିପାରିଲା ନାହିଁ । "ତୁ ଭାରି ପଣ୍ଡିତ ?" "ମଉସା ତୋତେ'ଇ କହୁଥିଲେ ବସି ?" ଏଇଭଳି ଟିପ୍ପଣୀ ଦେଇ ତା'କୁ ଦବେଇ ଦେବାକୁ ବସିଲା । ଇନ୍ଦି ଅପାର ମୁହଁକୁ କଣେଇ କଣେଇ ଗୁହିଁଲା । ଆଶ୍ୱସ୍ତ ହେଲା ଯେ ଇନ୍ଦିଅପାର ମୁହଁ ଶୁଖିଯାଇ ନାହିଁ । ଏବଂ ସେ ସ୍ଥିରକଲା ଯେ ଜଗତଟା କିଛି ନ ବୁଝି ଫୁଟାଣି କାଢ଼ୁଛି । ଇନ୍ଦିରାଗାନ୍ଧୀ ପ୍ରଧାନମନ୍ତ୍ରୀ ହୋଇଛନ୍ତି ତ ହେବେ, ହୋଇ ରହିଥିବେ । ଇଏ କ'ଣ କ୍ରିକେଟ୍ ହୋଇଛି ନା ଫୁଟ୍‌ବଲ୍ ଯେ ପଟ ବଦଳୁଥିବ ? ସେ ଜଗତକୁ କଥା ମୋଡ଼ିରୁ ଟାଣି ଟାଣି ନେଇଗଲା ଆକୁଳର ମିଠା ଦୋକାନକୁ ।

ଇନ୍ଦିରାଙ୍କୁ ତାଙ୍କର କ'ଣ ହେଲା କାହିଁକି ହେଲା ବୋଲି ପଚାରିଲେ ସେ ବୋଧହୁଏ 'କିଛି ନାହିଁ ତ !' କହି ବିରକ୍ତ ହୋଇଥାଆନ୍ତେ । କାଲୁ ଯାହା ଦେଖିଲା ଓ ସେଥିଯୋଗୁ ତା' ମନରେ ଯେଉଁ ଭାବ ଆସିଲା ତା'ର କଣ୍ଟିତ୍ ଆଭାସ ପାଇଥିଲେ ସେ ଆହୁରି ଚଟି ଯାଇଥାଆନ୍ତେ, ସନ୍ଦେହ ନାହିଁ । କାଲିକା ପିଲା, ସେ ପୁଣି ମୋତେ ଥଟ୍ଟା କରିବ, ଛୁଗୁଲେଇବ ? ଦୟା ଦେଖେଇବ ? ତା ଦୋଷ ନୁହେଁ; ଅନ୍ୟ ଭାଇଭଉଣୀମାନେ ତାକୁ ସେଇ ଶିକ୍ଷା ଦେଇଛନ୍ତି, ବାପମାଆ ପ୍ରଶ୍ରୟ ଦେଇଛନ୍ତି, ଯେ ଇନ୍ଦିଅପାକୁ ଯା'ଇଚ୍ଛା ତା' କହିପାରି, ସେ ସବୁ ସହିବ । ଏହି ମର୍ମରେ ସେ ପୁଣି

ହୁଏତ ଚିତ୍କାର କରି ଉଠି ଥାଆନ୍ତେ ମନେ ମନେ—ଅନ୍ୟାୟ ! ଘୋର ଅନ୍ୟାୟ ! କିନ୍ତୁ ମୁହୂର୍ତ୍ତକର ସେଇ ଅପୂର୍ବ ଅନୁଭବକୁ ଅସ୍ୱୀକାର କରିପାରି ନ ଥାଆନ୍ତେ । । ଯେତେବେଳେ ଅଗଣାର ଶିଉଳିକନା କାନ୍ଥକୁ ଲାଗି ରହିଥିବା ଅବହେଳିତ ଭଙ୍ଗା ଫୁଲକୁଣ୍ଡର ଅନାମଧେୟ ଫୁଲ ମଧ୍ୟ ମୁଣ୍ଡ ଟେକିଲା, ଏବଂ ଇନ୍ଦିରାଙ୍କ ଆଡ଼କୁ ଚାହିଁ ଫିକ୍ କିନା ହସିଲା । ଅଗଣା କାଉର କର୍କଶ କା–କା ଗୋଟିଏ ଜରୁରୀ ଘୋଷଣା ପରି ଶୁଭିଲା । ଏବଂ ଅଗଣାର ମଣିଷମାନେ, ମାଆ, ବସିଖୁଡ଼ୀ, ନବା ଓଗେରେ କେବଳ ଅଜ୍ଞାତ ନୁହେଁ; ବିଗତ ନୁହେଁ, ପରାସ୍ତ ହେଲାପରି ଦିଶିଲେ । ବାହାରକୁ ଖୁସି ହେଲେ କ'ଣ ହେବ ବାରିହୋଇ ଯାଉଥିଲା ଯେ ବିଚାରୀମାନେ ହାରି ଯାଇଛନ୍ତି ।

ଅନୁଭବ କ୍ଷଣକରେ ଆସି ଉଭେଇଗଲା ସିନା, ତା'ର ଆବେଗ ତାଙ୍କୁ ବାନ୍ଧି ରଖିଲା । ଅନ୍ତତଃ ରସଗୋଲା ଖାଇବା ଯାଏଁ । କାରଣ ସେ ଭାବିଲେ ରସଗୋଲା ଗୁଡ଼ାକ ଅତିଶୀଘ୍ର ସରିଗଲା, ଆହୁରି ମଗେଇବା ଉଚିତ ଥିଲା । ଆହୁରି ଚୁଳୁ ଚୁଳୁ କରି ଖାଇଲେ ରସ ଶୋଷିଲେ ଯାଇଁ ମନ ଭରି ଥାଆନ୍ତା । ଏବଂ ଜଗତ ଇନ୍ଦିରାଗାନ୍ଧୀଙ୍କ ଭବିଷ୍ୟତ ନେଇ ଯାହା କହିଲା ଓ କାଲି ତା' ଉପରେ ଟିପ୍ପଣୀ ଦେଲା, ସେସବୁ ତାଙ୍କର ଏ କାନରେ ପଶି ସେ କାନରେ ବାହାରି ଗଲା, ସେତେବେଳେ ସେ କୋଉ ପଲିଟିକ୍ସ କଥା, ମୋର (ଆମର) ସମ୍ପର୍କ ନାହିଁ ସେଥିରେ ।

× × ×

ନୂଆ ଦିଲ୍ଲୀ । ନଭେମ୍ବର ୨, ୧୯୮୪ । ଆଜିର ଆଲୁଅଳିଆ ଅନ୍ଧାର ଭିତରେ ସେଦିନର ଚନ୍ଦ୍ର ଉଦିଆ ମନେପଡ଼ି ଯାଉଛି । ଏବଂ ଇନ୍ଦିରା ମହାପାତ୍ର କାନ୍ଦୁଣି ମାନ୍ଦୁଣି ହୋଇ କହୁଛନ୍ତି ନିଜକୁ—ନା, ନା, ସେମାନେ ଯେତିକି ଖୁସି ହେଲେ ମୁଁ ସେତିକି ଖୁସି ହେଲି । ମୋର କିଛି ଅଧିକା ନଥିଲା । ମୁଁ ଜିତିଗଲି, ସେମାନେ ହାରିଗଲେ, ଏମିତି କିଛି ଉଲ୍ଲାସର ଭାବ ନଥିଲା । ହିଂସା ନ ଥିଲା । ମୁଁ କ'ଣ ଏତେ ବୋକା ହୋଇଛି ଯେ ଆମର ଏକା ନାଆଁ ବୋଲି ମୁଁ ଇନ୍ଦିରାଗାନ୍ଧୀଙ୍କ ସାଙ୍ଗରେ ନିଜକୁ ସମାନ କରିବି ? ଶତ୍ରୁ ଚିତ୍‌ପଟାଙ୍ଗ ହୋଇଗଲେ, ଆଉ ମୁଁ ରାଣୀ ହୋଇ ବସିଲି ବୋଲି ଭାବିବି ?

ମୋର ଆନନ୍ଦରେ ହିଂସା ନ ଥିଲା । ବିଶ୍ୱାସ କର । ମୁଁ ମନେ ମନେ କାହାରିକୁ ହାଣିଦେଇ ନଥିଲି । ମୁଁ ଦେବୀ ନୁହେଁ । କି ରାଣୀ ନୁହେଁ, ସାମାନ୍ୟ ଗୃହିଣୀଟିଏ । ଇନ୍ଦିରା ମହାପାତ୍ର । ମୋ ସ୍ୱାମୀ ନବ ମହାପାତ୍ର । ହୋଇପାରେ ବଗୁଲିଆ ଟୋକା, ଛତରା । ସାଙ୍ଗମାନଙ୍କ ମେଳରେ ଉତ୍ପାତ ହେଉଛି । କିନ୍ତୁ ହିଂସା ତା' ରକ୍ତରେ ନାହିଁ ।

ଆମ ମାଆପୁଅଙ୍କ କିଛି ସମ୍ପର୍କ ନାହିଁ ତାଙ୍କ ସାଙ୍ଗରେ !

ହେ ଭଗବାନ୍ ! ହେ ଭଗବାନ୍ ! ଏତେ ବଡ଼ ଅନ୍ୟାୟ କର ନାହିଁ ମୋ ଉପରେ !!

କିନ୍ତୁ ଇନ୍ଦିରା ମିଛ କହିଲେ । ଭଗବାନଙ୍କୁ ଏମିତି ବ୍ୟାକୁଳ ହୋଇ ଡାକିଲେ ମଧ୍ୟ ତାଙ୍କ ନିଜ ମନକୁ ପୋକ କାଟିଲା ଯେ ସେ ମିଛ କହିଲେ । ଗତ ଅଠର ବର୍ଷର ଇତିହାସ ତାଙ୍କ ସାମ୍ନାରେ ଆସି ଛିଡ଼ାହେଲା ଓ ତାଙ୍କୁ ଛିଗୁଲେଇଲା,—ସତେ ? ଇନ୍ଦିରାଗାନ୍ଧୀଙ୍କ ସାଙ୍ଗରେ କିଛି ସମ୍ପର୍କ ନ ଥିଲା ତୋର ?

କଟକ ଗଳିର ବାପ ଘର ଅଗଣାରେ କାଲୁ ମୁହଁରୁ ଯୋଉ ଖବର ଶୁଣିଲୁ ସେଥିରେ ତୋର ହିଂସା-ଉଲ୍ଲାସ ଜାଗିଲା ନାହିଁ ତ ଆଉ କ'ଣ ଜାଗିଲା ? ପ୍ରେମ ? ସେଇଦିନ କ'ଣ ତୁ ତୋର ଅଜ୍ଞାତ-ବିଗତ ଲୋକମାନଙ୍କୁ ଗୋଇଠା ମାରି ଗଡ଼େଇ ଦେଲୁ ନାହିଁ ତଳକୁ ? (ମିଛ କଥା, ମୁଁ ସକାଳୁ ସକାଳୁ ମଙ୍ଗଳ କଳସ ଢ଼'ଟାକୁ ଭାଙ୍ଗିଦେବାକୁ ବସିଥିଲି, ସେ ତ ପୂର୍ବର ଘଟଣା) ଆଉ ସେଇଦିନ ଠାରୁ କ'ଣ ତୋର ରଙ୍ଗ ଫିଟିଗଲା ପରି ମନେ ହେଲା ନାହିଁ ? କଲିକତାକୁ ଫେରିଆସିଲା ପରେ ସେ ନିଜେ କହିଲେ ପରା, ମନେ ନାହିଁ, ଯେ ବାପଘରେ କୋଉ ଗୁଜୁଳିର ଭାତ ଖାଇ ଆସିଛ କି ? (ଧ୍ୟାତ୍, କି ବେହେଲ କଥା ! ମୁଁ ଯେମିତି ଥିଲି ସେମିତି ଅଛି ସବୁଦିନେ । ହୁଏତ ତାଙ୍କୁ ଟିକିଏ ବେଶି ପ୍ରେମ ମଡ଼େଇଲି ସେତେବେଳେ, ମୋତେ ଅନେକଦିନୁ ଦେଖି ନ ଥିଲେ କି ନା—) ଉଦ୍‌ବେଗ ଓ ଅନ୍ଧାରର ଫାଙ୍କରେ ଇନ୍ଦିରାଙ୍କ ମୁହଁରେ ଟିକିଏ ହସ ଫୁଟି ଉଠିଲା । ଛାତି ଧୁଡ଼ୁଧୁଡ଼ୁର ସ୍ୱର ମଧ୍ୟ ବଦଳିଗଲା ପରି ମନେହେଲା ।···ସେ ମାନ୍ଦ୍ରାସ୍‌ରେ ଅଛନ୍ତି

ଏଇକ୍ଷଣି, ସେଠି ବିଶେଷ କିଛି ଗଣ୍ଡଗୋଳ ନାହିଁ ବୋଲି କହୁଛନ୍ତି···କିନ୍ତୁ କାଲିକି କଅଣ ହେବ କିଏ ଜାଣିଛି ? ···ହଉ, ହଉ; ସେ ଥାଆନ୍ତୁ ଦୂରରେ । ଏଠି ଥିଲେ ସେ ଟୋକାଟାକୁ ସାବାଡ଼୍ କରି ଦେଉଛି କହି ବାହାରି ପଡ଼ି ଥାଆନ୍ତେ ଠେଙ୍ଗାବାଡ଼ି ଧରି । ଆଜି ମୁଁ ଆହୁରି ମରିଥାଆନ୍ତି ତାଙ୍କ ଚିନ୍ତାରେ···

ହଁ, ମୋର ପ୍ରେମ ଘର ଉଜୁଡ଼ୁଛି । କିନ୍ତୁ ତା' ସାଙ୍ଗରେ ଇନ୍ଦିରା-ଗାନ୍ଧୀଙ୍କର ସମ୍ପର୍କ ନାହିଁ । ତା'ଛଡ଼ା ପ୍ରେମ ହିଂସା ନୁହେଁ । ହାରିବା ନାହିଁକି ଜିଣିବା ନାହିଁ ସେଥିରେ । ମୋର କାହାରି ଉପରେ ଅହନ୍ଧା ନାହିଁ କି ନଥିଲା । ମୁଁ ସତ କହୁଛି । ପ୍ରକୃତ ପକ୍ଷେ ବାହାଘର ପରଠୁଁ ହିଁ ମୋର ଦେହେରି, ମନ, ସବୁ ଉଜ୍ଜଳ ହୋଇ ଆସିଲା । ପୁଣି ଯେବେଠୁଁ ମୋ ପୁଅ ନବ, ନବୀନକୁମାର ମୋ କୋଳକୁ ଆସିଲା···କହୁନା ଯେ ଛଅଷଠି ସାଲର ସେଇ ଦିନଠାରୁ ମୋ ରକ୍ତ ଚଞ୍ଚଳ ହୋଇ ଉଠିଲା ? ସେଇଠୁ ପାଇଁ ମୋ ପେଟରେ ପିଲା ରହିଲା ?

ହେଲା, ହେଲା, ତୋ ପ୍ରେମକୁ କୋଟି ଜୁହାରି । ଅନ୍ଧାର ଘରେ ତାଙ୍କ ଫଟଖଣ୍ଡିକ ଦିଶୁନାହିଁ ସିନା, ତାଙ୍କ ହସ ଶିଭିସୁଛି । ଶଢ଼ୁଉଛି । ବାଟ ଓଗାଳୁଛି । କହୁଛି, ପ୍ରେମ ହେଉ କି ହିଂସା ହେଉ, ମୁଁ ନଥିଲି ସେଥିରେ ? ଏଇ ହସ କେତେ ଦମ୍ଭ ଦେଇଛି ତୋତେ, କପାଳ ଆଉଁସି ଦେଇଛି, ପୁଣି ଉସ୍କେଇଛି, ତାତେଇଛି, ଭୁଲି ଗଲୁଣି ? ମୁଁ ତୋର ଦେବୀ ନୁହେଁ, ଆତ୍ମା ନୁହେଁ ? ନୁହେଁ ? ନୁହେଁ ??

ଓଃ ! ଦେବୀ ହୋଇଛ ବୋଲି ଦାନବୀ ହେବା ଦରକାର ? ଏଇକ୍ଷଣି ତମର ସେଇ ହସ ଦେଇ ମୋତେ, ମୋ ସଂସାରକୁ ଜାଳି ପୋଡ଼ି ନ ଦେଲେ ତମ ପେଟ ପୂରିବ ନାହିଁ ? କି ଦୁର୍ଯୋଗରେ କାଲୁ ଫଟଖଣ୍ଡିକ ଆଣି ଦେଇଥିଲା ମୋତେ, ଆଉ ମୁଁ ତାକୁ ନଧି ପାଇଲି ପରି ଛଡ଼େଇ ନେଲି ତା' ହାତରୁ ! ବେଡ୍‌ରୁମରେ ମୁଣ୍ଡ ଉପରକୁ ଟାଙ୍ଗି ଦେଲି, ସେବେଠୁଁ ସେଇ ଆନରେ ଅଛ, କଲିକତାରୁ ହାଇଦ୍ରାବାଦ, ହାଇଦ୍ରାବାଦରୁ ଦିଲ୍ଲୀ···

ପୁଣି ପାଠିଭୂଣ୍ଡ ଶୁଭୁଛି । କାଲୁ କହୁଛନ୍ତି ଗଲା ଯେ ସେ ନନ୍ଦକୁ ଯୋଉଠୁ ହେଲେ ଖୋଜି ଭିଡ଼ି ଆଣିବ । କିନ୍ତୁ କାଲୁକୁ ବିଶ୍ୱାସ ନାହିଁ । ସେଇ ତ ଗୁରୁ, ସବୁ ନାଟର ଗୋବର୍ଦ୍ଧନ ! ନା, ଇଏ ତାଙ୍କ ପାଟି ନୁହେଁ, ଆଉ କାହାର । କୁହାଟ, କିଳିକିଳା, ସେଇଠୁଁ ମାର୍ ଶାଳେକୋ । ମାର୍ ଶାଳେକୋ ନା ବନ୍ଦେ ମାତରମ୍ ? ମୋ ମୁଣ୍ଡ ଖରାପ ହୋଇଗଲାଣି । ଯାହାହେଉ ଶବ୍ଦ ଦୂରେଇ ଯାଉଛି, ଏ ଆଡ଼କୁ ଆସୁନାହିଁ···ରକ୍ଷା !

ଆରେ, ଡରୁଛୁ କ'ଣ ମ ? ତୋ ଘରେ ମୋ ଫଟ ଟଙ୍ଗା ହୋଇଛି ପରା ! ସେମାନେ କ'ଣ ଦେଖିବେ ନାହିଁ ? ତୁ ଶବ୍ଦ କ ମିଜ ବୁଝିବେ ନାହିଁ ? ଏଥର ତାଙ୍କ ହସ କେବଳ ସୁଦୃଶ୍ୟ ନୁହେଁ, ସଶବ୍ଦ ହୋଇ ଉଠିଲା । ଫାଟି ପଡ଼ିଲା ହୋ' ହୋ' ହୋଇ । ଏବଂ ଇନ୍ଦିରା ଶୁଣିବ ନାହିଁ କହି କାନରେ ହାତ ଦେଲେ । ଆଖି ବୁଜି ଦେଲେ । କହିଲେ, ନାଇଁ, ନାଇଁ, ଇଏ ତୁମ ହସ ନୁହେଁ । ତୁମେ ମୋ ଦେବୀ, ଦାନବୀ ନୁହଁ । ଦୟାକରି ଶାନ୍ତ ହୁଅ, ତୁମକୁ ମୋ ରାଣ !

ମୋ ନନ୍ଦକୁ ଫେରେଇ ଦିଅ ମୋତେ, ତୁମକୁ ନେହୁରା ହେଉଛି !

ଦାନବୀ ନ ହେଲେ ଦେବୀଙ୍କ ଷୋଳକଳା ପୂରିବ କେମିତି ? ହୁଣ୍ଡୀ, ଏତିକ ବୁଝି ପାରୁନୁ ?···ମୁଁ ଆଉ ହୁଣ୍ଡୀ ହୋଇ ନାହିଁ, କ୍ଷମା କର··· ଆ-ହା, ହୁଣ୍ଡୀପଣ ଛୁଟିଲା କେବେଠୁଁ ? ସେଇ ଛଅଷଠି ସାଲରେ, ନା ତା'ର ପାଞ୍ଚବର୍ଷ ପରେ ଏକସ୍ତରି ସାଲରେ, ଯେତେବେଳେ ମୁଁ 'ଗରିବୀ ହଟାଓ'ର ହୁଙ୍କାର ଛାଡ଼ି ଯେତେକ ବୁଢ଼ାହାଡ଼ାଙ୍କୁ ନିକାଲି ଦେଲି, ରାଜଗାଦିରେ ଜମିଗଲି, ଖଣ୍ଡା ଧରିଲି, ଏବଂ କେଇଟା ମାସ ନ ଯାଉଣୁ ଗୋଟାଏ ଦେଶ ଜିଣିଲି ? କିଏ କହିଲା ମୁଁ ଦୁର୍ଗା, କିଏ କହିଲା ଚଣ୍ଡୀ । ଆଉ ତୁ ସେଇ ରୂପ ଧରି କେମିତି ମାତି ଉଠିଲୁ, ମନେ ଅଛି ତ ?

ହଁ, ମନେ ଅଛି । ସେଇ ପାଞ୍ଚବର୍ଷ ଭିତରେ ମୁଁ ମୋର ଭାଇଭଉଣୀ-ମାନଙ୍କୁ, ବାପମାଆଙ୍କୁ, ସମାଜକୁ ପୁରାପୁରି କ୍ଷମା କରି ସାରିଥିଲି । କ୍ଷମା କ'ଣ

କରିବି ମ ? ସେମାନେ କ'ଣ ମୋର ନିଜର ନୁହଁନ୍ତି । ରମାଅପାର ଝିଅ ସୁଲି ଯେତେବେଳେ ଶକ୍ତ ବେମାରି ପଡ଼ିଥିଲି, ମୁଁ ତା' ପାଇଁ କେତେ ଠାକୁରଙ୍କୁ ଡାକିଛି, ପୂଜାମାଜଣା କରିଛି । ଶେଷକୁ ତାକୁ ବଞ୍ଚେଇଦେଲି ନା ଛାଡ଼ିଲି ? ମାଆକୁ ବଞ୍ଚେଇ ପାରିଲି ନାହିଁ, କିନ୍ତୁ ସେ ଶେଷ ମୁହୂର୍ତ୍ତରେ ମୋର ହାତ ଧରି କ'ଣ କହିଲା ପରି ହେଲା, ସେଇଠୁ ଆଖି ବୁଜି ଦେଲା । ଚିତରେ ମୋତେ ମାଡ଼ ପଡୁଥାଏ ଯେ ମୋର ଭାଇବନ୍ଧୁ କୁଟୁମ୍ବ ଦୁଃଖ ଭୋଗିଲା ବେଳେ ମୁଁ ଏତେ ଆନନ୍ଦରେ ଅଛି । ସେ ପ୍ରମୋସନ୍ ପାଇ ହାଇଦ୍ରାବାଦ ଆସିଲେ । ମୁଁ ଆଡ୍ଡର ଉପରମହଲରେ କାରବାର ହେଲି, ଅଏସ୍ କଲି । କେକ୍‌ରୁ ବଳି କେତେ ନୂଆ ନୂଆ ରନ୍ଧା ଶିଖିଲି, ସାହେବୀ, ଚାଇନିଜ୍, ମୋଗଲାଇ । କେତେ ପାର୍ଟି ଦେଲି, ହୋଷ୍ଟେସ ହିସାବରେ ନାଆଁ କମେଇଲି । ଭାବିଲି ଏଇ ହେଉଛି ଭୂସ୍ୱର୍ଗ । ଯେତେକ ଅନ୍ୟାୟ କରା-ହୋଇଛି ମୋ ଉପରେ, ତା'ର କ୍ଷତିପୂରଣ । କିନ୍ତୁ ସେଇବର୍ଷ ଶୀତଦିନକୁ, ମୋର ମନେ ଅଛି ସେଦିନ, ଟିପ୍‌ଟିପ୍ କୁକୁର ମୁହଁରୁ ଖଣ୍ଡେ କାଗଜ ଉଦ୍ଧାର କରି ଦେଖିଲି ଯେ—ଯେ—ତାଙ୍କର ଆଉ ଜଣେ ଅଛି । କୋଉ ଶୁକୁଟୀ ତେଲଙ୍ଗାଣୀ ନର୍ସ, କୃଷ୍ଣା ରାଓ ତା' ନାଆଁ । ସେଇଠୁ ମୁଁ ପ୍ରଚଣ୍ଡ ହୋଇ ଉଠିଲି । ସୁଁ ସୁଁ ହୋଇ କାନ୍ଦିଲି ନାହିଁ, ରାଗିଲି । ନାଆଁ ବାଣ ଛାଡ଼ିଲି । ତାଙ୍କ ସଫେଇରେ କାନ ନ ଦେଇ ପ୍ରେମର ସନ୍ତକ ଉପହାରମାନଙ୍କୁ ଭାଙ୍ଗି ଚୂରିଦେଲି, ତା' ଭିତରେ ଆମର ବାହାବେଳର ରୋମାଣ୍ଟିକ୍ ଯୋଡ଼ ଫଟୋ ଥିଲା (ସେ ପ୍ରମିଜ୍ କରିଛନ୍ତି ଯେ ନେଗେଟିଭ୍ ନ ଥିଲେ ବି ତା'ର ଗୋଟାଏ କପି କରେଇ ଦେବେ) ···ହଁ, ମୁଁ ଚଣ୍ଡୀ ହେଲି, ଆଉ ସେ ମୋର ହାତ ଧରିଲେ, ଗୋଡ଼ ତଳେ ପଡ଼ିଲେ, କହିଲେ ଗୋଟାଏ କ୍ଷଣିକ ପାଗଳାମି ଆସିଥିଲା ଚାଲିଗଲା, ସେ ଝିଅଟାକୁ ପ୍ରକୃତରେ ଘୃଣା କରନ୍ତି, ଖାଲି ମୋତେହିଁ ଭଲ ପାଆନ୍ତି, ଭଲ ପାଉଥିଲେ, ଭଲ ପାଉଥିବେ, ଇତ୍ୟାଦି । ବିଚରା ! ସେତିକିବେଳେ ତୁମ ରିଯୁନାଣିମା ଖଡ୍‌ଗଧାରିଣୀ ରୂପ ମୋତେ ଉସ୍‌କେଇ ଥିଲା, ବତେଇଥିଲା ଯେ ଆପଣା ଦାବୀ ନିଜେ ହାସଲ କରିନେବାକୁ ହେବ, ସେଥିପାଇଁ କାହାରି ହାରସ୍ଥ ହେଲେ ଚଳିବ ନାହିଁ ।

କିନ୍ତୁ ଇନ୍ଦିରାଜୀ, ସେତେବେଳେ ମଧ୍ୟ ତୁମ ଖଣ୍ଡାରୁ ରକ୍ତ ଝରୁ ନଥିଲା । ତା' ହୋଇଥିଲେ ମୁଁ ତୁମ ପିଠିକୁ ବି' ଭାଙ୍ଗି ଚୂରମାର୍ କରିଦେଇ ନ ଥାଆନ୍ତି !

ତା'ଛଡ଼ା ଖାଲି ତୁମେ'ଇ କଣ ଦେଇଛ ମୋତେ, ମୁଁ ତୁମକୁ ଦେଇ ନାହିଁ ? ଏମର୍‌ଜେନ୍‌ସି ବେଳେ, ସେତେବେଳେ ସମସ୍ତେ ତୁମକୁ ଛିଃ ଛାକର କଲେ, ବିଶେଷତଃ ଆମ ମାଇପି ମହଲରେ, ଆଉ ଆମ ମିସେସ୍ ଗୁଡିଆ (ନିଜ ପଛକେ ଡାହାଣୀ ପରି ଦେଖାଯାଆନ୍ତି) ତୁମକୁ ସବାଖାଈ ବୋଲି କହିଲେ, ମୁଁ କେମିତି ତାତି ଉଠିଲି ଦେଖି ନାହଁ ? ଖାଲି ତାତି ଉଠିଲି ନାହିଁ, ଯୁକ୍ତି କଲି । ସେ ସବାଖିଆ ଅନ୍ୟମାନେ, ଯେଉଁମାନେ ଦେଶଟାକୁ ଛାରଖାର କରିଦେବାକୁ ବସିଥିଲେ, ତାଙ୍କୁ ସେଇ ଶାସ୍ତି । ସେତେବେଳକୁ ଆମେ ଦିଲ୍ଲୀ ଆସିଲୁଣି, ସଫ୍‌ଦରଜଙ୍ଗ୍ ଫ୍ଲାଟ୍‌ରେ ଥିଲୁ । ମୋର ଯୁକ୍ତି ଦେଖି ସେମାନେ କାବା ହୋଇଗଲେ । ନେତାଙ୍କ ଭାଷଣ ଶୁଣିଲା ପରି ତାଳି ମାରିଲେ । ଆଉ ମୋ ପୁଅ ଖଣ୍ଡିକା, ନଅ କି ଦଶବର୍ଷ ହୋଇଥିବ ସେତେବେଳକୁ, ସେ ବି' ତାଳି ମାରିଲା । ସେ କଣ ସତସତିକା ତା'ଳି ମାରିଲା ସେଦିନ ? ତା' ମନରେ ଲାଗିଗଲା ମୋ କଥା ? ନନ୍ ସେନ୍‌ସ୍ ! ମୋ ଦୋଷ ନୁହେଁ । ସେଇ କାଲୁ ତା'କୁ ବିଗାଡ଼ୁଛି ।

ଯେତିକି ନେଇଛି ମୁଁ, ଦେଇଛି ସେତିକି । ତା'ର ଦି'ବର୍ଷ ପରେ ତୁମେ ଯେତେବେଳେ ହାରିଗଲ ଭୋଟ୍‌ରେ, ମୁହଁ ଲୁଚେଇଲ, ପୁଣି ତୁମକୁ ଯାହା ଅବସ୍ଥା କଲେ ସେମାନେ, ମୁଁ ମନେ ମନେ କେତେ ଡାକିଛି ଠାକୁରଙ୍କୁ, ଯେ ତୁମର ଏ ଦଶା କଟିଯାଉ । ତୁମେ ଯାହା କରିଗଲ ସବୁ ଭଲ ବୋଲି ମୁଁ କହୁନାହିଁ । କିନ୍ତୁ ମୋର ମନେହେଲା ଯେ ତୁମେ ହାରିଯାଇ ପାରିବ ନାହିଁ, ଅସମ୍ଭବ । ତା'ହେଲେ ମୁଇଁ ହାରିଯିବି ।

ମୁଁ ତ ସେଇଆ କହୁଛି ! ଫଟା ବାସିମାଙ୍କ ହସ ପୁଣି ମାଡ଼ି ବସିଲା । ମଧୁରିଆ ଶ୍ଳେଟେ ଦେଇ ଇନ୍ଦିରାଙ୍କ ସଫେଇକୁ ଦି'ଗଡ଼ କରିଦେଲା । ଦେଇଛୁ, ନେଇଛୁ, ମୋର କା, ମୋର ଗ୍ରୁପ୍, ପୁତୁଳି, ପ୍ରତିଧ୍ୱନି । ତୁମେମାନେ ନ ଥିଲେ ମୁଁ କ'ଣ ଫେରିଆସି ପୁଣି ରାଣୀ ହୋଇ ପାରିଥାଆନ୍ତି ?

ବେଶ୍, ବେଶ୍, ତା'ହେଲେ ଖାଲି ମୋ ପଛରେ ଲାଗିଛ କାହିଁକି ?

ଆଲେ, ତୁ ମୋ ସ୍ପେଶାଲ୍ ପରି ! ସେ ଏତେ ଜୋର୍‌ରେ ହସିଲେ ଯେ ଇନ୍ଦ୍ରବାବୁଙ୍କର ମନେହେଲା ଝରକାର କାଚଗୁଡ଼ାକ ଝଣଝଣ ହୋଇ ଉଠୁଛି ।

ତୁ ମୋ ସ୍ପେଶାଲ୍ ! ମୁଁ ତୋତେ ପାଇଛି, ଗଢ଼ିଛି, ପାଳନ୍ତେଇଛି । ଖାଲି ତୋତେ ନୁହେଁ, ତୋର ଅତୀତ, ବର୍ତ୍ତମାନ, ଭବିଷ୍ୟତ । ଆଉ ତୋର ସ୍ୱାମୀ, ପରିବାର, ପୁଅ···ବିଶେଷତଃ ତୋର ପୁଅ, ଘରର ଆସନ୍ତା କାଲି, ଗଜା ଟୋକା, ଗ୍ରେଟ୍ ହେବାର ବି' ବୟସ ହୋଇ ନାହିଁ ଆଜଯାଏଁ । ଶ୍ରୀମାନ୍ ନବୀନ ମହାପାତ୍ର, ଖୋଦ୍ ଇନ୍ଦ୍ର ମହାପାତ୍ରର ପୁଅ । ସେଇ ତା'ର ଦେଖିଲା କାମ କରିବ, ରକ୍ତ ବୁହେଇବ···

ନା, ନା, ନା !! ମୋ ପୁଅ ସେମିତି ନୁହେଁ, ହୋଇ ପାରିବନି···। ଝରକା କାଚ ପୁଣି ଝଣଝଣଉଛି । ଆଉ କାହାର ହସ, ଦୀର୍ଘପଟୁ ଆସୁଛି । ପାଖରେକନ ପୁଣି ଗୋଟାଏ କାର୍ ଜଳା ହେଲାଣି, ତା'ର ନଆଁ ମୋଟା ପରଦା ଭିତରୁ ବି' ବାରି ହୋଇ ଯାଉଛି । ହେଲେ ମୁଁ ପରଦା ଖୋଲିବି ନାହିଁ, ମୋଟେ ଖୋଲିବି ନାହିଁ । ଖାଲି ମୋ ପୁଅ ଆସିଲେ ଖୋଲିବି । ସେଇଠୁଁ ତା'କୁ ମୋଟେ ଛାଡ଼ିବି ନାହିଁ । ବନ୍ଧ କରିଦେବି ମୋ ଭିତରେ ।

ଇନ୍ଦ୍ରବ ଆଲୁଅ ଜଳେଇ କବାଟ ଖୋଲିଦେବାକୁ ବାଧ୍ୟ ହେଲେ; ସେତେବେଳେ ପ୍ରବଳ ଧଡ଼-ଧଡ଼ ଶବ୍ଦ ସାଙ୍ଗକୁ ନାରୀକଣ୍ଠର ଆର୍ତ୍ତନାଦ ଶୁଣିବାକୁ ପାଇଲେ,—ବଞ୍ଚାଓ ! ବଞ୍ଚାଓ !!

ବୁଢ଼ୀ ଅଧବୁଢ଼ୀ ଶଲୱାର୍-କମିଜ୍‌ପିନ୍ଧା ସ୍ତ୍ରୀଲୋକ ଦୁ'ଜଣ ଦଳେ ପିଲା କବିଲାଙ୍କୁ ଧରି ଘର ଭିତରେ ଅଜାଡ଼ି ହୋଇପଡ଼ିଲେ । ସେମାନଙ୍କ ମୁହଁ ଉପରେ ଜଡ଼ସଡ଼, ଶଙ୍କିତ । ବଲବଲ ହୋଇ ଚାହୁଁଛନ୍ତି ଇନ୍ଦ୍ରବାବୁଙ୍କୁ, ସେଇଠୁଁ ଘରର ସମୃଦ୍ଧ ପରିପାଟୀ ଉପରେ ଆଖି ବୁଲେଇ ଆଣୁଛନ୍ତି । ଜଣକ ପାଟି ମେଲା ହୋଇ ରହିଛି, ବୁଜିବାକୁ ନାହିଁ । ଆରଜଣକ ଥଙ୍ଗଥଙ୍ଗ ହୋଇ ପ୍ରଶ୍ନ କଲା,—

"ଆଉ କେହି ନାହାନ୍ତି ? ମର୍ଦମାନେ ନାହାନ୍ତି ?"

"ନାହାନ୍ତି । ମୋ ସ୍ୱାମୀ କମ୍ପାନୀ ମ୍ୟାନେଜର୍ । ଟୁର୍‌ରେ ଯାଇଛନ୍ତି । (ଆଉ କାହା କଥା କହିବା ଦରକାର ନାହିଁ)"

"ତମେ...ତମେ...(ତା'ର ଦୃଷ୍ଟି ପଡ଼ିଲା ଇନ୍ଦରଗାନ୍ଧୀଙ୍କ ଫଟୋ ଉପରେ)"—ବୁଢ଼ୀର ପ୍ରଶ୍ନ ପୂରା ହୋଇ ପାରିଲା ନାହିଁ, କାହିଁକନା ସେ ହଠାତ୍ ହାଉଳ ଖାଇଲା । କାନ୍ଦକାନ୍ଦ ମୁଣ୍ଡରେ ତା'ଏତା'ଏ ହାତ ବାଡ଼ଉଇ କହି ଗ୍ଲଲା—"ଆମେ କାହାର କିଛି ବିଗାଡ଼ି ନାହୁଁ...କାହାର କିଛି କରିନାହୁଁ...ଏଇଆଙ୍କୁ (ଫଟୋ ଆଡ଼କୁ ହାତ ଦେଖେଇ) ଭୋଟ୍‌ଦେଇ ଆସିଛୁ ସବୁଦିନେ..."

ଆରକ ତା'କୁ ସାନ୍ତ୍ୱନା କରିବାକୁ ଚେଷ୍ଟା କଲା, ଚୁପ୍‌କର ଚୁପ୍‌କର ବୋଲି ପାଟିକଲା । ପିଲାମାନେ ଦେଖିଗଲେ । କିନ୍ତୁ ସେ କାହିଁକି ଶୁଣିବ ? ପୁଅ ମୁହଁ ଫିଟିଗଲା ପରି ଗାଇଲା—

"ମୋର ଆଖି ଆଗରେ ମାରିଦେଲେ ତାଙ୍କୁ । ଲୁହାଛଡ଼ରେ ପିଟି ପକେଇଲେ । ମୋ ନଣନ୍ଦର ହାତ ଭାଙ୍ଗିଦେଲେ । ଆଉ ମୋ ଭାଇକୁ ଟାଣି ଟାଣି ନେଇଗଲେ, କିଏ କିରାସିନି ଢାଳିଦେଲେ ତା' ଉପରେ, ତା'କୁ ଜଳେଇ ଦେବେ...ଜଳେଇ ଦେବେ..."

ଇନ୍ଦରା କିଛି କହି ପାରିଲେ ନାହିଁ, କରିପାରିଲେ ନାହିଁ, ସାନ୍ତ୍ୱନା ଦେବା ଦୂରର କଥା । ତେବେ କେତୁଟା ଅବାନ୍ତର ଧାରଣାର ଆଶ୍ୱାସନା ମନକୁ ଆସିଲେ ।...ଅନ୍ତତଃ ତା'ର ପୁଅର କିଛି ହୋଇ ନାହିଁ । ପୁଅଝିଅ ବଞ୍ଚିଛନ୍ତି । ଆରକର ବୋଧହୁଏ ସମସ୍ତେ ବଞ୍ଚିଛନ୍ତି । ହୁଏତ ଦୋକାନ ଖଣ୍ଡିକ କି ସ୍କୁଟର୍ ଜଳି ଯାଇଥିବ...

ଲୁଚେଇ ଦେବ ଏମାନଙ୍କୁ । କୋଉଠି ଲୁଚେଇବ ?

କାହିଁକି ଲୁଚେଇବ ?

ହିଷ୍ଟ୍ରିପ୍ରସ୍ତ ପ୍ରଶ୍ନର ଉତ୍ତର ପାଇଁ ଇନ୍ଦରା ଫଟୋ ବିଶେଷ ଆଡ଼କୁ ଅନେଇ ନ ଥିଲେ । କିନ୍ତୁ ସେ ତେଜସ୍ୱିନୀ ହୋଇ ଉଠିଲେ । ଏକସ୍ବର ସାଲର

ରୁଦ୍ରମୂର୍ତ୍ତି ଫେରିପାଇଲା ପରି ମନେହେଲା । ମୋର ଇନ୍ଦିରାଗାନ୍ଧୀ କି ଆଉ କାହାରିକୁ ଗୁହାରି କରିବା ଦରକାର ନାହିଁ । ମୁଁ କାହାରି ଅନୁଗ୍ରହ ଗ୍ରହଣ କରେ ନାହିଁ । ମୁଁ ଥାଉଁଥାଉଁ ଏମାନଙ୍କ ଦେହରେ କିଏ ହାତ ଦେବ ଦେଖିବି···ମୁଁ ନିଜେ ମରିବି ପଛେ···

ଆସୁ କୋଉ ନଅାଁଲଗା, ବର୍ବର, ଜାନୁଆର୍···

ମଧ୍ୟବୟସ୍କା ପୃଥୁଳା ଇନ୍ଦିରା, ସ୍ୱାମୀଙ୍କ କଥାରେ ପଡ଼ି ବାଳ ରଙ୍ଗେଇ ନ ଥିଲେ ଅଧିକରୁ ବେଶି ଧଳା ଦିଶୁ ଥାଆନ୍ତା, ଶରଣାର୍ଥୀମାନଙ୍କ ଆଡ଼କୁ ଅନେଇ ଯେଉଁଭଳି ଠାଣିରେ ଛିଡ଼ା ହେଲେ, ସେଥିରୁ ମନେହେବ ଯେ ସେ କସ୍ମିନ୍‌କାଳେ ଅବଳା ନ ଥିଲେ ଓ କାହାରି ସାଧ୍ୟ ନାହିଁ ତାଙ୍କୁ ଦେଖି ହସିବ ଅଥବା ତାଳି ମାରିବ । ସସ୍ମିତ ଦାମ୍ଭିକ ଭଙ୍ଗୀରେ ଉପରକୁ ହାତ ଉଠେଇଲେ । ପଦୁଟିଏ କଥା କହିଲେ ନାହିଁ । କାନ୍ଦ ବୋବାଳି ଥମ୍‌କିନି ରହିଗଲା ।

କିନ୍ତୁ ବାହାରୁ ନୂଆ କୋଳାହଳ ଶୁଣାଗଲା । ଏବଂ କୋଳାହଳ ମଧ୍ୟରୁ ଗୋଟାଏ ଗର୍ଜନ, ଦୁହା, ଓ ତା'ର ସମବେତ ପାଳି,—ଖୁନ୍ କା ବଦ୍‌ଲା···ଖୁନ୍ ସେ ଲେଙ୍ଗେ ! ସେମାନେ ପାଖ ହୋଇ ଆସୁଛନ୍ତି । ଏଇ ଘର ଆଡ଼କୁ ଆସୁଛନ୍ତି, ସନ୍ଦେହ ନାହିଁ ।

ଖୁନ୍ ? ଆସ ବାପଧନ, ଖୁନ୍ ପିଇବ କି କ୍ଷୀର ପିଇବ ଦେଖିବା ତମକୁ । ଇନ୍ଦିରା ବୁଲି ପଡ଼ିଲେ । ଦରଜା ଧଡ଼ଧଡ଼କୁ ଅପେକ୍ଷା କଲେ । କିନ୍ତୁ ତାଙ୍କର ଅବିଚଳିତ ଭଙ୍ଗୀରେ କୌଣସି ପରିବର୍ତ୍ତନ ଦେଖାଗଲା ନାହିଁ ।

ମନର ଭୂତ ଡରେଇଲା ତାଙ୍କୁ । କିଏ ଗର୍ଜୁଛି ଜାଣୁ ? ତୋର ଭାଇ, କଣ୍ଠ ବାରି ପାରୁନୁ ? ଆଉ ତା' ଚେଲା ଅଛି ପାଖରେ, ନବୀନକୁମାର, ତୋର ପୁଅ, ଏକମାତ୍ର ସନ୍ତାନ । ସେ ବି' ଦୁହାରେ ପାଳି ଦେଉଛି । ଆଉ ହାତରେ ଠେଙ୍ଗା ଧରିଛି, କମ୍ପା ଲୁହାଛଡ଼ ।

ବେଶ୍, ମୁଁ ପରୁଆ କରି ନାହିଁ । ଯିଏ ଆସୁଛି ଆସୁ, ଆଗେ ମୋର ମୁଣ୍ଡ ଫଟେଉ, ପିଇଯାଉ ମୋର ରକ୍ତ, ତା'ପରେ ଯାଇଁ ଆଉ କାହା ଦେହରେ ହାତ ଦେବ ।

ଦରଜା ଧଡ଼ ଧଡ଼ କରିବା ଆବଶ୍ୟକ ନ ଥିଲା । କାରଣ ଆଶ୍ରିତ-ମାନଙ୍କର ପଶି ଆସିବାର ଗଣ୍ଡଗୋଳ ଭିତରେ ଇନ୍ଦିରା କବାଟ କିଳିବାକୁ ଭୁଲି ଯାଇଥିଲେ । ତେଣୁ ଦରଜାକୁ ଠିଆ ମେଲାକରି ନାଟକୀୟ ଭଙ୍ଗୀରେ ଉଭା ହେଲେ ସେ ଦୁଇଜଣ—କାଲୁ ଓ ନବ । ହାତରେ ଅସ୍ତ୍ର ନାହିଁ । ହେଲେ ମୁହଁଯାକ ହସ । ସତେକି କୃତକର୍ମା ହୋଇ ଫେରିଛନ୍ତି । ଅପାକୁ, ମାଆଙ୍କୁ ନିହାଲ କରିଦେବେ । ସୈନ୍ୟଦଳ ପଛରେ ଅଛନ୍ତି କୋଉଠି, ତାଙ୍କୁ ବୋଧହୁଏ ଚୁପ୍ ରହିବାକୁ ଆଦେଶ ଦିଆହୋଇଛି ।

"ମୁଁ କହୁ ନଥିଲି ଇନ୍ଦିଅପା, ଯେ ନବକୁ ଯୋଉଠୁ ହେଲେ ଟାଣି ନେଇ ଆସିବି—"

ମନର ଯେତେକ କଷଣ ହୁଏତ ମାତୃପ୍ରେମରେ ଭାସି ଯାଇଥାଆନ୍ତା । ଇନ୍ଦିରା ଦୁଇହାତ ବଢ଼େଇ ପୁଅକୁ କୁଣ୍ଢେଇ ପକେଇ ଥାଆନ୍ତେ । ଏବଂ ଯୁବନେତା କାଲୁ ବନାମ ପାର୍ଥ ନାଏକ ତା'ର ଗେହ୍ଲା ଇନ୍ଦିଅପାର ଆନନ୍ଦକୁ ପିଇଯାଉ ଥାଆନ୍ତା ।

ଏମିତି ହେଲା ନାହିଁ କାହିଁକିନା ବୁଢ଼ୀଜଣକ, ଯେ କିଛି ସମୟ ପୂର୍ବରୁ ବାଉଳା ଧରିଥିଲା; ଗୋଟାଏ ରଡ଼ ଛାଡ଼ିଲା ଶଆଁ ଲାଗିଲା ପରି ଓ ସେ ଦୁଇଜଣଙ୍କ ଆଡ଼କୁ ହାତ ଦେଖେଇ କହିଲା, 'ଏଇ—ଏ—ଇ—"

ଦୁହିଁଙ୍କ ଭିତରୁ କେହି ବୁଢ଼ୀ ଆଡ଼କୁ ମାଡ଼ି ଆସିଲେ ନାହିଁ । କେବଳ ଏଇଥିପାଇଁ ନୁହେଁ ଯେ ସେ କଚଡ଼ି ହୋଇ ପଡ଼ିବାକୁ ଯାଉଥିଲା, ଏବଂ ଆଉ ସ୍ତ୍ରୀ ଲୋକ ତା'କୁ ଧରି ପକେଇଲା । ସେମାନେ ଇନ୍ଦରାଙ୍କ ଖାସ୍ତ ଗୃହିଣୀର ନିଆଁକୁ ଭୁଲେଇ ପାରିଲେ ନାହିଁ ।

ସତର ବର୍ଷର ନବ, ବୟସକୁ ଚୁହିଁ ବେଶ୍ ହୃଷ୍ଟପୁଷ୍ଟ, ବାପ ପରି ଗୋରା, ହେଲେ ମାଆ ପରି ମୋଟାଳିଆ ଓଠ ଏବଂ ସ୍ୱଭାବତଃ ସ୍ମିତ ଗୃହିଣୀ । ସେ ଦାନ୍ତଗିଜଡ଼ା ହସରେ ନିଆଁ ଲିଭେଇବାକୁ ବସିଲା, କିନ୍ତୁ ପାରିଲା ନାହିଁ । କିନ୍ତୁ ପାର୍ଥ ନାଏକ କାଲିକା ପିଲା ନୁହେଁ । ନାକକାନ୍ଦୁଣ୍ଡ ଇନ୍ଦିଅପାକୁ ସେ ପୂରାପୂରି ଚିହ୍ନିଛି ବୋଲି ତା'ର ବିଶ୍ୱାସ । ସେ ଇନ୍ଦରାଙ୍କ

ଗୃହିଣୀକୁ ଉପେକ୍ଷା କରିବାକୁ ଚାହିଁଲା । ଇଏ ବୁଝିବ ନାହିଁ, ମୁଁ ପିଲାଦିନୁ ଦେଖିଛି । ତେଣୁ ସେ ନେତାସୁଲଭ କଣ୍ଠରେ ଆରମ୍ଭ କଲା—;

"ଇନ୍ଦିରା, ତୁ ଭୁଲ୍ ବୁଝୁଛୁ । ଏମାନଙ୍କର ମୁଣ୍ଡ ଖରାପ । ଆମେ ଯାହା କିଛି କରୁଛୁ, ଦେଶର ହିତ ପାଇଁ । ଯେମିତିକି ଏମାନେ ବୁଝିବେ, ବୁଝିବାକୁ ବାଧ୍ୟ ହେବେ ଯେ ଇନ୍ଦିରା ଗାନ୍ଧୀଙ୍କୁ କେହି ହତ୍ୟା କରିପାରିବେ ନାହିଁ, ତାଙ୍କ ରକ୍ତର ପ୍ରତ୍ୟେକ ବିନ୍ଦୁ କଥା କହିବ···"

କିନ୍ତୁ ଇନ୍ଦିରା ତା'ର ଭାଷଣ ଶୁଣିବା ପାଇଁ ପ୍ରସ୍ତୁତ ନ ଥିଲେ । ତାଙ୍କର ଗୃହିଣୀ ଉତ୍ତର ମାଗୁଥିଲା—ତୁ'ଇ ନବ । ଦୁଦୁ ଖାଇବା ପାଇଁ ଅସମ୍ଭାଳ ହୋଇ ମୁଣ୍ଡିଆ ମାରୁଥିଲୁ ମୋ ଛାତକୁ । ବାପାଙ୍କ ପିଠିରେ ସବାର୍ ହୋଇ ଚଲ୍ ଘୋଡ଼ା କହୁଥିଲୁ । ତଥାପି ଅରମାନ ମେଣ୍ଟି ନ ଥିଲା ? ବୁଢ଼ା ବାପକୁ ପିଟି ପିଟି ମାରି ପକେଇଲୁ ? ମାଆର ହାତ ଭାଙ୍ଗିଦେଲୁ ? ପାଠ ନ ପଢ଼ି ଛତରା ହେଲେ ହେଲୁ, ହିଏତ ମନ୍ତ୍ରୀ ହେବୁ, ତା ବୋଲି···ନା, ତୁ ନୁହେଁ; ତୋ ମାମୁ । ନା, ତମେ କେହି ନୁହଁ, ତମେ ଖାଲି ପାଟି କରୁଥିଲ···କୁହ ! କୁହ ! ସତକଥା କହିବଅ ମୋତେ ?

କାଲୁ ଠିକ୍ ଭାବିଥିଲା । ଇନ୍ଦିରାଙ୍କର ଧ୍ରୁବ ଗୃହିଣୀ ବୁଝି ପାରିଲା ନାହିଁ । କିନ୍ତୁ ଧସିଗଲା ପରେ ସେଥିରୁ ଯେଉଁ ପ୍ଲାବନ ଛୁଟିଲା ତାକୁ କାନ୍ଦଣା ବୋଲି କିଏ କହିବ ? ପ୍ଲାବନର ଚୂଡ଼ାରେ ବସି ସେ ଚିତ୍କାର କଲେ, ବୁକୁ ଫଟେଇ ଗଳା ଫାଡ଼ି, ସାରା ଜୀବନର କ୍ରୋଧ ସାରିଦେଲା ପରି—

"ଯାଅ ତମେ ! ବାହାରି ଯାଅ ଏଠୁ ! ମୁଁ ତମ ମୁହଁ ଦେଖିବାକୁ ଚାହେଁ ନାହିଁ । କେତେ କ'ଣ ଜାଳିଛ, ପୋଡ଼ିଛ, ନଷ୍ଟ କରିଛ, ହେଲା । କିନ୍ତୁ ଯଦି ଜାଣେ ଯେ ତମେ କୋଉ ବାପମାଆ ଭାଇଭଉଣୀଙ୍କ ଦେହରେ ହାତ ଦେଇଛ, ରକ୍ତ ବୁହାଇଛ, ତାହାହେଲେ ···ତା' ହେଲେ···ଜାଣିଥାଅ ଇନ୍ଦିରାଜୀଙ୍କ ସାଙ୍ଗରେ ମୁଁ ବି କାଲି ଚିତାରେ ଶୋଇବି···ଭସ୍ମ ହୋଇଯିବି···

ତେବେ ସେ ବନ୍ଦେ ଯାକ ଗୁଳିଗଲା ପରେ ମଧ୍ୟ ଇନ୍ଦିରା ଖୋଲା ଦରଜାକୁ ଆବୁରି ଛିଡ଼ା ହୋଇ ରହିଥିଲେ । ରାସ୍ତା ଉପରେ ବାଆଁକୁ, ଡାହାଣକୁ, ସାମ୍ନାରେ ହୁଡୁହୁଡୁ ହୋଇ ଜଳୁଥିବା କାର୍ ଟ୍ରକ୍‌ମାନଙ୍କ ଦଶା ତାଙ୍କ ମନକୁ ଛୁଇଁ ନଥିଲା । ସେ ଖାଲି ଭାବୁଥିଲେ—

ସେମାନେ କେହି ମୋତେ ସତ କହିବେ ନାହିଁ, ମୁଁ ଜାଣିଛି । କେହି କେବେ ସତ କହି ନାହାନ୍ତି ମୋତେ, ଭଣ୍ଡେଇଛନ୍ତି । ମୁଁ କାଲି ଚିତାରେ ଶୋଇବ, ଭସ୍ମ ହୋଇଯିବ, ମିଶିଯିବ ତାଙ୍କ ସାଙ୍ଗରେ ସେ ଭାଗ୍ୟ ମୋର ନାହିଁ···

ଇନ୍ଦିରାଜୀ, ତୁମେ ବି' ଶେଷକୁ ଠକେଇଲ ମୋତେ ?



# ନିଧନ

ରଜନୀ ବାବୁଙ୍କ କଲମ ଅଟକିଗଲା । ଗୋଟାଏ ବିଚିତ୍ର ରଙ୍ଗର ଚଢ଼େଇ, ଦେହ ନେଳିଆ ହୁଏତ ନେଳିଆ-ଶାଗୁଆ, ଲୁଗାଶୁଖା ତା'ର ଉପରେ ବସି ତା'ର ନାଲିଆ ଲାଞ୍ଜକୁ ଫଡ଼ ଫଡ଼ କଲା । ମତଲବ କଅଣ ? ଶନିବାରିଆ ବୋଲି ତୋତେ କ'ଣ କେହି ସୁନ୍ଦର ବୋଲି କହିବେ ? ତୁମମାନଙ୍କ ପ୍ରତି ମୋର ଅସୀମ ଘୃଣା । ମନ ବୋଲି କିଛି ନାହିଁ, ହୃଦୟ ଘରେ ଶୂନ୍ୟ, ଖାଲି ରଙ୍ଗ ଦେଖେଇ ବୁଲୁଥାଅ, ଲିପଷ୍ଟିକ୍‌ର ରଙ୍ଗ, ଶାଢ଼ୀ ଗହଣାର ରଙ୍ଗ, ରଙ୍ଗ ଆଉ ଢଙ୍ଗ, ଏବଂ ଫଡ଼ ଫଡ଼ ହୁଅ । ସତେକି ତୁମେମାନେ ନ ଥିଲେ ସମାଜ ସାଦା ସେତା ହୋଇ ପଡ଼ିଥାନ୍ତା; ନିରାନନ୍ଦରେ ଶୁଖି ଶୁଖି ଝଡ଼ି ଯାଆନ୍ତା ! ବରଂ ତୁମମାନଙ୍କ କୃପାରୁ ଆମ ସମାଜର ଆଜ ଏଇ ଅଧୋପତନ—ବୁଝିଲ ?

ଚଢ଼େଇ ଉଡ଼ିଗଲା । ଉଡ଼ିଗଲା ପୂର୍ବରୁ ଏଭଳି ଗୋଟାଏ କର୍କଶ ଶବ୍ଦ ଛାଡ଼ି ଦେଲା ଯେ ରଜନୀବାବୁ ଖୁସିଟାଏ ହେଲେ । ଦେଖିଲ ତ ? ମରମକୁ ବାଧିଲାରୁ କେମିତି ନିଜରୂପ ବାହାରି ଆସିଲା ? ଭଦ୍ରମହିଳାଙ୍କ ଚଞ୍ଚୁରୁ କେମିତିକା ଭାଷା ବାହାରିଲା ?

କିନ୍ତୁ ଶନିବାରିଆର ପରେ ପରେ ଅନେକ ଅନ୍ୟମାନେ କୁଆଡ଼ୁ ଆସି ପହଞ୍ଚିଗଲେ । କଳା ଚିକଣିଆ, କୁନ୍ଦୁମୁନିଆ, ଚେଁ ଚେଇଁଆଁ, ଏବଂ ଆକାଶ ତଳେ ଚକ୍କର କାଟୁଥିବା ଉଦାର ଉଦାସିଆ । ଏମାନେ କଣ ଆଗରୁ ଏଇଠି ଥିଲେ ନା ମୋତେ ଚିଆଁରିବାକୁ ବାହାରି ଆସିଲେ ? ରଜନୀବାବୁ ଅମୋଦିତ ହେଲେ । ତତ୍‌ସହ ତାଙ୍କର ଆଲଫ୍ରେଡ଼୍

ହିଚ୍‌କକ୍‌ଙ୍କର ଫିଲ୍ମ "ଦି' ବାର୍ଡ୍‌ସ୍" ମଧ୍ୟ ମନେ ପଡ଼ିଲା, କେମିତି ଚଢ଼େଇ ମାନେ ମଧ୍ୟ ଭୟଙ୍କର ହୋଇ ପାରନ୍ତି, ଦିନକୁ ରାତି କରି ଦିଅନ୍ତି, ଟେଗଧେଡା ଅଚଳ ମଣିଷ ଗୁଡ଼ାଙ୍କୁ ଖୁମ୍ପି ବିଦାରି...

ରଜନୀବାବୁ ଘନେଇ ଆସୁଥିବା ଭୟାବହ ଦୃଶ୍ୟକୁ ଫ୍ୟାଣ୍ଟାସି ବୋଲି କହି ଛାଡ଼ିଦେଲେ । ଚଢ଼େଇଗୁଡ଼ାକ କେବଳ ଚଢ଼େଇ । ନାରୀ । ଦମୟନ୍ତୀ ।

ପୁଣି କଲମ ଧରିଲେ । ଚଢ଼େଇମାନଙ୍କୁ ନାରୀ ବୋଲି କାହିଁକି ଭାବନେଲି ନାରୀମାନଙ୍କ ସାଙ୍ଗରେ ମୋର ଏଇ ଲେଖାର ସମ୍ପର୍କ କଅଣ, ଇତ୍ୟାଦି ଅଯଥା ପ୍ରଶ୍ନକୁ ପ୍ରଶ୍ରୟ ଦେଲେ ନାହିଁ । କେବଳ ସ୍ୱୀକାର କଲେ ଯେ ଜନ୍ମେଜୟ ରାୟଙ୍କ ଠାରୁ ତାଙ୍କ ସ୍ତ୍ରୀ ସରସୀଙ୍କ ଚେହେରା ବେଶି ମନେ ପଡ଼ୁଛି । ସେ ନାରୀ ବୋଲି ମୋର ତାଙ୍କ ପ୍ରତି ଦୁର୍ବଳତା ଆସୁଛି, ସେ କଥା ନୁହେଁ । ତାଙ୍କୁ ଚରିତ୍ରା ବୋଲି କୁହାଯାଇ ନ ପାରେ, ଏବଂ ଖାଲି ସେଇଥିପାଇଁ ମୁଁ ତାଙ୍କୁ ଦୁଃଖ ଦେବାକୁ ଚାହେଁ ନାହିଁ, ତା' ମଧ୍ୟ ନୁହେଁ । ନିରପରାଧିନୀ । କିନ୍ତୁ ସ୍ୱାମୀଙ୍କର ଦୁଷ୍କୃତି ପାଇଁ ତାଙ୍କୁ ମଧ୍ୟ ଲାଞ୍ଛିତା ହେବାକୁ ପଡ଼ିବ । ହସ୍ତିନୀ, ଶଙ୍ଖିଣୀ, ଶ୍ଳେଷ୍ମଣୀମାନେ ଯେଉଁମାନେ ତାସ୍ ଖେଳିବା ଏବଂ ଚାକରଙ୍କ ସାଙ୍ଗରେ ବକର ବକର ହେବା ଛଡ଼ା ଆଉ କିଛି ଜାଣନ୍ତି ନାହିଁ (ହେଲେ ରାତିରେ ସ୍ୱାମୀର ଶ୍ରାନ୍ତ ଦେହକୁ ଉସ୍‌କେଇବା ଜାଣନ୍ତି) ସେମାନେ ସରସୀଙ୍କୁ ଦେଖିଲେ ମୁରୁକିହସା ଦେବେ, ଆଖି ଠରାଠରି ହେବେ, ପାଖରେ ପାଇଲେ କହିବେ—ଆଉ ମିସେସ୍ ରାୟ. କଅଣ ଖବର ? ରାୟସାହେବ ଏଇଠି ଅଛନ୍ତି ନା ଫରେନ୍ ଯାଇଛନ୍ତି ? କୋଉ ଛଇଳ ହୁଏତ ଚକ୍ଷୁର ପଣର ନମୁନା ଦେଖେଇ ସଙ୍ଗୀମାନର ଖୋଲା ବାହୁକୁ ଶୁଙ୍ଘି ପକେଇବେ ଆଉ କହିବ—ଆଲେ, କି ସାବୁନ୍ ଲଗେଇଛୁ କି ଏମିତି ଦମଦମ ବାସୁଛି ? କୋଉଠି ମିଳୁଛି କହିଲୁ ? ସନ୍ଦେହ ନାହିଁ ଯେ ସେମାନେ ବଶିଷ୍ଟ ସାମ୍ବାଦିକ ରଜନୀ ସାମନ୍ତଙ୍କର ହୋଡ଼ପତ୍ର ପଢ଼ି ନ ଥିବେ, ତା'କୁ ପଢ଼ିବାର ଧୈର୍ଯ୍ୟ ଓ ବୁଝିବାର ମଗଜ ତାଙ୍କ ପାଖରେ ନାହିଁ ।

କିନ୍ତୁ ତାଙ୍କ ପତିଦେବଙ୍କ ଠାରୁ ଶୁଣିଥିବେ ଯେ, ଗୋଟାଏ ଚମକପ୍ରଦ ଖବର—ଶୁଣନ୍ତୁ ! ଖୋଦ ଜନ୍ମେଜୟ ବାବୁ, ଚିଫ୍ ସେକ୍ରେଟେରୀ, ବିଲାତରୁ ଡକ୍‌ଟରେଟ୍ ପାଇଥିବା ପଣ୍ଡିତ ଆଇ. ଏ. ଏସ୍, ମାଛକୁ ମଚ୍ଛ ବୋଲି ବୁଝନ୍ତି ନାହିଁ, କର୍ମୀଙ୍କ ଦେଇ ଝୁଲି ପଡୁଥିବା କେଶ, କବିଙ୍କ ପରି ଗମ୍ଭୀର ଗୃହିଣୀ, ତାଙ୍କର ଧାତପୁରେ ବାହାରିଛି । ତମ "ବୈତରଣୀ" ସାବୁନରେ କଅଣ ଅଛି ଜାଣିଛ ? ଥୋଲ୍ ଥୋଲ୍ ଚର୍ବି । ଗୋମାଂସର ଚର୍ବି । ଏବଂ ସେଥିପାଇଁ ଦାୟୀ ଆମ ବଡ଼ ସାହେବ । ଫାଷ୍ଟକ୍ଲାସ୍ । ରଜନୀ ମଉସା ଦେଇଛନ୍ତି ପାନେ, ଗ୍ରୁଡ଼ ନାହିଁ । ଭାବଥିଲି ଲୋକଟାର ବୟସ ବଢ଼ିଲାଣି, ଆଗଭଳି ଲେଖି ପାରୁନାହିଁ । କିନ୍ତୁ ଦେଖୁଛି ଇଏ ଅରୁଣ ଶୋରିର ବାପ ହେବାକୁ ବସିଛି···

ଏହିପରି ଭାବରେ ସୁଚରିତା ସରସ୍ୱତୀ ରାୟଙ୍କର ଦୂରବସ୍ଥା ଅନୁମାନ କରି ଦୁଃଖିତ ହେବା ସଙ୍ଗେ ସଙ୍ଗେ ରଜନୀବାବୁ ଆସନ୍ତା ରବିବାର, 'ଦୈନିକ ଆଲୋକ'ରେ ପ୍ରକାଶୋନ୍ମୁଖ (ଟୋକା ସମ୍ପାଦକ ଡରିଯିବ, ଛପେଇବ ନାହିଁ ଏକଥା ହୋଇ ନ ପାରେ, ତା'ହେଲେ ମୁଁ ଆଉ କୋଉ କାଗଜରେ ଛପେଇବି) ତାଙ୍କର ବଳିଷ୍ଠ ପ୍ରବନ୍ଧର, ପ୍ରବନ୍ଧ ନୁହେଁ ପୂରାପୁରି ଗୋଟାଏ ପୁସ୍ତକର ପ୍ରତିକ୍ରିୟା କଅଣ ହେବ ଭାବି ବସିଲେ । ନିର୍ଭୀକ ନିଧନ । ହୁଏତ ମୋତେ ଅରୁଣ ଶୋରିଙ୍କ ସାଙ୍ଗରେ ତୁଳନା କରିବା ଉଚିତ ହେବ ନାହିଁ । କିନ୍ତୁ ଆମ ଅଞ୍ଚଳରେ ଏଭଳି ଲେଖା ପୂର୍ବରୁ କେବେ ଲେଖା ଯାଇ ନ ଥିଲା । ଦ'କଡ଼ାର ଖଡ଼ାଖିଆ ନିଜ ପ୍ରବନ୍ଧ ଲେଖି ନାହିଁ । ପ୍ରବୀଣ ତଥା ପ୍ରତିଷ୍ଠିତ ସାମ୍ବାଦିକ ଦେଶପ୍ରେମୀ ରଜନୀ ସାମନ୍ତର କଲମରୁ ବାହାରିଛି । ହିଂସାରେ ସହି ନ ପାରିଲା ପରି ଲେଖି ନାହିଁ, ଗାଳିଗୁଲଜ ଦେଇ ନାହିଁ । ଦୁଇରେ ଦୁଇ ମିଶେଇ ଚିଠିର ନକଲ ଦେଇ, ସରକାରୀ ଫାଇଲରୁ ଉଦ୍ଧାର କରି ଲେଖିଛି । ଅବଶେଷରେ କାନ୍ଦିଛି ।

ରଜନୀ ସାମନ୍ତ ନିଷ୍ଠୁର ନୁହେଁ । ନିଧନରେ ଅବଶ୍ୟ ବାକି ରଖି ନାହିଁ । ଜନ୍ମେଜୟ ରାୟଙ୍କ ମୁଣ୍ଡରୁ ଗଣ୍ଡି କାଟି ଦିଆ ହୋଇଛି । ତଥା

ତାଙ୍କର ସାଙ୍ଗଭାଇ ଦାମୀକର୍ଣ୍ଣି ଶିଳ୍ପପତି, ଠାଉଟର ଓ କଗଣୀ କେତେଜଣଙ୍କର। କିନ୍ତୁ ସେ କାନ୍ଦୁଛି। ଶେଷକୁ ଏଇଯା କରିବାକୁ ଥିଲା ? ତୁମ ପରି ଜଣେ ଗୁଣୀ ଗଣ୍ୟମାନ୍ୟ ଲୋକ, ବୁଦ୍ଧିଜୀବୀ ସମ୍ପ୍ରଦାୟର ନେତା ତୁମେ ତୁମର ନିରନ୍ନ ଜାତି ଭାଇଙ୍କ କଥା ଟିକିଏ ଭାବିଲ ନାହିଁ ? ତାଙ୍କ ବିଶ୍ୱାସରେ ବିଷଦେଲ ? ତା'ଛଡ଼ା ତୁମର ସରଳା, ନିରପରାଧିନୀ···

ନା, କଲମ ଅଟକିବାର ନୁହେଁ। ବର୍ତ୍ତମାନ ବିକ୍ଷିପ୍ତ ଦଲିଲର ଆଲୋଚନା କରାଯାଉ। ରାୟ ସାହେବ ଅର୍ଦ୍ଧ-ସରକାରୀ ଚିଠି ଲେଖିଛନ୍ତି ଶିଳ୍ପପତି ଉତ୍ତମ ସିଂହଙ୍କ ପାଖକୁ—"ପ୍ରିୟ ଉତ୍ତମ୍‌ଜୀ···ଆପଣ ତ ଜାଣନ୍ତି ଚର୍ବି ଇମ୍ପୋର୍ଟ୍ ସାଙ୍ଗରେ ମୋର କିଛି ସମ୍ପର୍କ ନାହିଁ। ତେବେ ମୁଁ ଗତଥର ଦିଲ୍ଲୀ ଯାଇଥିଲି ବେଳେ ସେମାନଙ୍କ ସାଙ୍ଗରେ କଥାବାର୍ତ୍ତା କରି ଆସିଛି। ମନେ ହେଉଛି କିଛି ଅସୁବିଧା ହେବ ନାହିଁ" ହା-ହା ! ଯଦି ଇମ୍ପୋର୍ଟ୍ ଆଇନ୍ ସମ୍ମତ ତା'ହେଲେ ଏଇ ଫୁସୁଫୁସିଆ କାରବାର କାହିଁକି ? କଥାବାର୍ତ୍ତା···କିଛି ଅସୁବିଧା ହେବ ନାହିଁ···ଇତ୍ୟାଦିର ଅର୍ଥ କ'ଣ ? ଉଦ୍ଦେଶ୍ୟକୁ ଶବ୍ଦରେ ଘୋଡ଼େଇ ଦେବାର ଚେଷ୍ଟା ନୁହେଁ କି ? ଶଠତା ଆଉ କାହାକୁ କୁହନ୍ତି ? ହାଃ ! ଏଇଠି ଆଉ ଗୋଟାଏ ଭୁଷା। ଭୁଷା ନୁହେଁ, ଗଳାକୁ ଖାଲି ହାତରେ ଚିପିଦେଲେ, ତୋଟିକୁ ଦାନ୍ତରେ କଣା କରିଦେଲେ ଭଲ ଲାଗିବ ପରା ! କାରଣ ଏମାନେ ଦେଶର ଶତ୍ରୁ, ହିଂସ୍ର ଶୃଗାଳ, ବିଷଧର କୀଟ। ନା, ମୋ କଲମ ତା' କାମ କରିଯିବ। ଅଟକିବାର ପ୍ରଶ୍ନ ଉଠୁ ନାହିଁ। ଗୋମାଂସ ଚର୍ବିର କାରବାର ନେଇ ଯେଉଁ ହୁଲସ୍ଥୁଲ ପଡ଼ୁଛି ଦେଶସାରା, ତା'ର ଫାଇଦା, ମାନେ ତା'ର ସୁଯୋଗ ଛାଡ଼ିବାର ନୁହେଁ। ରଜମାସାମନ୍ତ ଅନ୍ତତଃ ତାର ନିଜ ପ୍ରଦେଶର ପାପୀମାନଙ୍କୁ ଚହ୍ଲେଇ ଦେଇ ପାରିବ। ହୁଏତ ଉତ୍ତମଜୀଙ୍କ ଦଳ ଚର୍ବିକୁ ବନସ୍ପତିରେ ମିଶେଇଲେ କି ନାହିଁ ତା'ର ପ୍ରମାଣ ନାହିଁ। କିନ୍ତୁ ସେ ବସ୍ତୁଟିକୁ ତାଙ୍କ "ବୈତରଣୀ" ସାବୁନରେ ଖଟେଇଛନ୍ତି ତାର ପ୍ରମାଣ ହାତେ ହାତେ। ନ ହେଲେ ଏତେ ଚର୍ବି ମଗଉଥିଲେ କାହିଁକି ? ଭେଜିଭାତରେ ରାନ୍ଧିବା ପାଇଁ ? ଏବଂ ତାଙ୍କର

ଲୁଣ୍ଠପୋଷକ ହେଲେ ଆମର ବଙ୍କ, ବଚକ୍ଷଣ, ସ୍ୱନାମଧନ୍ୟ ଶ୍ରୀଯୁକ୍ତ ଜନମେଜୟ...।

ସରସୀ ଦେବୀ ! ଆପଣ ମୋ ଆଡ଼କୁ ସେମିତି ଚୁହିଁଛନ୍ତି କାହିଁକି ? ଆପଣ ରାଯ୍ ସାହେବଙ୍କୁ ବାହା ହୋଇ ଘର କଲେ, ସେଥିପାଇଁ କ'ଣ ମୁଁ ଦାୟୀ ? ଆପଣଙ୍କ ଖାତିର୍‌ରେ ମୁଁ କଲମ ଛାଡ଼ିଦେବ, ମୋର କର୍ତ୍ତବ୍ୟ କରିବ ନାହିଁ ?

ଚା'ଛଡ଼ା ଆପଣ ମୋର କ'ଣ କି ? ହୁଏତ ଆପଣଙ୍କ ହାତରୁ ଚୁ' ଖାଇଛି, ଆପଣଙ୍କ ଅଞ୍ଚଳ ମୋ ଦେହକୁ ଛୁଇଁ ଛୁଇଁ ଯାଇଛି । ଏତେ ପ୍ରାଚୁର୍ଯ୍ୟ ମଧ୍ୟରେ ଆପଣଙ୍କର ବିଷାଦ ମୋତେ ମୁଗ୍ଧ କରିଛି, ସେତିକି ଆପଣ ମୋ ପାଇଁ ଯେତିକି ଆପଣଙ୍କ ସ୍ୱାମୀଙ୍କ ପାଇଁ, ପୁରୁଷାଧିତ ସଂସାର ପାଇଁ ସେତିକି ବ୍ୟଥିତ । ପୁରୁଷମାନେ ଖାଲି ଆକ୍ରମଣ, ଅଧିକାର କରି ଜାଣନ୍ତି, ସେଇଥିକୁ ସୁଖ ବୋଲି ମଣନ୍ତି । ବିଚରା ! ଅନୁଭବ କରି ଜାଣନ୍ତି ନାହିଁ । ପ୍ରକୃତି ସାଙ୍ଗରେ (ତଥା ସୁନ୍ଦର ବସ୍ତୁ ସାଙ୍ଗରେ) ମିଶିଯିବାର ଗୋଟେଇ ହେବାର ଅନୁଭବ । ସିଲକ୍ ଶାଢ଼ୀ କେମିତି ଦେହ ସାଙ୍ଗରେ ମିଶିଯାଏ, ଦେହର ବାସ୍ନା କେମିତି ଝରକାରେ ଲୋଟି ଯାଇଥିବା ହେନାଫୁଲ ସାଙ୍ଗରେ ଲେସି ହୋଇଯାଏ, ହସର ପବନ କେମିତି ଚୁ' ଧୂଆଁରେ ଖେଳିଯାଏ, ଧୂଆଁର ବାମ୍ପ ଆପଣଙ୍କର ଗୁଦୁଗୁଦିଆ ହସରେ ବଦଳିଯାଏ, କିଏ କାହାକୁ ଉଷ୍ଟୁମେଇଲି ବୁଝି ହୁଏନାହିଁ...ଆଃ ! ଆପଣ ହିଁ ପ୍ରମାଣ କରି ଦେଇଛନ୍ତି ଯେ ନାରୀ ବୋଲି ଗୋଟିଏ କବିତା ଅଛି, ଅଛି । ସୁବର୍ଣ୍ଣ ଚଢ଼େଇ ମାନସରୋବରରୁ ଉଡ଼ି ଆସିଛି ତ୍ରିଇଂରୁମ୍‌କୁ, କହିଲେ ଗାଆଁ ଭୁଠକୁ ଯିବ । ନରାହା, ନିରପରାଧିନୀ...କିନ୍ତୁ ଆପଣ ମୋର କିଏ କି ?

ପ୍ରକୃତରେ ଆପଣ କାହାର କିଛି ହୋଇ ପାରିବେ ନାହିଁ । ନୁହଁ କନ୍ୟା, ନୁହଁ ବଧୂ, ଇତ୍ୟାଦି । ଆପଣ ଗୋଟିଏ ନାରୀ-ଛବି । ଯାହାକୁ ପାଇ ହେବ ନାହିଁ । କେବଳ ଆପଣଙ୍କର ଅନୁଭବରୁ କିଞ୍ଚିତ୍ମାତ୍ର ଅନୁଭବ ଗ୍ରହଣ କରିପାରିଲେ ନିଜକୁ ଧନ୍ୟ ମନେ କରିବାକୁ ହେବ । ମୁଁ ସେଇ ପ୍ରସାଦ ପାଇଛି । ଅଞ୍ଚଳ ଛୁଇଁଲି ପରି ଧାଡ଼େ ।

ମୋତେ କ୍ଷମା କରନ୍ତୁ ସରସୀ ଦେବୀ । ମୋ ମତରେ ଆପଣଙ୍କ ବିବାଦକୁ ଜଣେଇ ଦିଅନ୍ତୁ ଅଥବା ତରଳେଇ ଦିଅନ୍ତୁ ସ୍ୱାମୀଙ୍କ ପାଇଁ । ହୃଏତ ଲୁହ ଟିକିଏ ଝରିପଡ଼ୁ । ମୋର ବିଶ୍ୱାସ ସେଥିରେ ଆପଣଙ୍କର ଗୃହିଛବିରେ ଆଞ୍ଚ ଲାଗିବ ନାହିଁ । ବରଂ ତାହା ଆହୁରି ସଜଳ ସରସ ହୋଇ ଫୁଟି ଉଠିବ । ବାକି ରହିଲେ ଆପଣଙ୍କର ସହଚରୀମାନେ, ଅପରି ନାରୀଗଣ । ତାଙ୍କ ଟାହୁଲଟାପରିକୁ ପରୁଆ କରନ୍ତି ଆପଣ ? ···ଯାହା ହେଉ, ଘବୁଛି ବିପ୍ଲ ସାହେବଙ୍କ ଏଇ ଅ୍ଧୋଗତିକୁ ନେଇ ଦୁଃଖ କରିବା ସଙ୍ଗେ ସଙ୍ଗେ ଆପଣଙ୍କ ଘର ସହିତ ମୋର ଘନିଷ୍ଠ ସମ୍ପର୍କର ଉଲ୍ଲେଖ କରିବି (ସେଥିରେ ମୋର ନିରପେକ୍ଷତା ମଧ୍ୟ ଜଣା ପଡ଼ିଯିବ) ଏବଂ ସେହି ସମ୍ପର୍କରେ ଆପଣ କିଭଳି ମହୀୟସୀ ନାରୀ, ଅର୍ଥାତ୍ ପ୍ରକୃତ ନାରୀ, ସ୍ୱପ୍ନଲଭ୍ୟା, ତା'ର ଗୋଟାଏ ଆଭାସ···

"କ'ଣଟା କରୁଛ ସକାଳୁ, ଶୁଣେ ? ଲେଖୁଛ ନା ଧ୍ୟାନ କରୁଛ ?"

ରଜନୀ ବାବୁ ପତ୍ନୀଙ୍କ ଆବିର୍ଭାବକୁ ସ୍ୱୀକାର କଲେ । ଯେ ସରସୀଙ୍କ ନୈସର୍ଗିକ ନାରୀତ୍ୱକୁ ଗ୍ରହଣ କରିବାରେ କୁଣ୍ଠାଳୀ ସେ କ'ଣ ପ୍ରତିଭାଙ୍କ ପତ୍ନୀତ୍ୱକୁ ଗ୍ରହଣ କରି ପାରିବ ନାହିଁ ? ମୁଁ କ'ଣ ଜାଣେ ନାହିଁ ଯେ ମୁଁ ଟିକିଏ ବେଶି ସମୟ ଲେଖି ବସିଲେ ସେ କୁଆଡ଼ୁ ଆସି ପହଞ୍ଚିବ, ଏବଂ କିଛି ଗୋଟାଏ ପ୍ରଶ୍ନ ପଚାରିବ ? ଉଦ୍ଦେଶ୍ୟ ହେଉଛି କଲମ ଛାଡ଼, ମୋ ସାଙ୍ଗରେ ଟିକିଏ କଥାବାର୍ତ୍ତା କର । ମୁଁ ତୁମର ପତ୍ନୀ । ପିଲାମାନେତ କୋଉ ଦୂର ବିଦେଶରେ । ଆଉ କିଏ ଅଛି ମୋ ପାଖରେ ? ବେଶ୍, ଭଲ କଥା । କଲମ ପୁଣି ଥରେ ଅଟକିଯିବ, ଯାଉ । କିନ୍ତୁ ମୋର ଲେଖା ଅଧା ରହିବ ନାହିଁ । ଆଜି ଦିନକ ଭିତରେ ତାକୁ କୌଣସି ମତେ ସାରିବାକୁ ହେବ । ନ ହେଲେ ରବିବାରିଆ କ୍ରୋଡ଼ପତ୍ରକୁ ଡେରି ହୋଇଯିବ । ଠିକ୍ ଅଛି, ପତ୍ନୀତ୍ୱର ଉପଚାର ଆଉ ଅଧଘଣ୍ଟାଏ, ଖୁବ୍ ବେଶିହେଲେ ଘଣ୍ଟାଏ । ରଜନୀ ବାବୁ ଲେଖା ବନ୍ଦକରି ଉଦାର ସସ୍ମିତ ଗ୍ରହାଣୀରେ ସ୍ତ୍ରୀଙ୍କ ଆଡ଼କୁ ଗ୍ଭହିଁଲେ ।

ଷ୍ଟଡ଼ି ରୁମ୍‌ର ଖୋଲା ଝରକା ଭିତର ଦେଇ ସୂର୍ଯ୍ୟକିରଣ ଅଜାଡ଼ି ହୋଇ ପଡ଼ୁଥିଲା । ଲେଖା ଟେବୁଲ ଉପରେ ବିପର୍ଯ୍ୟସ୍ତ ହୋଇ ପଡ଼ିଥିବା କାଗଜପତ୍ରମାନଙ୍କର ବିବିଧ ଭଙ୍ଗି ଓ ଭଙ୍ଗୀ ସୁସ୍ପଷ୍ଟ ହେଉଥିଲା । କହିବାକୁ ହେବ ଯେ ସେମାନେ ବିପର୍ଯ୍ୟସ୍ତ ନୁହଁନ୍ତି, କର୍ମରତ ମାଲିକଙ୍କ ବହୁମୁଖୀ ପ୍ରତିଭାର ପରିଚୟସୂଚକ, ଡେଣ୍ଡୁ କିଏ ହାମୁଡ଼େଇ ପଡ଼ିଛି ତ କିଏ ଟେବୁଲ୍ ସନ୍ଧିକୁ ଗଳି ପଡ଼ିଛି, ଆଉ କିଏ ମୋକଦ୍ଦମାକାତ ହୋଇ ଅପେକ୍ଷା କରିଛି କେତେବେଳେ ୱେଷ୍ଟ୍‌ପେପର୍ ବାସ୍କେଟ୍‌ରେ ପଡ଼ିବ । ଏବଂ ପ୍ରତିଭାତ ହେଉଥିଲା ପ୍ରତିଭା ସାମନ୍ତଙ୍କ ମଧୁର-ଆ-ଶ୍ୟାମଳ ଓ ଚେପଟା ମୁହଁର ନାନାଦି ଆଇଟେମ୍ । ଯଥା, ବସୁସିର ଗାର, ସ୍ୱେଦବିନ୍ଦୁ, ଏବଂ କାନରୁ ଝୁଲୁଥିବା ଦୁଲ୍ । କିନ୍ତୁ ରଜନୀ ବାବୁ ଯାହା ଲକ୍ଷ୍ୟକଲେ ତାହା ଏ ସବୁଥିରୁ ଭିନ୍ନ । ପତ୍ନୀର ଆଖିରେ ବସା ବାନ୍ଧିଥିବା ଏକ ଅସ୍ୱାଭାବିକ ଉଜ୍ଜ୍ୱଳତା । ସତେକି ସେ କିଛି ଗୋଟାଏ ଆବିଷ୍କାର କରିଛି । ଅଥବା କୌଣସି ଚମକପ୍ରଦ ଘଟଣା ଶୁଣିବାକୁ ପାଇଛି । ତା'କୁ ନ ଉଡାରିବାଯାଏଁ ସେ ଆଖି ଜଳୁଥିବ ସେମିତି ।

ଆଃ ! କ'ଣ କଥା କହି ଦେଉ ନ' କାହିଁକି ? ରଜନୀ ବାବୁ ଅପେକ୍ଷା କଲେ । କିନ୍ତୁ ଦେଖିଲେ ପତ୍ନୀ ତାଙ୍କ ହ୍ୱାଉପତ୍ରର ଶଠାକୁ ହାତରେ ଉଠେଇ ନେଇ ପଡ଼ୁଛି ବସି । ମନୋଯୋଗ ସହ ପଡ଼ୁଛି । ଆଶ୍ଚର୍ଯ୍ୟ ! ହଠାତ୍ ଏଭଳି ଆଗ୍ରହ ଆସିଲା କେବେଠୁଁ ? ହେଲେ କାରଣ କ'ଣ ଭାବି ବସିଲାବେଳକୁ ତାକୁ ସେ ଭୁଚ୍ଛ କଲାପରି ଟେବୁଲ ଉପରକୁ ଫିଙ୍ଗି ସାରିଲାଣି । ସେଇଠୁଁ ପ୍ରମାଣପତ୍ରର ଦଲିଲ୍‌ମାନଙ୍କୁ ଗୋଟି ଗୋଟି କରି ଉଠଉଛି, ପ୍ରତ୍ୟେକରେ ଟିକିଏ ଆଖି ବୁଲେଇ ରଖି ଦେଉଛି । ସେମିତି ଫିଙ୍ଗିଲା ପରି ।

ରଜନୀ ବାବୁଙ୍କର ଉଦାର ଭାବ କଟି ଆସିଲା । ପତ୍ନୀ ହେଉ ପଛେ, ତା'ର କୌଣସି ଅଧିକାର ନାହିଁ । ମୋର କାମ, ମୋ ଜୀବନର କାମକୁ ଏଭଳି ହତାଦର କରିବ । ତା'ଛଡ଼ା ମୁଁ ଏଇକ୍ଷଣି ଯାହା ଲେଖୁଛି, ପରଦା ଉନ୍ମୋଚନର ଶେଷ କଥା କହିଲେ ଚଲେ, ଷ୍ଟେଟ୍‌ର ସର୍ବୋଚ୍ଚ ଅଧିକାରୀଙ୍କୁ ଗାଦିରୁ ଓଟାରି ଆଣି ଜନତା ସାମ୍ନାରେ ଗଡ଼େଇ

ଦେବାର ଏଇ ଦୁଃସାହସିକତା ( ତା'ର ଫଳାଫଳ ମୋତେ ଭୋଗିବାକୁ ପଡ଼ିବ, ଚିନ୍ତା ନାହିଁ ) ଯାହା ସମାଜର ଇତିହାସରେ···ରଜନୀ ବାବୁ ଉତ୍ତେଜିତ ହେଲେ । ତେବେ କ୍ରୋଧ ଦମନକରି ପତ୍ନୀଙ୍କୁ ବିଷୟବସ୍ତୁର କିଛିଟା ଜଣେଇ ଦେବା ଉଚିତ ହେବ ବୋଲି ମନେକଲେ । କହିଲେ—

"ଜାଣ ମୁଁ କଣ ଲେଖୁଛି ? କାହା ବିଷୟରେ ଲେଖୁଛି ?"

ପ୍ରତିଭା ଦେବୀ ଭ୍ରୂଲତା ଈଷତ୍ ଉପରକୁ ଟେକିଲେ । ଭାବଭଙ୍ଗୀରେ ଆଉ କୌଣସି ପରିବର୍ତ୍ତନ ନାହିଁ ।

"ଆସନ୍ତା ରବିବାରଆ ଆଲୋକରେ ସାମନ୍ତଙ୍କ ସ୍ତମ୍ଭ, ସ୍ତମ୍ଭ ନୁହେଁ, ପୂରାପୂରି ଗୋଟାଏ ପୃଷ୍ଠା । ଆମ ଶାସନରେ ଯେ ସବୁଠାରୁ ମୁଖିଆ ବୋଲାନ୍ତି, ସେ କେମିତି ଦୁର୍ନୀତିର ମୁଖିଆ ହୋଇ ପାରିଛନ୍ତି···"

"ଆଚ୍ଛା ?" କଣ୍ଠ ସ୍ୱରରେ ବିଦ୍ରୂପ ।

"ସେ ହେଉଛନ୍ତି ଆମ ଖୋଦ୍ ଚିଫ୍ ସେକ୍ରେଟେରୀ ବୁଝିଲ ? ବୁଝିଲ ? ?"

"ସେଇ ଯେଉଁ ପାତଳୀ, ଢଙ୍ଗୀ, କୁନ୍ଥେଇଲା ପରି ହସେ, ଆଖି ମିଞ୍ଜି ମିଞ୍ଜି କରି ହସେ କାନ୍ଦ ମାଡ଼ିଲା ପରି, ଆଉ ଗ୍ଲେବେଇ ଗ୍ଲେବେଇ କଥା କୁହେ, ତାଙ୍କର—?

"କାହା କଥା କହୁଛ ତୁମେ ?"

"ସେଇ ଯେଉଁ କଳସୀ ନା ସରସୀ ତାଙ୍କର ସ୍ୱାମୀ ତ ?"

ଆଉ କେହି ଏ କଥା କହିଥିଲେ ରଜନୀବାବୁ ଅନ୍ତତଃ ଛିଡ଼ା ହୋଇ ପଡ଼ି ଥାଆନ୍ତେ ଏବଂ ଲୋକ ଦେଖି କହିଥାଆନ୍ତେ ଯେ ତମରି ଧାରଣା ଭୁଲ୍ କିମ୍ବା ତମେ ଗୋଟିଏ ଇଡ଼ିଅଟ୍ । ବର୍ତ୍ତମାନ ମଧ୍ୟ ସେ ଉଠ ଉଠ ହେଉଥିଲେ । କିନ୍ତୁ ଯଥା ସମୟରେ ବୁଦ୍ଧି ରି ବିଜୁଳି ତାଙ୍କୁ ବାଟ ଦେଖାଇ ଦେଲା । ଦେଖ୍ , ଅନ୍ୟର ସ୍ତ୍ରୀ ସପକ୍ଷରେ ବେଶି ଗୁଡ଼ାଏ କହିବା ପୁଣି ନିଜ ସ୍ତ୍ରୀର କଥାକୁ କାଟି ଦେଇ···ତୋର କଣ ମୁଣ୍ଡ ଖରାପ ? ତେଣୁ ରଜନୀବାବୁ କଲମ କାମୁଡ଼ିବା ଛଡ଼ା ଆଉ କିଛି କରି ପାରିଲେ ନାହିଁ ।

ରଜନୀବାବୁଙ୍କର ସେହି ଦସ୍ୟୁମୀସ୍ୟ ମୁହୂର୍ତ୍ତରେ ପ୍ରଭାଭା ଦେବୀ ତାଙ୍କ ସଫାସୁତୁରା ଆଖିର ସମସ୍ତ ଜ୍ୟୋତିକୁ ଗୋଟେଇ ଧରିଲେ, ଏବଂ ନିକ୍ଷେପିଲେ—

"ତମ ପାଇଁ ଗୋଟାଏ ଚିଠି ଆସିଛି ।"

"କାହିଁ ? କୋଉଠୁ ଆସିଛି ?"

"ତମ ପାଖକୁ ଆସିନାହିଁ । ମୋ ପାଖକୁ ଆସିଛି । କିନ୍ତୁ ତମପାଇଁ । ( କିଛି ସମୟ ରହିସାଇ ) ତମକୁ ଜଣେ କେହି ଖୋଜୁଛି । ତମକୁ ନ ଦେଖିଲେ ତା'ର ପ୍ରାଣ ଗୁଡ଼ିଯିବ ।"

ରଜନୀ ବାବୁଙ୍କର ବୁଝିବାରେ ବ'କୀ ନ ଥିଲା ଯେ ପ୍ରଭାଭା ଦେବୀ ରସ ବାଢ଼ିବାକୁ ଆସି ନାହାନ୍ତି, ଛିଗୁଲେଉଛନ୍ତି । ଖୋଜୁଥିବା ଜଣକ ପୁରୁଷ ନୁହେଁ, ସ୍ତ୍ରୀ, ତା' ମଧ୍ୟ ସହଜେ ଅନୁମେୟ । କିନ୍ତୁ କୋଉ ସ୍ତ୍ରୀ ଏମିତି ଅଛି ଯେ···ହେ ଭଗବାନ୍ । ରଜନୀ ବାବୁ ହାତରୁ କଲମ ଖସେଇ ଦେବାକୁ ବାଧ୍ୟ ହେଲେ ।

ପ୍ରଭାଭା ଦେବୀ ପାଖ ଚଉକିଟରେ ବସି ପଡ଼ିଲେ । ମନେହେଲା ସେ ଆକ୍ରମଣକୁ ସହଜେ ସାରିବାକୁ ଚାହାନ୍ତି ନାହିଁ, ଭାବୁଛନ୍ତି ପୀଡ଼ନକୁ ଖେଳେଇ ଖେଳେଇ ଲମ୍ବେଇଲେ ମନ୍ଦ ହେବ ନାହିଁ ।

ମୋତେ ଏତେ ଭଲ ପାଏ ଯେ—!

ନା, ପତ୍ର ମୋତେ ମିଛୁଟାରେ ଚିଡ଼େଇବାକୁ ଆସିନାହିଁ, ଫାଜିଲମି କରୁ ନାହିଁ । ତାର ଧାରଣା ସଂପୂର୍ଣ୍ଣ ଭୁଲ୍ ହୋଇପାରେ, କିନ୍ତୁ ସେ ମନରୁ ଫାନ୍ଦ କହୁନାହିଁ । କୋଉ ଡ୍ୟାମ ଚିଠିରେ କିଛି ଲେଖା ହୋଇଛି । ହୁଏତ କୋଉ ପୀଡ଼ିତା, ପାଗଳୀ ମାଇକିନିଆ···

ହେଲା ଏବେ ସେ ମୋତେ ଭଲପାଏ, ସେଥିରେ ମୁଁ କଣ କରିବି ? ତେବେ ପଚିଶବର୍ଷ ବୟସର ପ୍ରବୀଣ ସାମ୍ବାଦିକ ସ୍ଥିର କଲେ ଯେ କୌଣସି ସମ୍ବାଦକୁ ହସି ଉଡ଼େଇ ଦେବାର ନୁହେଁ । ଏବଂ ତାଙ୍କର ଇଚ୍ଛା ହେଲା ସାମ୍ନାରେ ଗୋଟାଏ ଦର୍ପଣ ଥାଆନ୍ତା ସେ ନିଜ ଚେହେରାକୁ ଟିକିଏ ଦେଖି ନିଅନ୍ତେ । କେବଳ ତରୁଣ ତରୁଣୀଙ୍କ ଭିତରେ ଭଲ

ପାଇବା ଆସେ, ଏମିତି କୋଉଠି ଲେଖା ହୋଇ ନାହିଁ । ଅବା ନାକ ଆଖି ସୁନ୍ଦର ହୋଇଥିବା ଦରକାର, ଏମିତି କିଛି କଥା ନାହିଁ । ସେ କଣ ସ୍ୱାଦ ଫିକ୍କା ହୋଇଛୁ ? ରଜନୀବାବୁ ନିଜର ପ୍ରତିବିମ୍ବକୁ ସ୍ମରଣ କଲେ—ହୁଏତ ଗେଧେଲା ଚେହେରା, ଅମର ( ପତ୍ନୀର ଭାଇ ) ଥଟ୍ଟା କରି କୁହେ ଯେ ମୋର କୁଆଡେ ବେକ ନାହିଁ, ନାକ ଲମ୍ବା ହୋଇପାରେ କିନ୍ତୁ ତେଢ଼େଇ ହୋଇ ଉଠିଛି ଆକାଶକୁ ଖୋଞ୍ଚିଲା ପରି, ଭ୍ରୂଲତା ଜଙ୍ଗଲିଆ, ଗୃହାଣୀ ଅବଶ୍ୟ ଗମ୍ଭୀର କିନ୍ତୁ ନଦୀ, ପତ୍ନୀର ଭାଷାରେ କାହାର ସାଧ ନାହିଁ ସେଥିରେ ମୁହଁ ଦେଖି ପାରିବ । ପରିସ୍ଥିତି ଚପଳତା ପାଇଁ ଅନୁକୂଳ ନୁହେଁ, ତଥାପି ତାଙ୍କୁ ହସ ଲାଗିଲା । ବୁଝୁଛ ତ ଏଥର ? ସେଇ ନଦୀ କି ମରିବ ଗୃହାଣୀ ମଧ୍ୟ କିଭଳି ମାରାତ୍ମକ ହୋଇପାରେ ?

ରଜନୀବାବୁ ମନେ ପକାଇବାକୁ ଚେଷ୍ଟା କଲେ । କେବେ କେଉଁ ସାଂବାଦିକ ସମ୍ମେଳନ, ସାହିତ୍ୟ ସଭା ଅବା ପ୍ରଦର୍ଶନୀରେ ଜଣେ କେହି ମୁଗ୍ଧ ହୋଇ ତାଙ୍କର ଭାଷଣ ପିଇ ଯାଉଥିଲା, ଅନ୍ୟମାନଙ୍କ ଠାରୁ ଦୂରେଇ ଯାଇ ଅଟୋଗ୍ରାଫ୍ ମାଗିଥିଲା, ଅଜାଣତରେ ହାତକୁ ଛୁଇଁବାର ଚେଷ୍ଟା କରୁଥିଲା । ନରେକ କିସମର ଚଢ଼େଇ ଭିତରୁ କେଉଁ ଗୋଟିଏ ହୋଇଥିବ । ପିଲ୍ଲତା କାହିଁକି ହେବ, ହୋଇପାରେ ଟିକିଏ ଅଧିକ ଭାବକାତର, ଭାବପ୍ରବଣ···

ମୋଟ ଉପରେ ରଜନୀବାବୁ ଆତ୍ମଗୌରବରେ ଯତ୍‌ସାମାନ୍ୟ ଫୁଲି ଉଠୁଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ସେ ଗାରିମାକୁ ହେଳେଇ ଦେଇ ବ୍ୟାପାରଟାକୁ ଉପଭୋଗ କରିବାକୁ ଚାହୁଁଥିଲେ । ଖାଲି ପତ୍ନୀ ଯଦି ଏତେ ଗୁଡ଼ାଏ ସିରିୟସ୍ ନ ହୋଇ···

"ତମର ଲକ୍ଷେ ପ୍ରେମିକଙ୍କ ଭିତରୁ କୋଉ ଜଣକ ବୋଲି ଭାବୁଛ କି ? ଅଯଥାରେ ଗର୍ବ କର ନାହିଁ । ତମର ସେଇ ଗୋଟିଏ ପ୍ରେମିକା ମୁଁ ମୂଳରୁ ଜାଣିଛି । ତା'ର କାରଣ ବି ଜାଣିଛି ! ତା' ନାଆଁ ପ୍ରଭା । ସେ ଯେଉଁ ମୋଟୀ, ଗୋଲମୁହାଁ, ତମର କୋଉ ପିଲାଦିନିଆ ସାଙ୍ଗର ଠିକି ଭଉଣୀ । ମନେ ପଡ଼ୁଛି ?"

ଏତିକି କହି ପ୍ରତିଭା ଦେବୀ ଖେଳେଇ ହୋଇ ପଡ଼ିଥିବା କାଗଜପତ୍ରରୁ ଗୋଟାକୁ ମୁଠେଇ ଧରିଲେ । ନିଷ୍ଠୁର ଭାବରେ ଚପିଚାପି

ଧରିଲେ । ରଜନୀବାବୁ ଲକ୍ଷ୍ୟ କଲେ । ବୋଧହୁଏ ଭୃତୀୟ ନମ୍ବର ଦଳିଲ୍ । ଲଫାପା ଭିତରେ କେତେଖଣ୍ଡ ଫଟୋ, ସ୍ୱାଧୀନତା ଦିବସ ଉତ୍ସବର ତୋରଣ ଭିତରୁ ସପୃସାହେବ ଓ ଉପମନ୍ତ୍ରୀ ବାହାରି ଆସୁଛନ୍ତି, ହସାହସି ହୋଇ । ଫଟୋ ଗୁଡ଼ାକ ଗଲା ! ନା, ଯିବନାହିଁ···ମୋଡ଼ ମାଡ଼ ହେଲେ ବି ଛିଣ୍ଡିବ ନାହିଁ ସହଜେ···

ପ୍ରଭା । ହିଁ, ପ୍ରଭା । ମନେ ଅଛି ।

ଲଫାପାରୁ ହାତ ଗୁଡ଼ ହୋଇ ଗଲାଣି । ରକ୍ଷା !

ହସିଲେ ବିପଦ । କିନ୍ତୁ ପତ୍ନୀ ଶେଷକୁ ପ୍ରଭା ବିଷୟରେ କହିବ ବୋଲି କିଏ ଭାବିଥିଲା ? ଯେତେକ ଚଡ଼େଇ ଅଛନ୍ତି, ତାଙ୍କ ଭିତରେ ସବୁଠାରୁ କୁରୁଜା ବଦରଙ୍ଗ ଆ, ବୋକା । ଖାଲି ମାନିବାକୁ ପଡ଼ିବ ଯେ ସେ ନିତମ୍ବିନୀ ଓ ତା'ର ଦାନ୍ତଗୁଡ଼ିକ ଧଳା, ଚକଚକିଆ । ତା' ଛଡ଼ା ଯୌବନେ ମର୍କଟୀ ରମ୍ୟା । ସେତେବେଳକୁ ମୋତେ ତେଇଶ କି ଚବିଶ ବର୍ଷ । ନୂଆ ନୂଆ ସାମ୍ବାଦିକ ହୋଇଥିଲି । ଅର୍ଥାତ୍ "ଉଦୟ"ର ସମ୍ପାଦକ ଗୁରୁବାବୁଙ୍କ ପାଇଁ ଭଲ ଚୁଆପକା ଗୁଣ୍ଡି, ବିଶିଷ୍ଟ ଗୋଲାପ ଫୁଲର ଗୁଚ୍ଛ ଓ ଗଡ଼ଜାତ ଗୃହର ଚୋକା ଯୋଗାଡ଼ କରି ଦେଉଥିଲି । ଏବଂ ବେକାରିଆ ଦିନ ଶେଷରେ ମୋର ସହପାଠୀ ବିଧୁ, ପ୍ରଭାର, ଶାନ୍ତନୁ ଇତ୍ୟାଦିଙ୍କ କଥା ଭାବୁଥିଲି । କିଏ ଡେପୁଟି ହୋଇଛି, କିଏ ଲେକ୍‌ଚରର୍, କିଏ କଅଣ, ଆଉ ମୁଁ ଆମ କଂଗ୍ରେସିଆ ଧଡ଼ିଦାଦାଙ୍କ କଥାରେ ପଡ଼ି ଜର୍ଣ୍ଣାଲିଷ୍ଟ ହୋଇଛି—ଜର୍ଣ୍ଣାଲିଷ୍ଟ ନା ଗୈପା ! କହିଲେ କଣ ନା ମୋର ଲେଖା ଗୁରୁଗମ୍ଭୀର, ପ୍ରଖର ବୁଦ୍ଧି, ସ୍ୱାଧୀନଚେତାକୁ ( ଯେତେହେଲେ ସାମନ୍ତ ବଂଶର ପିଲା ) ସରକାର ଘରେ ବିକିବା ଅନୁଚିତ । ଏଣେ ପଛକେ ଖଣ୍ଡାନାସ୍ତି, ପାନ ସିଗାରେଟ୍ ପାଇଁ ପଇସା ନାହିଁ, ବାପାଙ୍କ ଅନୁଗ୍ରହରେ ଚଳିବାକୁ ପଡ଼ୁଛି । ଏପରି ଅବସ୍ଥାରେ ମୁଣ୍ଡ ବିଗିଡ଼ିଯିବା ସ୍ୱାଭାବିକ । ଭାବିଲି ଯାନେ ଦୋ, ମୁଁ ସୁଖ କରିବି, ଯୌବନ ଥିବା ଯାଏଁ ମଉଜ କରିବି, ସେଣିକି ଦେଖାଯିବ । ବାପା କହିଲେ ବାହା ହୋଇ ପଡ଼୍, ମୁଁ କହିଲି ହଉ । କନ୍ୟାଟି ସୁନ୍ଦର ପାଠୋଇ ବୋଲି କୁହା ଯାଉଛି । ତା' ସାଙ୍ଗରେ ବେଶ୍ ଜମେଇ ହେବ । ପତ୍ନୀ ମନାକରି ପାରିବ ନାହିଁ ଯେ ନୂଆ ବାହା ହେଲାପରେ ମୁଁ କେମିତି ରାତି ପରେ ରାତି, ଛୁଟିଦିନରା

ଉପରବେଳା ମଧ୍ୟ ବାଦ୍ ଯାଇ ନାହିଁ, ତା’ ସାଙ୍ଗରେ ଜମି ଯାଇଛି ମିଶି ଯାଇଛି । ତାର ଦେହକୁ ମନକୁ ଆନନ୍ଦରେ ଉଚ୍ଛୁଳେଇ ଦେଇଛି । ହୋଇପାରେ ସେଥିରେ ନିଜ ପ୍ରତି ଓ ଜୀବନ ପ୍ରତି କ୍ରୋଧ ଥିଲା । କିନ୍ତୁ ସେଥିରେ ତାର କିଛି କ୍ଷତି ହେଉଥିଲା କି ?

ସେଇ ସମୟରେ ମୋର ପିଲାଦିନଆ ଗାଁ ସ୍କୁଲର ସାଙ୍ଗ ଗଣେଶ ତାର ସାନଭଉଣୀ ପ୍ରଭାକୁ ନେଇ ଆମ ଘରେ ଆସି ପହଞ୍ଚିଲା । ସତର ବର୍ଷିଆ ପ୍ରଭା, ଯାହାର ରଙ୍ଗ ଗଢ଼ଣ ଯାହା ହେଉ ପଛେ ଯୌବନ ଫୁଟି ଫାଟି ପଡୁଥିଲା, ବକ୍ଷ ନିତମ୍ବ ଆଦି ଚ୍ୟାଲେଞ୍ଜ୍ କରୁଥିଲା···ମୋର ଉଦ୍‌ବୃତ୍ତ କ୍ରୋଧ ଏବଂ ଆନନ୍ଦକୁ ତା’ ଦେହରେ ଢ଼ାଳି ଦେଲି । ଶାନ୍ତି ନ ଆସିଲା ନାହିଁ, ତଥାପି ଢାଳିବାକୁ ଲାଗିଲି, ପରୁ ଜାଣି ପାରିଥିବ ବୋଲି ଅନୁମାନ କଲେ ମଧ୍ୟ ଅଟକିଲି ନାହିଁ । ସେ କଲେଜରେ ନାଆଁ ଲେଖେଇବାକୁ ଆସିଥିଲା, କିନ୍ତୁ ତାକୁ କିମ୍ବା ତା’ର ଭାଇକୁ ଆମ ସହରିଆ କାରବାର କଲେଜରେ ଟୋକା-ଟୋକୀ ମିଳାମିଶା ଭଲ ଲାଗିଲା ନାହିଁ । ସେମାନେ ଦି’ମାସ ଭିତରେ ଫେରିଗଲେ । ଗଣେଶ ଗମ୍ଭୀର ମୁଦ୍ରାରେ ଏବଂ ଫୁସ୍ ଫୁସ୍ ହୋଇ କହିଲା—ଚରିତ୍ର ! ପ୍ରଭା କେଡେ ସରଳିଆ ପିଲା ଦେଖୁଛୁ ତ, ଏଠି ତାର ଚରିତ୍ରକୁ ନଷ୍ଟ କରିଦେବେ ଏମାନେ । ମୁଁ ତା’କୁ ଫୁସ୍ ଫୁସ୍ ପ୍ରତ୍ୟୁତ୍ତର ଦେଇ ପାରିଲି ନାହିଁ ଯେ ହଁ, ମୁଁ ଜାଣିଛି । କିନ୍ତୁ ସତ କଥା କହିବାକୁ ଗଲେ ମୁଁ ଆଶ୍ୱସ୍ତି ହେଲି । କାରଣ ନିତମ୍ବିନୀର ଭାରିପଣ ଉଚିତରୁ ଅଧିକ ଭାରି ହୋଇ ଆସୁଛି ବୋଲି ମନେ ହେଉଥିଲା । ଏଣେ ସେ ତାର ଲାଜୁଆପଣ ଛାଡ଼ି ନୂଆ ନୂଆ ଗେହ୍ଲା କଥା କହିବାକୁ ଆରମ୍ଭ କରିଥିଲା । ହାୟ । ଆସି ପଚିଶ ବର୍ଷରୁ ଉର୍ଦ୍ଧ୍ୱ ହୋଇ ଗଲାଣି, ସେ କିଣ ସେଇ ଅବସ୍ଥାରେ ଅଛି ? ଶୁଣିଛି ସେ ଦକ୍ଷିଣରେ ବେଶ୍ ଥିଲାବାଲା ଘରେ ବାହା ହୋଇଛି, ତିନି ଗୃହିଣୀ ପିଲା, ପିଲାମାନେ ବଡ଼ ହୋଇ ଟିଣେଇ ଏଇ-କ୍ଷଣି···ତଥାପି । ପ୍ରେମ !

ଶେଷକୁ ରଜନୀବାବୁ ଉଚ୍ଚ ସ୍ୱରରେ ହସିବାକୁ ବାଧ୍ୟ ହେଲେ । ତଦ୍ୱାରା ସେ ପ୍ରେମ ନାମକ ବସ୍ତୁର ଛାତ୍ରୁ ଉଡ଼େଇ ଦେବାକୁ ଚାହିଁଲେ

ଅଥବା ପ୍ରତିଭାଦେବୀଙ୍କୁ ଆଦ୍ଧ୍ର ଚେଇଁର କେଉଁଠା କାଗଜ-ଲଫାପା ଖଣ୍ଡି ଖେଳେଇ ମୁଠେଇବାର ଦେଖି ଅତିଶୟ ନର୍ଭସ ହୋଇ ପଡ଼ିଥିଲେ କହି ହେବନାହିଁ ।

ତେବେ ରଜନୀବାବୁ ପୁଣି ସାମ୍ବାଦିକ ଧର୍ମକୁ ସ୍ମରଣ କଲେ । ଘଟଣାଟାକୁ ଭଲଭାବରେ ସମଝିବାକୁ ବସିଲେ । ହୋଇପାରେ ସେ ଯଟୁ ଭୁଲ ବୁଝିଛି । ତାର କଳ୍ପନା ଅମଡ଼ା ମାଡ଼ ଯାଇଛି । କିଂବା ସେ ମୋତେ ବଡ଼ବାକୁ ବସିଛି । ତେଣୁ ସେ ହସ ଉଭରୁ ସଳଖି ଗଲେ ଏବଂ ସୁପରିଚିତ ଠାଣିରେ ପ୍ରଶ୍ନ କଲେ—

"କଥାଟା ପରିଷ୍କାର ଭାବରେ କହିଲେ ଭଲ ହୁଅନ୍ତା ନାହିଁ ?"

ଉତ୍ତରରେ ପ୍ରତିଭା ଦେବୀ ତାଙ୍କ ବକ୍ଷ ଦେଶରୁ କାଗଜ ଖଣ୍ଡିଏ ଉଦ୍ଧାର କରି ଆଣିଲେ, ଏବଂ କହିଲେ, "ପରିଷ୍କାର କରିବା ଦରକାର ନାହିଁ । ଚିଠିଟିକୁ ଦେଉଛି ଶୁଣ ମାନେ ତୁମକୁ ନେଇ ଯାହା କୁହା ହୋଇଛି—"

ସେଇଠୁଁ ସେ ପଢ଼ିବାକୁ ଲାଗିଲେ ଏବଂ ମଝିରେ ମଝିରେ ଟିପ୍‌ପଣୀ ଦେଲେ ।

"ଭଉଣୀ (ମୋତେ ନୂଆବୋଉ ବୋଲି ଡାକୁଥିଲା, ଆଜି ଭଉଣୀ ହୋଇ ଗଲି କେମିତି ବୁଝିପାରୁ ନାହିଁ) ବହୁବର୍ଷ ପରେ ତୁମ ପାଖକୁ ଖଣ୍ଡେ ଚିଠି ଲେଖିବାର ସୁଯୋଗ ମିଳିଛି । ସେଥିପାଇଁ ମୁଁ ଭଗବାନଙ୍କୁ ଧନ୍ୟବାଦ ଦେଉଛି । କାହିଁକିନା କିଛିଦିନ ପରେ ମୁଁ ବୋଧହୁଏ ହାତରେ କଲମ ଧରି ପାରିବାର ଅବସ୍ଥାରେ ନ ଥିବି । ଇଏ ଯେତେ ଲୁଚେଇଲେ କଣ ହେବ ମୁଁ ଜାଣି ସାରିଛି । ଡାକ୍ତରଙ୍କ କଥାରୁ ବୁଝି ନେଇଛି । ଯେ ମୋ ଲିଭର୍ ଗଲାଣି ନଷ୍ଟ ହୋଇ, ତାକୁ ସୁଧାରି ହେବ ନାହିଁ । (କିନ୍ତୁ ପ୍ରକୃତରେ କଣ ହୋଇଛି କ୍ୟାନସର୍, ସିରୋସିସ ଅଫ ଦ' ଲିଭର୍ ନା କଅଣ, ସେ ବିଷୟରେ ଭଉଣୀ କିଛି ଲେଖି ନାହାନ୍ତି । ଲେଖିବେ କେମିତି ? ବିଦ୍ୟା ବୁଦ୍ଧି ଯେତିକି ସେଥିରୁ ଆଉ କଣ ଆଶା କରାଯାଏ ? ସେଇଠୁଁ ତାଙ୍କ ପିଲାମାନେ କଣ କରୁଛନ୍ତି, କେଉଁଠି ଅଛନ୍ତି, ପୁଅ ମ୍ୟାଥେମେଟିକ୍‌ସରେ ଜିନିୟସ, ସାନଝିଅ, ନୃତ୍ୟ ସଙ୍ଗୀତରେ

ମେଡ଼ାଲ ପାଇଛୁ । ତାଙ୍କର ଏଇ ନୂଆ ଘରଟା ଖୁବ ବଢ଼ିଆ, ଆଖି ସାମନାରେ ପାହାଡ଼ ଜଙ୍ଗଲ, ମୋତେ କୁଆଡେ ଖୁବ ଭଲ ଲାଗିବ ଇତ୍ୟାଦି ଯାବତୀୟ ଗୌଣପାଛଡ଼ା କଥା—ଗୁଡ଼—ସବା ଶେଷକୁ ଅସଲ ପାରାଗ୍ରାଫ ମନ ଦେଇ ଶୁଣ। ରାଗିବ ନାହିଁ ଭଉଣୀ, ମୋର ଗୋଟିଏ ଅନୁରୋଧ ରକ୍ଷା କରିବ—"

ସନ୍ଦେହ ନାହିଁ ଯେ ରଜନୀବାବୁ ମନ ଦେଇ ଶୁଣୁଥିଲେ । ଅଳ୍ପ ବହୁତ ଖୁସି ହୋଇ ଆସୁଥିଲେ ଯେ ସ୍ୱଗତ ଅଶୀତର ହୃଣ୍ଠୀ ପ୍ରଭା ତା'ର ଏ ଚିଠିରେ ଯଥେଷ୍ଟ ପ୍ରମାଣ ଦେଇଛୁ, ପରୁ ମଧ୍ୟ ବୁଝି ନେଇଛୁ, ଯେ ସେ ସେମିତି ହୃଣ୍ଠୀ ହୋଇ ଅଛୁ । ତା' ଛଡ଼ା ରୋଗବଇରାଗରେ ପଡ଼ି ବାଉଳା ଧରିଛୁ । ତେଣୁ ତା'ର କଥାରେ ମୂଲ୍ୟ ଦେବା ଉଚିତ ହେବ ନାହିଁ । ପରୁକୁ ଏହି ମର୍ମରେ ମନେଇ ଦେଇ ହେବ ।

"ମୁଁ ତୁମ ବାବୁଙ୍କ ପାଖକୁ ନ ଲେଖି ତୁମ ପାଖକୁ ଲେଖୁଛୁ, କାହିଁକିନା ଏଥିରେ କିଛି ଲୁଚ୍ଚାଚୋରି ନାହିଁ । ତାଙ୍କ ପ୍ରତି ମୋର ଗଭୀର ଭଲ ପାଇବା ଓ ଶ୍ରଦ୍ଧା ପଚିଶ ବର୍ଷ ତଳେ ଥିଲା, ଆଜି ମଧ୍ୟ ଅଛୁ, ସବୁ ଦିନେ ରହିଛି. ଏଥିରେ ଲଜ୍ଜିତ ହେବାର କିଛି ନାହିଁ—"

ଏଁ ?? ଗଭୀର ଭଲ ପାଇବା ଓ ଶ୍ରଦ୍ଧା ? ଏମିତିକା ଭାଷା ଶିଖିଲା କେଉଁଠୁ ? ଆଜିକାର ଗଳ୍ପ ଉପନ୍ୟାସରେ ମଧ୍ୟ ଏଭଳି ଭାଷା ଦେଖିବାକୁ ମିଳେ ନାହିଁ । ରଜନୀବାବୁ ଚକିତ ହେଲେ, ପ୍ରମାଦ ଗଣିଲେ । ପରୁକୁ ବୁଝେଇ ହେବ ତ ? ଯେ ମୋଟି ଏ ଶବ୍ଦ ଗୁଡ଼ା-କର ମାନେ ଜାଣି ନାହିଁ ? କୋଉ ସୁ ରୁଣାକାଳିଆ ବହିରେ ପଢ଼ିଛି, ସେଇଆକୁ ଦୋହରେଉଛି ?

ନା-ନା-ସେଥିରେ କିଛି ଲାଭ ହେବ ନାହିଁ । ପରୁ କହିବ ଭଲ ପାଇବାର ମାନେ କଅଣ ସମସ୍ତେ ଜାଣନ୍ତି । ନା, ମୋତେ ସାଫ୍ ସାଫ୍ କହି ଦେବାକୁ ପଡ଼ିବ ।

କହିବ ଯେ ତା ମନରେ ଯାହା ଥାଉ, ମୋର ତା' ସାଙ୍ଗରେ କିଛି ସଂପର୍କ ନଥିଲା ।

ନ ହେଲେ କହିଦେବ, ସେଣିକ ଦେଖାଯିବ, ଯେ କେବଳ ସେକ୍ସ, ନଗ୍ନେଲା ସେକ୍ସ, ପିଲାଳିଆ ସେକ୍ସ ଛଡ଼ା ଆଉ କିଛି ନଥିଲା ଆମ ଭିତରେ ।

ନା, କହି ହେବ ନାହିଁ । ସେକ୍ସରୁ ଭଲ ପାଇବା । ଭଲ ପାଇବାର ସେକ୍ସ । ପଣ୍ଡିତମାନଙ୍କର ମତ । ପତ୍ରୁ ମୋତେ ବିଶ୍ୱାସ କରିବ ନାହିଁ । ମୁରୁକି ମୁରୁକି ହସିବ ।

ଡ୍ୟାମ୍ଇଟ ! କହିଲେ କହିବ, ଘୋଷଣା କରିବ ଯେ ପତ୍ରୁ ଶୁଣ, ବାଜେ କଥା ଛାଡ଼ । ମୁଁ ଖାଲି ତୁମକୁ ଭଲ ପାଏ । ଖାଲି ତୁମକୁ । ଆଉ କାହାକୁ ନୁହେଁ, ମୁଁ ସତ କହୁଛି—

"ମୁଁ ସ୍ବାଙ୍କୁ ମଧ୍ୟ ଜଣେଇ ଦେଇଛି । ଆଉ ତୁମକୁ ଲେଖୁଛି । ଯେମିତିକି ସନ୍ଦେହର କାରଣ ନ ଥିବ । ମୁଁ କେବଳ ଏତିକି ଚାହେଁ ଯେ ମଲା ପୂର୍ବରୁ ତାଙ୍କୁ ଥରେ ଦେଖି ପାରିବ । ଭଞ୍ଜନଗର ଏମିତି କୋଉ ଦୂର ବାଟ କି ? ଘଣ୍ଟାଏ ରହି ଚାଲିଯିବେ, ଖାଲି ମୋ ପାଖରେ ଟିକିଏ ବସିବେ, ଆଉ ମୋ କପାଳରେ ହାତ ବୁଲେଇ ଆଣିବେ । (ଗଲେ ଯିବା ଆସିବା ଖର୍ଚ୍ଚ ମାଗି ଆଣିବ, —ବୁଝିଲ ?) ମୋତେ ହତାଶ କରିବ ନାହିଁ । ମୋର ପ୍ରଣାମ ନେବ । ତୁମର ଦୁଃଖିନୀ ଭଉଣୀ ପ୍ରଭା ।"

ସରିଗଲା । ଚିଠି ଯଥାସ୍ଥାନକୁ ଫେରିଗଲା ଏବଂ ପ୍ରତିଭା ଦେବୀଙ୍କ ହାତ ପୁଣି ଟେବୁଲର କାଗଜପତ୍ର ଗହଣରେ ହାଜର ହେଲା । ତତ୍ସହ ଗୋଟାଏ ଦୀର୍ଘଶ୍ୱାସ ଶବ୍ଦାୟିତ ହେଲା ।

ଏତେବଡ଼ ପୂର୍ଣ୍ଣଚ୍ଛେଦ ପାଇଁ ରଜନୀବାବୁ ପ୍ରସ୍ତୁତ ନ ଥିଲେ । ମନେ ହେଉଥିଲା ଚିଠି ସରିବ ନାହିଁ । ପତ୍ରୁକୁ ଉତ୍ତର ଦେବାର ଦାୟିତ୍ୱ ଘୁଞ୍ଚି ଘୁଞ୍ଚି ଯିବ କୌଣସି ଗୋଟାଏ ମୁହୂର୍ତ୍ତକୁ, ଯେତେବେଳେ ନିଜ ଉପରେ ଅକ୍ତିଆର ନଥିବ । ଆକାଶ ପୃଥିବୀ ଏମିତି କଳା ହାଣ୍ଡିଆ ହୋଇ ଆସିଥିବ, ମେଘ ଅଜାଡ଼ି କଚଡ଼ି ହୋଇ ପଡ଼ୁଥିବ, ଭୂଇଁ ଦୁଲୁକୁଥିବ ଯେ କ୍ଲାଇମାକ୍ସ ଆପେ ଆପେ ଗଢ଼ି ହୋଇଯିବ । ଭୟରେ । ଜୀବନମରଣର ଦାଢ଼ରେ ।

କିନ୍ତୁ ସେମିତି ହେଲା ନାହିଁ ତ ? ସେଇ ନିତିଦିନିଆ ସାଧାରଣ ସକାଳ । ସୂର୍ଯ୍ୟ କିରଣ ଯେଉଁ ବାଟେ ଆସୁଥିଲା ସେଇ ବାଟେ ଆସୁଛି, ଏବଂ ତା'ର ଧୂଆଁ ଧାରରେ ବୋଧହୁଏ ସେତିକି ଧୂଳି । ଗ୍ରେଷେଇ ଘରୁ ମସଲା ବଟାର ଶବ୍ଦ । ଠୁଗୁ ଠୁଗିଆ ବିରକ୍ତି, ବଉଁବାସ୍ନା ନ ଆସିବା ଯାଏଁ । ପଡ଼ଶାଘର ସାମନାରେ ସ୍କୁଲବସର ଅସମ୍ଭାଳ ପେଁ-ପେଁ । ଘୋରତର ବିରକ୍ତି । ସେଇ ସବୁଦିନିଆ କାରବାର । ଏବଂ ସେଇ ପଢ଼ାଘର । ମୁଁ ମୋର ବସି ଲେଖାଲେଖି କରୁଛି ଓ ପତ୍ନୀ ମୋ ପାଖରେ ଠିଆ ହୋଇ ରହିଛି, କଣ ଏଣୁତେଣୁ କହୁଛି ଯାହାର ଅଳ୍ପବହୁତ ଉତ୍ତର ଦେଇ ଦେଲେ ଯାଏ । କୋଉ ଚଢ଼େଇ ଗୋଟାକ ଫିଟରେଇ ହେଉଛି । ମୁଁ କହିବି—ଡାହୁକ ! ସେ ହସି କରି କହିବ—ହଁ୍ୟାଇ୍ ଡାହୁକ ଦେଖିଛ କେବେ ? ମୁଁ କହିବି—ତମେ କଣ ଚଢେଇମାନଙ୍କ ବିଷୟରେ ବେଶି ଜାଣିଛ ମୋଠୁ ? ମୁଁ ଚଢ଼େଇ ଶବ୍ଦ କେଉଁ ଅର୍ଥରେ ବ୍ୟବହାର କଲି ବିଲ୍କୁଲ ବୁଝି ପାରିବ ନାହିଁ । ସେଇ ସୁସ୍ଥ, ଘରୋଇ, ସାମାନ୍ୟ ଉତ୍ତେଜନା, ଉଦ୍ୟମ, ଏବଂ ବିରକ୍ତିର ସକାଳ । ପ୍ରଭେଦ ଭିତରେ ଏତିକି ଯେ ମୁଁ ଗୋଟାଏ ନୂତନ ସ୍ତମ୍ଭ ଲେଖିବାକୁ ଯାଉଛି, ଯାହା ବିଶେଷ ଭାବରେ ନୂତନ—

ଏଭଳି ପରିବେଶରେ ଏତେ ବଡ଼ ଘଟଣାର ପ୍ରଶ୍ନୋତ୍ତର ଯୋଖିବି କେମିତି ? ରଜନୀବାବୁଙ୍କର ଭାବିବାକୁ ମନ ହେଲା ଯେ ପତ୍ନୀ ଯେଉଁ ଚିଠି ଖଣ୍ଡିକ ପଢ଼ି ଶୁଣେଇଲା ସେ କେଉଁ ନାୟିକାର ଚିଠି । ପତ୍ନୀ ତାର ବିଶେଷ ବୁଦ୍ଧିବାଧା ସ୍ୱାମୀକୁ ପଚାରୁଛି ଯେ ନାୟକ ଏଇ ଅବସ୍ଥାରେ କଣ କରିବ । ଭାବିବାକୁ ମନ ହେଲା । କିନ୍ତୁ ମୁହୂର୍ତ୍ତରୁ ମୁହୂର୍ତ୍ତ ବଢ଼ିବାକୁ ଲାଗିଲା ।

ପ୍ରଭା ବୋଲି ଗୋଟିଏ ସ୍ତ୍ରୀ ଥିଲା । ଅଛି । କାଲି କଲମରେ ଲେଖିଛି ସେ ମୋତେ ଏତେ ଭଲ ପାଏ ଯେ—ଏତେ ମୂର୍ଖ ଦୁଃସାହସୀ ମାଇକିନିଆ (ସେ କଣ ସତରେ ମରିବାକୁ ବସିଛି ?)—ଲେଖିଛି ତ ଲେଖିଛି ମୁଁ କଣ କରିବ ? ମୋତେ କଣ ପଚାରି କରି ଲେଖିଥିଲା ? ମରୁ ସେ ( ସେ କଣ ସତରେ ମରିବାକୁ ବସିଛି ? ) ଭଲ ପାଇବା ବିଷୟରେ ସେ କଣ ଜାଣେ ? ମୋ ସାଙ୍ଗରେ ସେଇ କେତେ ଦିନ

କେଳି କରିଥିଲି, ମୁଁ ତାକୁ ହୁଏତ କେତେଟା ମିଠାମିଠା କଥା କହିଥିଲି, ସେଇ ହେଲା ଭଲ ପାଇବା ? ବୋକା କୋଉଠିକାର ! (କିନ୍ତୁ ସେ କଣ ସତରେ ମରିବାକୁ ବସିଛି ? ମୋତେ ଥରେ ନ ଦେଖିଲେ ତା'ର ଆତ୍ମା ଶାନ୍ତ ହେବନାହିଁ ?)

ଏଣେ ମୋ ନିଜ ସ୍ତ୍ରୀ, ବାସ୍ତବ ବର୍ତ୍ତମାନ ସ୍ତ୍ରୀ ଅନେଇ ରହିଛି । ଆଖି ଦି'ଟା ଏତେ ସଫା ହୋଇ ନ ଥିଲେ ଚଳି ନ ଥାଆନ୍ତା ?

ଓଃ ତମେ ମୋର ସ୍ତ୍ରୀ ନା ମହାଜନର ପିଆଦା ?

ଧର ସେ ବୋକୀ ବେମାରିଆ ମାଇପିଟାକୁ ଦେଖି ଆସିବ ଯାଇ । କେବଳ ମାନବିକତା ଦୃଷ୍ଟିରୁ, କାଳେ ସେ ସତରେ ମରିଫରି ଯିବ । ସେଥିରେ କଣ ଆମ ଭଲ ପାଇବାରେ ଆଞ୍ଚ ଲାଗିବ ? ତମର ପାଠ-ଶାଠ କୁଆଡ଼େ ଗଲା ? ହୁଁ, ଅଯଥାରେ ଚଣ୍ଡୀରୂପ ଧରିଛ । ହିଂସି-କୁଟିଆ କଥା ଗୁଡ଼ାଏ କହୁଛ । ଆଉ ନର୍ମଳ ଆଖି ଦି'ଟା ପାଇଛ ବୋଲି ଭୁଲ୍ଲାଟାକୁ—

ଯାହା ହେଉ ରଜନୀବାବୁ ପ୍ରତିଭା ଦେବୀଙ୍କ ମୁହଁକୁ ଅନେଇବାର ସାହସ କଲେ । କ୍ଷଣକ ପାଇଁ ।

ସେଇଠୁଁ ସେ ଦୃଷ୍ଟିକୁ ନୁଆଁଇଲେ ଏବଂ ଧୀରେ ଧୀରେ ହାତ ବଢ଼ାଇଲେ । ଟେବୁଲ୍ ଉପରେ ବସା ବାନ୍ଧିଥିବା ପତ୍ନୀଙ୍କ ହାତ, ହାତର ପାପୁଲି, ଯାହା ତଳେ କାଗଜ ଖଣ୍ଡେ ଅଦ୍ୟାବଧି ମୋଡ଼ିକୋଡ଼ି ହୋଇ ରହିଛି ବୋଲି ଦିଶି ଯାଉଛି, ତା'କୁ ଖୋଜିଲା ପରି ହେଲେ । ଛୁଇଁଲେ । ପତ୍ନୀ ହାତ ଘୁଞ୍ଚେଇ ନେଇ ନାହିଁ । ରଜନୀବାବୁ ଉତ୍ସାହିତ ହେଲେ । ଛୁଇଁ ଛୁଇଁ ଥାପିଲେ । ଆଉଁଶିଲେ । ଆଉଁସିବାର ଉପକ୍ରମ କଲେ ।

ଏହା ପରେ ରଜନୀବାବୁ ଅସ୍ଫୁଟ ସ୍ୱରରେ ଯାହା କହିଲେ ତା'କୁ ଉଦ୍ଧାର କଲେ ବିଶେଷ ଲାଭ ହେବ ନାହିଁ । କାରଣ ସେ କେବଳ ଦି'ତିନିଟା ପଦ ଦୋହରେଉଥିଲେ । ତମେ ଭୁଲ୍ ବୁଝିଛ···ମୋତେ ବିଶ୍ୱାସ କର···ତମେ କଣ ମୋତେ ଜାଣି ନାହଁ ଆଜି ଯାଏଁ ? ଇତ୍ୟାଦି । କିନ୍ତୁ ତାଙ୍କର ଅକୁହା ଆବେଦନ ଥିଲା ଏହି ପ୍ରକାର—

ପଞ୍ଜୁ, ତମେ କଣ ସାଧାରଣ ବାଳକା ସେଇ ପ୍ରଶ୍ନ ପର ନା ଆଉ କାହା ପର ? ତମେ ମୋର ପତ୍ନୀ । ମୋର ପତ୍ନୀ । ଷ୍ଟୋଟ ନାକ, ଧଳା-କଳା ଆଖି, ଶ୍ୟାମ ବର୍ଣ୍ଣ, ସ୍ନିଗ୍ଧ ତନୁ । କାନ ମୂଳରେ ଘାଉଡ଼ । ଷ୍ଟୋଟ ନାକ ପ୍ରେମରେ କଉଡ଼ିକିଆ କୁନୁମୁନିଆ ହୋଇ କୁଞ୍ଚେଇ ଯାଏ, ପୁଣି ରାଗରେ ଫୁଲ ଉଠେ ବେଳେ ବେଳେ, ବେଙ୍ଗ ପେଟ ପରି ଅସନା ଦେଖାଯାଏ । କାଉରଗର ଆଖି ଦେଖା ପରି ଆଖି ଫୋଡ଼ିହଏ, ପୁଣି ଅଜାଡ଼ି ହଏ । ଏବଂ ସେ କଳା ଘାଉଡ଼ିକୁ ମଧ୍ୟ ମୁଁ ହନେ କେବେ ଦୂର ଅନ୍ଧାରରେ ଚୁମା ଦେଇ ଥିଲି ମନେ ଅଛି ? କିନ୍ତୁ ସବୁ ମିଶି ସେଇ ଜଣକ । ଜୀବନକୁ ଲାଗି ରହିଛି, ବାନ୍ଧି ରଖିଛି । ପୃଥିବୀକୁ ସେଇ ଗୋଟିଏ ଜହ୍ନ । ଠେକୁଆ-ଚହ୍ନିତ । ତମେ ମୋତେ ବଢ଼ିବାର ଦେଖିଛ, ବୁଢ଼ିବାର ଦେଖିଛ, ଲୁଚେଇ ଲୁଚେଇ କାନ୍ଦିବାର ପୁଣି ପାଗଳଙ୍କ ପରି ନାଚିବାର ଦେଖିଛ । ମୁଁ ବି ସେମିତି ଦେଖିଛି ତୁମକୁ, କେତେ ରୂପରେ । ଏଇ ଚଣ୍ଡୀରୂପ ଛଡ଼ା ଆଉ କେତେ ରୂପ । ରାଗରେ ହାଂସିକୁଟିଆ କଥା କୁହ ସିନା, ରତିକ୍ରୀଡ଼ାରେ ମିଠା ଅବା ଆଇଁଷିଣିଆ କଥା, ଏବଂ ହଠାତ୍ କେଉଁ ସୁନେଲି ସନ୍ଧ୍ୟା ସକାଳରେ କବି ପାଲଟି ଯାଅ । ମୁଁ ତୁମକୁ ଦରମବା ଝିଟିପିଟିକୁ ଖେଞ୍ଚି ଖେଞ୍ଚି ମାରି ଦେବାର ଦେଖିଛି, ପୁଣି ଦେଖିଛି ତମେ କେମିତି ଦୟାରେ ତରଳି ଯାଇ ଅପରିଚ୍ଛନିଆ ମେହେନ୍ତରାଣୀ ଝିଅକୁ ଦାମୀ ଦାମୀ ଶାଢ଼ୀ ଦାନ କରିଛ, କ'ଣ ନା ସେଗୁଡ଼ା ପୁରୁଣା । ମୋଟ ଉପରେ କଥା ହେଲା ଯେ ଆମେ ଦୁଇଜଣ ଦୀର୍ଘ ପଚିଶ ବର୍ଷ ଭିତରେ କ୍ରମଶଃ ଲଙ୍ଗଳା ହୋଇ ଗଲୁଣି ପରସ୍ପର ଆଗରେ । ଆଉ କିଛି ବାକି ଅଛି କି ? ଏଇ ହେଉଛି ସ୍ୱାମୀ-ପଣ । ପତ୍ନୀ ଗୁଣ । ସଂପୂର୍ଣ୍ଣ ଦେଖାଦେଖି, ଜଣାଜଣି ଏବଂ କୁଣ୍ଢାକୁଣ୍ଢି ।

ଏମିତି କୁଣ୍ଢା କୁଣ୍ଢି ପରେ ମୁହାଁ ମୁହିଁ କାହିଁକି ? ଅକାରଣ ପ୍ରଶ୍ନ ଉତ୍ତର—ପଞ୍ଜୁ, କଣ ବୁଝୁଛ ମୁଁ କଣ କହୁଛି ?

ରଜନୀ ବାବୁଙ୍କର ମନେ ହେଲା ଯେ ସେ କହିବା ପାଇଁ କିଛି ନାହାନ୍ତି, ଇଏ ଯୁକ୍ତି ନୁହେଁ, ସତ । ସତ ହେବା ଉଚିତ । ଭଲ ପାଇବା ଏମିତି କିଛି ଗଣ୍ଡଗୋଳିଆ ଜିନିଷ ନୁହେଁ । ଏଇ ହେଉଛି ତା'ର ଶେଷ କଥା ।

ଅଦ୍ଭୁତ ଆତ୍ମବିଶ୍ୱାସରେ ସେ ମୁଣ୍ଡ ଟେକିଲେ ସିଧା ସଳଖ ପ୍ରତିଭା ଦେବୀଙ୍କ ମୁହଁକୁ ଅନେଇଲେ ଏବଂ ନିବେଦିଲେ । ଏଇ ମୋର ପଚିଶ ବର୍ଷିଆ, କହିବାକୁ ଗଲେ ସବୁଦିନିଆ ଦର୍ଶନ, ଆସ୍ତରଣ, ଶଯ୍ୟା, କାନ (ରାଗବେଳେ ଗଜାର ଦଉଡି ବୋଲି ମନେ ହୁଏ, ସେ କଥା ଭିନ୍ନ) ଯାହାକୁ ମୁଁ ଅବଶ୍ୟ ଭଲ ପାଏ, ଭଲ ପାଇବା ଉଚିତ···କାହିଁକିନା ଏଇ ଚିରନ୍ତନ, ସର୍ବସମସ୍ତ । ଏଥିରେ ସ୍ୱପ୍ନ ଅଛି, ସେକ୍‌ସ ଅଛି, ଅର୍ଥାତ୍ ସରସୀ ଦେବୀ ଅଛନ୍ତି, ପ୍ରଭା ଅଛି ।

ଦେଖୁ ନା, ଦେଖ ମୋର ଏଇ ସ୍ତମ୍ଭ । ସରସୀ ଦେବୀଙ୍କୁ କେମିତି କତଲ କରିବାକୁ ଯାଉଛି । ପ୍ରଭାକୁ ମଧ୍ୟ ସେମିତି ମାରିଦେବି । ମାତ୍ର ପାଇଁ, ପତ୍ନୀ ପାଇଁ ।

ରଜନୀବାବୁ କଣ ଉତ୍ତେଜନା ବଶତଃ ପ୍ରତିଭାଙ୍କ ହାତକୁ ଟିକିଏ ବେଶୀ ଜୋର୍‌ରେ ଚିପି ଦେଲେ ? ଯାହା ହେଉ ପ୍ରତିଭା ଦେବୀ ତନ୍‌କିନା ହାତ କାଢ଼ି ଆଣିଲେ ଓ ମୁଠେଇଥିବା କାଗଜକୁ ବାହାର କଲେ । ତାକୁ ଚିରେଇ ଚିରେଇ ଚିରିଲେ । ଗଡ଼ କାଟିଲା ପରି ଦୁଇ ଖଣ୍ଡ କଲେ । ଦୁଇ ଖଣ୍ଡରୁ ଚାରି ଖଣ୍ଡ । ଚାରି ଖଣ୍ଡରୁ—

'ହେ, ହେଇ କଣ କରୁଛ ?' ବୋଲି ପାଟି କରି ଉଠିଲା ବେଳକୁ କାଗଜଟିର ପ୍ରାଣ ବାହାରି ଗଲାଣି । ପାଲିସ ମୋଟାଳିଆ କାଗଜ । ବୋଧହୁଏ କେଉଁ ଦଲିଲ୍‌ର ଫଟୋଷ୍ଟାଟ୍ କପି । ରଜନୀବାବୁଙ୍କ ଅନ୍ତରାତ୍ମା କିପରି ଭାବରେ କାନ୍ଦି ଉଠିଲା ତା'ର ସୂଚନା ଦେବା ଅନାବଶ୍ୟକ ।

କିନ୍ତୁ ରଜନୀବାବୁଙ୍କୁ ପ୍ରଶଂସା କରିବାକୁ ହେବ ଯେ ସେ ପ୍ରତିଭାଙ୍କ ଉପରକୁ ଝାମ୍ପ ଦେଲେନାହିଁ, କିମ୍ବା ହାତଗୋଡ଼ କଚାଡ଼ିଲେ ନାହିଁ । ବରଂ ସେ ଯେତେବେଳେ ଜାଣି ପାରିଲେ (ନିରେଖି ଚାହିଁଲରୁ) ଯେ ଛିନ୍ନ ପତ୍ର “ବୈତରଣୀ” ଫାକ୍ଟରୀର ଏକତମ ଭାଉଚର୍‌ର କପି, ତା'ର ବଣ୍ଟା କପି କରା ହୋଇଛି, ବ୍ରିଫ୍ କେସରେ ଥିବ, ସେ ପ୍ରତିଭା ଦେବୀଙ୍କୁ ଏକ ମଧୁର ସ୍ମିତ ହାସର ଭେଟି ଦେଲେ—

ତମେ ହଜାରେ କାଗଜ ଫାଡ଼ି ଦେଲେ କଣ ହେବ, ତୁମେ ଆମ ଭଲ ପାଇବାକୁ ଛିଣ୍ଡେଇ ପାରିବ ନାହିଁ ।



# ସୁଡ଼ଙ୍ଗ

"ମୁଁ ସେମାନଙ୍କୁ କଣ ଜବାବ ଦେବି ? କୋଉ ମୁହଁରେ କହିବି ଯେ ଏଇ ସାମାନ୍ୟ କାମଟା ବି' ଏପର୍ଯ୍ୟନ୍ତ ହୋଇ ପାରିଲା ନାହିଁ ?"

ପ୍ରବୀଣ ଚେୟାରମ୍ୟାନ୍ କୁପ୍ପୁସ୍ୱାମୀ ଜଣ ଜଣ କରି ସଭାସୀନ, ଇଞ୍ଜିନିୟର, ଆକାଉଣ୍ଟସ୍ ଅଫିସର୍, କିରାଣୀ ଏବଂ କଣ୍ଟ୍ରାକ୍ଟର୍‌ମାନଙ୍କୁ ଅନେଇଲେ । ଚିକ୍‌କଣ ସାବନା ମୁହଁରେ ସରୁ ଓଠ ଥରି ଉଠୁଥିଲା । କମ୍ପନକୁ ସମ୍ଭାଳି ନେଲା ପରେ ସେ ରୁମାଲ୍ ଖଣ୍ଡେ ବାହାର କରି ମୁହଁ ପୋଛି ନେଲେ । ହେଲେ ଚାହାଣୀର ଟର୍ଚ୍ଚ ଲାଇଟ୍‌କୁ ଲିଭେଇଲେ ନାହିଁ । ଯେମିତିକି ଏଥର ସେମାନଙ୍କଠାରୁ କିଛି ଆଦାୟ ନ କରି ଛାଡ଼ିବେ ନାହିଁ । ଭୁଙ୍ଗା ମାରିବାରେ ପେଟ ପୂରିବ ନାହିଁ । ଦରକାର ଲଜ୍ଜା, କ୍ଷୋଭ ଗ୍ଳାନିର ଅଙ୍ଗୀକାର, ସୁଦୃଶ୍ୟ ମୁହଁପୋତା, ସେଇଠୁଁ ଡରି ଡରି ପଦୁଟିଏ କଥା, ଯାହାକୁ ସେ ପ୍ରତିଶ୍ରୁତି ବୋଲି ମାନି ନେଇ ପାରନ୍ତି ।

ଜୟନ୍ତ ରଥ ଉପରେ ଟର୍ଚ୍ଚ ଲାଇଟ୍ ପଡ଼ିଲା । କିନ୍ତୁ ସେ ତା'କୁ ଗ୍ରହଣ କରିବାକୁ ଚାହିଁଲା ନାହିଁ । ହୋଇପାରେ ଯେ ଚେୟାରମ୍ୟାନ୍ ସାହେବ ମୋତେ ଭଲ ପାଆନ୍ତି, କିନ୍ତୁ ମୁଁ ଯେତେହେଲେ ଜଣେ ଜୁନିଅର ଅଫିସର୍ । ହାତବାରିଶି । ସୁଡଙ୍ଗ ନେଇ କେଉଁ ବିଶେଷ ଦାୟିତ୍ୱ ମୋ ଉପରେ ଲଦି ଦିଆ ହୋଇନାହିଁ ଯେ ମୁଁ ତାଙ୍କ ଚାହାଣୀରେ ଝାଉଁଳି ଯିବି । ଦେଖେଇଦେବି ଯେ ମୁଁ ମଧ୍ୟ ସେଥିରେ ଜଡ଼ିତ, ବ୍ୟଥିତ । ହୁଁଃ ! ଶିଳ ଶିଳପୁଆ ଗଗନେ ଉଡ଼ୁଛି···ଆରେ, ସାର୍ ମୋରି ଆଡ଼କୁ ଏତେ ସମୟ ଅନେଇ ରହିଛନ୍ତି କାହିଁକି ?

ଜୟନ୍ତ ଅପ୍ରତିଭ ହେଲେ ମଧ୍ୟ ପୁଲକିତ ହୋଇ ଆସୁଥିଲା । ଭାବିଲା ଯେ ସୁଡଙ୍ଗ ସାଙ୍ଗରେ ମୋର ପ୍ରତ୍ୟକ୍ଷ ସମ୍ପର୍କ ନ ଥାଇ ପାରେ, ତଥାପି ସାର୍ ମୋଠାରୁ କିଛି ଆଶା କରନ୍ତି । ମୁଁ ଯେତେ ଜୁନିଅର୍ ହୁଏ ପଛେ ସାର୍ ମୋତେ ଛାଡ଼ିବେ ନାହିଁ । ମଲା ମଣିଷ !···

କିନ୍ତୁ ସେ ଏକାଧାରରେ ଆଶ୍ବସ୍ତ ତଥା ନିରାଶ ହେଲି ଯେ ସାର୍ ଅବିଳମ୍ବେ ତା'ଙ୍କୁ ଛାଡ଼ିଦେଇ ପାଖରେ ବସିଥିବା ବାନର୍ଜି ସାହେବଙ୍କୁ ଧରିଲେଣି । ପ୍ରଶ୍ନ ମଧ୍ୟ ପଚାରୁଛନ୍ତି । ଏବଂ ବାନର୍ଜି ସାହେବ ତାଙ୍କ ଚଶମାକୁ ସଳଖେଇ ଧୀରେ ସୁସ୍ଥେ ଉତ୍ତର ଦେବାକୁ ଲାଗିଲେଣି । ମନେ ହେଉଛି ସାର୍ଙ୍କର ପ୍ରକୃତରେ ତାଙ୍କରି ପାଖରେ କାମ ଥିଲା । ସେଇଠି ପ୍ରଶ୍ନୋତ୍ତର ଜମିବାକୁ ଥିଲା । ହେଲେ ତା' ପୂର୍ବରୁ ଗୃହାଣୀ ଟିକିଏ ଅଟକିଗଲା ମୋ ପାଖରେ, ବିଶ୍ରାମ ନେଲା, ସଜ ହେଲା । ସତେକି ମୁଁ ଅନ୍ୟତମ ଅଫିସର୍ ନୁହେଁ, ସାଦା କାନ୍ଥ, ଖୁଣ୍ଟ, କ୍ୟାଲେଣ୍ଡର୍, ପେପର୍-ୱେଟ୍ ! ଠିକ୍ ଅଛି, ମୁଁ ସେଇଆ ହୁହେଁ । ମୁଁ ଏଠି ତମ ମିଟିଙ୍ଗ୍ରେ ଯୋଗ ଦେବାପାଇଁ ଆସି ନାହିଁ । ମୁଁ ପାହାଡ଼ ଜଙ୍ଗଲର ଦୃଶ୍ୟ ଦେଖିବା ପାଇଁ ଆସିଛି । ଶୃଙ୍ଗ ପରେ ଶୃଙ୍ଗ, ଶୃଙ୍ଗ ତଦୁପରି, ନୀଳ ବ୍ୟୋମପଟେ ଚିତ୍ର ହେଲାପରି ଆମ କବିଙ୍କ ଭାଷା ମନେ ପଡ଼ୁଛି । ଅବଶ୍ୟ ଏଠିକା ଶୃଙ୍ଗ ଗୁଡ଼ାକ ମୁଣ୍ଡିଆ ନୁହେଁ, ବରଂ ଏମାନଙ୍କୁ ଶ୍ୟାମଳ ଭୂଧର କହିବା ଉଚିତ ହେବ । କିନ୍ତୁ ଶ୍ୟାମଳମାରେ ଏତେ ବାମ୍ପ, ଏତେ ପୋକ ? କିଛି କ୍ଷତି ନାହିଁ । ପୋଷାକରୁ ଜାଁ ଭାଁ ପୋକ ଗୁଡ଼ାକୁ ଝାଡ଼ି ଦେଇ ଜୟନ୍ତ ବାମ୍ପୁଆ ଉଷୁମୁଳିଆ ପବନରେ ମିଠା ବାସ୍ନାର ଅନୁମାନ କଲା । ହେଇ, ବଙ୍ଗଳା ହତାର ଅନାବନା ହଳଦିଆ ଫୁଲରୁ ଗୋଟାଏ କେମିତିକା ମହୁଆ ବାସ୍ନା ଆସୁଛି । ନ ହେଲେ ଏତେ ପ୍ରଜାପତି ଏମିତି ବେଢ଼ି ଯାଆନ୍ତେ ନାହିଁ ତାଙ୍କୁ, କାହାକୁ ନେବେ କାହାକୁ ଛାଡ଼ିବେ ବୋଲି ବାଉଳା ହେଉ ନ ଥାଆନ୍ତେ । ଆ-ହା, ସବୁର୍ କର, ସବୁର୍ କର, ଫୁଲମାନେ କଣ ପଳେଉଛନ୍ତି ? ତା'ଛଡ଼ା—ବୋକାଗୁଡ଼ାକ, ଏଇ ବଙ୍ଗଳା ଭିତରେ ପଶିଛ କାହିଁକି ? ଚିତ୍ରଅଙ୍କା ଡେଣା ମେଲେଇ ଉଡ଼ି ଉଡ଼ି ଯାଅ ( ଫଟର ଫଟର ହୋଇ ), ବିଶାଳ ଶ୍ୟାମଳ ଭୂଧର ଭିତରେ ଧନ୍ଦାଳି ହୁଅ, ଅନେକ ଫୁଲ ପାଇବ, ଅଜାଡିଆ, ପାହାଡ଼ିଆ, ମସ୍ଗୁଲିଆ । ଯେଉଁଠି ମନ ହେଲା ଅଟକି ଯାଅ, ଯେତେବେଳେ ଯାଏଁ । ଏଠି ପ୍ରକୃତି ଉଦାର, ଉଦ୍ଧତ ନୁହେଁ ।

କ୍ରମଶଃ ଜୟନ୍ତର ଆଖିପତା ଭାରୀ ହୋଇ ଆସିଲା । ମନେହେଲା ସେ ସତରେ ସୁଡ଼ଙ୍ଗ ସମ୍ପର୍କୀୟ ଗୁରୁତର ଆଲୋଚନାରୁ ଓହରି ଯିବ ।

ସେ କେବଳ ଜୁନିଅର୍ ଅଫିସର୍ ନୁହେଁ ନିତାନ୍ତ ଜୁନିଅର୍, ପ୍ରଜାପତି ପରି, ତାକୁ ସାଚଖୁର୍ଣ୍ଣି ମାଫ୍, ସେ ରୁଟ୍‌କେନ ଖସି ପକେଇଯିବ, ବିପୁଳାର ଘାର୍ଘାଯୁଦ୍ଧନରେ ଧଂଦାଳି ହେବ, ମୁହଁ ଘସିବ, ଭୋଗ କରିବ···

ଅର୍ଦ୍ଧଚେତନାରେ ଏଇ ଭୋଗ୍ୟା ବସୁନ୍ଧରାଟି ପ୍ରେୟସୀ କି ମାଆ ବୁଝା ପଡ଼ିଲାନାହିଁ । ବୁଝିବାର ଆବଶ୍ୟକତା ମଧ୍ୟ ନ ଥିଲା । ସଙ୍କ୍ଷା ସାଇନ୍‌ବୋର୍ଡରୁ ମିଳିବ କଅଣ ? ଜୟନ୍ତ କେବଳ ଅନୁଭବ କଲା, ଅନୁଭବରେ ମାତେଇ ହେଲା । ଉଦାର ଉଷ୍ଣମ ଶ୍ୟାମଳର ସାନ୍ନିଧ । ଅନ୍ତରଙ୍ଗତା । ରଙ୍ଗ ତମ ଶୃଙ୍ଗ, ମୁନିଆ ପାଇନ୍, ଶାଗ ଶୁଖିଲା ପବନ, ରଥପୁଅକୁ ଏଇ ଭଲ, ଏତିକି ଉଷ୍ଣ, ଏତିକି ଘଞ୍ଚ ।

ସ୍ୱୀ'ର ଭିତରୁ ଯେଉଁ ନଈ ଖଣ୍ଡିକ କୁଦା ମାରି ପକେଇ ଯାଉଛି ସେଇତ କାହିଁରେ କଅଣ ! ତା'କୁଇ କେମିତି ବାନ୍ଧି ପକେଇବେ ବୋଲି ତର ସହୁ ନାହିଁ ଆମ ସରକାରଙ୍କ । ସହାନୁଭୂତିରେ ମନ ଭରିଗଲା ଜୟନ୍ତର । ସତେ କି ସେ ବି ନଈ ପ୍ରଜାପତି ଓଗେରଙ୍କ ଦଳରେ । ଏତିକି ଉଷ୍ଣରେ ଓ ପଳାୟନରେ ଯେଉଁ ସ୍ୱାଧୀନତାଟିକି ମିଳିଛି ଆମକୁ, ତାକୁ ବି ସେମାନେ ନଷ୍ଟ କରିଦେବାକୁ ଚାହାନ୍ତି । କିନ୍ତୁ କ୍ଷଣକରେ ତା' ଓଠରେ ସ୍ମିତହାସ ଫୁଟି ଉଠିଲା । ବାନର୍ଜୀ ପାରିବ ନାହିଁ । ଚେୟାରମ୍ୟାନ ଯେତେ ରାଗିଲେ ରାଗୁଥାଆନ୍ତୁ, ତା' ଦେଇ ହେବ ନାହିଁ । ଗୋଲ୍‌ଗାଲ୍ ଭଦ୍ରଲୋକ, ମାଇକିନିଆଙ୍କ ପରି ନାଲି ଓଠ, ଟିକିଏ ସମୟ ପାଇଲେ ବିଅର୍ । ରବୀନ୍ଦ୍ର ସଙ୍ଗୀତ···ସେ କେଉଁଠୁ ସ୍ରୋତସ୍ୱିନୀକୁ ବାନ୍ଧିବ ମ' ? ନା, ଏ ବର୍ଷ ହେବ ନାହିଁ, ଆସନ୍ତା ବର୍ଷକୁ ମଧ୍ୟ ହେବ ନାହିଁ, ବିଶ୍ୱବ୍ୟାଙ୍କ୍‌ବାଲା ସାହାଯ୍ୟ ବନ୍ଦ କରିଦେବେ···ଯିବ, ଯିବ ପ୍ରୋଜେକ୍ଟ୍‌ ଖଣ୍ଡିକ ମାଡ ଖାଇ ଯିବ··· ଜୟନ୍ତର ସ୍ମିତହାସ ବେଶ୍ ବହଳିଆ ହୋଇ ଆସିଲା ।

କିନ୍ତୁ ଚିଫ୍ ଇଂଜିନିୟର ପ୍ରବୀର ବାନର୍ଜୀ ହାର୍ ମାନିଲାପରି ମନେ ହେଉ ନ ଥିଲେ । ସେ ଚଷମାକୁ ବାରମ୍ବାର ଉପରକୁ ତଳକୁ କରି ସଳଖେଇଲେ ମଧ୍ୟ ଝାଣରେ ଯୁକ୍ତି କରି ଚାଲିଥିଲେ । କହିଲେ,

"ସାର୍, ମୁଁ ସଫେଇ ଦେଉନାହିଁ । ବଢ଼େଇ କହୁ ନାହିଁ । କିନ୍ତୁ ଆମ ଆଉ ଯେଉଁ ଯେଉଁ କାମ କରିବା କଥା ସବୁ କରା ହୋଇଛି ।

ପଥର ଫୁଟାଇବା ପାଇଁ ଡାଇନାମାଇଟ୍‌ର ଅଭାବ ନାହିଁ ଟ୍ରକ୍, ଜିପ୍, କ୍ରେନ୍, ମେକାନିକାଲ ଶୋଭେଲ୍, ସବୁ ଯଥା ସମୟରେ ଯୋଗେଇ ଦିଆ ହୋଇଛି । ଆପଣ ଜାଣନ୍ତି ଯେ ଋଣ ଟଂକା ଯଥା ସମୟରେ ମିଳିବାକୁ ନାହିଁ, କିନ୍ତୁ ସେଥିପାଇଁ ଆମେ ଅପେକ୍ଷା କରି ନାହୁଁ...”

ଚେୟାରମ୍ୟାନ କୁପ୍‌ପୁସ୍ୱାମୀ ମନେ ମନେ ସ୍ୱୀକାର କଲେ ଯେ କଥାଟା ସତ । ସରକାରଙ୍କ ବିନା ଅନୁମତିରେ ଅନ୍ୟାନ୍ୟ କେତୋଟି ପ୍ରୋଜେକ୍ଟ ପାଇଁ ନିର୍ଦ୍ଦିଷ୍ଟ ପାଣ୍ଠିରୁ ଟଙ୍କା ଉଠେଇ ଦିଆ ହୋଇଛି, ତା’ ଭିତରେ ଜନକଲ୍ୟାଣ ପାଣ୍ଠି ମଧ୍ୟ ସାମିଲ ଅଛି, ସବୁ ମୋତେ ଜଣା । କିଛି କ୍ଷତି ନାହିଁ । ନାଂପୁଇ ହାଇଡ୍ରୋ-ଇଲେକ୍‌ଟ୍ରିକ୍ ପ୍ରୋଜେକ୍ଟ ହେଉଛି ସବୁଠାରୁ ବଡ଼ ଜନକଲ୍ୟାଣ । ବିଶ୍ୱବ୍ୟାଙ୍କର ଆଶା । ଭାରତବର୍ଷ ବିଶେଷତଃ ଏଇ ଅନୁନ୍ନତ ଅଞ୍ଚଳର ଭରସା । ଏବଂ ମୋର ଭବିଷ୍ୟତ । ନାଃ, ବାନର୍ଜି ଠିକ୍ କରି ନାଗିକରୁ, ଆସନ୍ତା ଜୁନ୍ ଆଗରୁ ଡାଇଭର୍ସନ୍ ଟନେଲ ତିଆରି କରି ତା’ ଭିତରେ ନାଂପୁଇ ନଈକୁ ପୂରେଇବାକୁ ପଡ଼ିବ । ସେଇ ହେଲା ପ୍ରଥମ କଥା । ବଦଜାତ୍ ନଈର ହାତଗୋଡ଼ ବାନ୍ଧି ନ ପକେଇଲେ ସେ କୌଣସି କାମ କରେଇ ଦେବ ନାହିଁ । ସେଇଠୁ ଯାଇ ରିଜର୍ଭୟେର୍, ପାଓ୍ୱାର୍ ହାଉସ ଇତ୍ୟାଦି । ଗତବର୍ଷ ହେବାର ଥିଲା ହେଲା ନାହିଁ, କଣ ନା ଆଦିବାସୀ ଆନ୍ଦୋଳନ । ଏ ବର୍ଷ କ’ଣ ହୋଇଛି ? ଆଦିବାସୀମାନେ ଚୁପ୍‌ଚାପ୍ ଅଛନ୍ତି, ‘ଖର୍ଚ୍ଚ’ର ସୁଅ ଚାଲିଛି, ମୁଁ ଥରକୁ ଥର ଏଇ ଡାକବଙ୍ଗଳାରେ ସଭା କରିଛି, ଏମାନଙ୍କ ଶ୍ରୀମୁଖ ଦେଖିଛି, ବକବକ ହୋଇଛି, ଏବଂ ପ୍ରତ୍ୟେକଥର ମୋତେ କୁହା ହୋଇଛି ଯେ ସବୁ ଠିକ୍‌ଠାକ୍ । ଆସନ୍ତା ବର୍ଷାଋତୁ ପୂର୍ବରୁ ସୁଡ଼ଙ୍ଗ କାମ ସରିଯିବ, ଏବଂ ନାଂପୁଇ ପଶିବ ତା’ ଭିତରେ । ପରବର୍ତ୍ତୀ କାର୍ଯ୍ୟକ୍ରମ ଭାବି ନେବାରେ ଅସୁବିଧା ହୋଇ ନାହିଁ । ଯେ ମୁଁ ଦିଲ୍ଲୀରୁ ଟେଲିଗ୍ରାମ କରିବି, ଦିଲ୍ଲୀ ଓ୍ୱାଶିଂଟନ୍‌କୁ ଜଣେଇବ, କାଗଜରେ ବାହାରିବ ଯେ ସମସ୍ତ ବାଧାବିଘ୍ନ ସତ୍ତ୍ୱେ ଚେୟାରମ୍ୟାନ କୁପ୍‌ପୁସ୍ୱାମୀ ସାହେବ ଭାରତର ଏଇ ପ୍ରତିଷ୍ଠା ସମ୍ପନ୍ନ ପ୍ରୋଜେକ୍ଟକୁ ଠିକଣା ସମୟରେ ( ହେଲା ଏବେ ବର୍ଷେ ଡେରି, ସେଥିରେ କାହାରି ହାତ ନ ଥିଲା ) ଆଗେଇ ଦେଇ ପାରିଛନ୍ତି । କିନ୍ତୁ ଏଥର

ଆସି ଶୁଣୁଛୁ କ'ଣ ନା ଆମେ ଲାଗି ପଡ଼ିଛୁ···ଆଶା କରୁଛୁ···ଠିକ୍ ଜୁନ୍ ବେଳକୁ ସରବ ବୋଲି କହି ହେଉନାହିଁ, ତେବେ···ନନସେନ୍ସ !

ଚେୟାରମ୍ୟାନ ବାନର୍ଜି ସାହେବଙ୍କ ବକ୍ତବ୍ୟ ମଝିରେ କୁନ୍ଥେଇ ଉଠିଲେ । କହିଲେ, "ବେଶ୍, ଆପଣମାନେ ଯାହା କରିବାର କରିଛନ୍ତି । ତାହାହେଲେ ଦୟାକରି କହିଦେଉ ନାହାନ୍ତି କାହିଁକି ଯେ ମୋଟାମୋଟି ଅମୁକ ତାରିଖ ଭିତରେ ସୁଡ଼ଙ୍ଗ ତିଆର ହୋଇଯିବ ?"

"ସାର୍, କଥା ହେଉଛି କ'ଣ କି କେତେଗୁଡ଼ିଏ ବିଷୟରେ ସାମାନ୍ୟ ସନ୍ଦେହ, ମାନେ ଅନିଶ୍ଚିୟତା···"

ଆଉ ସହି ହେଉ ନାହିଁ । ବରଂ ତୁମକୁ ଧିକ୍ ବୋଲି କହି କଥାବାର୍ତ୍ତା ସାରିଦେବା ଉଚିତ । ଏହି ସବୁରେ ଚେୟାରମ୍ୟାନ ବାନର୍ଜି ସାହେବଙ୍କ ଚେହେରାକୁ ବହିଷ୍କାର କରି ଗୁହାଣୀକୁ ନିରୁଦ୍ଦେଶରେ ପଠିବାକୁ ଦେଲେ । ଭୁଲାଉଥିବା ଜୟନ୍ତ ରଥ ମଧ୍ୟ ତାଙ୍କ ଆଖିରେ ପଡ଼ିଲା । କିନ୍ତୁ ସେ ସେଥିରେ ଚାଲି ଉଠିଲେ ନାହିଁ । ସାମାନ୍ୟ ଈର୍ଷାନ୍ୱିତ ହେଲେ । ମୁଁ କଣ ସେମିତି ଶୋଇ ଯାଇ ପାରନ୍ତି ନାହିଁ ? ସେ ନିହାତି ଜୁନିଅର ହେଲେ ମୁଁ ନିହାତି ସିନିଅର୍ । ମୋର ବି କିଛି ଭାବିବାକୁ ନାହିଁ, ଆଉ କେଇଟା ବର୍ଷ ଚାକିରି, ମୋତେ କୋଉ ଗଭର୍ଣ୍ଣର୍ କରି ପଠେଇବେ ନା ଆମ୍ବାସଡର୍, ଭବିଷ୍ୟତ ଚୁଲିକୁ ଯାଉ···

ଅନ୍ତତଃ ମିନିଟକ ପାଇଁ ତାଙ୍କ ଆଖି ଲାଗି ଆସିଥିଲେ ପ୍ରମାଣିତ ହୋଇ ପାରି ଥାଆନ୍ତା ଯେ ମଧ୍ୟମ ଶ୍ରେଣୀର ଏହି ପାହାଡ ଜଙ୍ଗଲକୁ ଘୃଣା କରିବାର ନୁହେଁ । ଅର୍ବାଚୀନ ଜୟନ୍ତ ରଥ କଥା ଛାଡ଼, କୁପ୍ପୁସ୍ୱାମୀଙ୍କ ପରି କଠୋର ନିରଳସ ହାକିମଙ୍କୁ ମଧ୍ୟ ସେ ଶୁଆଇ ପକାଇ ପାରେ । ମାଆ କି ପ୍ରେୟସୀ ପରି ନ ହେଲା ନାହିଁ, ହୁଏତ ନର୍ସ ପରି, ପାସ୍କର କରୁଣାର କଅଁଳ ଛୁଆଁ, ଡେଟୋଲମିଶା ପାଉଡ଼ରର ବାସ୍ନା, ଅଚିହ୍ନା ଉଷୁମ···ଏ ବୟସରେ ଏତିକି କଣ ସହଜେ ମିଳେ ?

କିନ୍ତୁ ସେତିକି ସୁଖ ମଧ୍ୟ ତାଙ୍କ କପାଳରେ ନଥିଲା । ସଭା ମଧ୍ୟରୁ ହଠାତ୍ ଗୋଟାଏ କେଁକେଁଇଆଁ ତଥା କର୍କଶ ସ୍ୱର ତାଙ୍କ ହତାଶାର ଆବେଶକୁ ନଷ୍ଟ କରି ଦେଲା । ଗୁହାଣୀକୁ ସ୍ପଷ୍ଟ ବୋଲି କହିଲା ।

"ସାର୍ ଦେଆର୍ ଇଜ୍ ଏ ପ୍ରୋବ୍ଲେମ୍ ।"

କଥାଟା ଘାଆରେ ଚୂନ । ଆମକୁ ଦୋଷ ଦେବା ବୃଥା, ଆମର ଗୋଟାଏ ପ୍ରୋବ୍ଲେମ୍ ଅଛି । ନିଅ, ସମ୍ଭାଳ ଏଥର ! ଆଉ କେହି ହୋଇଥିଲେ ଚେୟାରମ୍ୟାନ ନିଶ୍ଚୟ ପଦେ ଝାଡ଼ ଦେଇ ଥାଆନ୍ତେ । କିନ୍ତୁ ଯେଉଁ ଲୋକଟା ଏମିତି କହିଲା, ସେ କେବଳ ଅଚିହ୍ନା ନୁହେଁ, ପୂର୍ବବର୍ତ୍ତୀ ବକ୍ତା ବାନର୍ଜିଙ୍କଠାରୁ ଏଭଳି, ଭିନ୍ନ, କାଳିଆ, ଧଡ଼ିଆ ଏବଂ ଫୋର୍ଡ଼ିଲା ଗୃହାଣୀ ଯେ ଚେୟାରମ୍ୟାନ ଅଳ୍ପ ବହୁତ ହିତବତେଇ ଗଲେ । ଏହି ସମୟରେ ତାଙ୍କ କାନରେ କିଏ ଜଣେ ଫୁସ୍‌ଫାସ୍ ହୋଇ କହିଲା,— ମିଷ୍ଟର୍ ଗୁର୍‌ନାମ । ଦିଲ୍ଲୀରୁ ଆସିଛନ୍ତି । ଏ. ଆଇ. ସିର ବିଶେଷ ପ୍ରତିନିଧି ।

ଓ ! ଆମ କଂଟ୍ରାକ୍ଟର ଯେତେହେଲେ ! ୟାଙ୍କୁ କି ଗ୍ରେଟେ ଦେଇ ହେବ୍‌ ବୋଲି ଚେୟାରମ୍ୟାନ ଉତ୍‌ସାହିତ ହେଲେ । ଆପେକ୍ଷା କଲେ ।

"ପ୍ରୋବ୍ଲେମ ହେଉଛି ଯେ ଟଙ୍କା ଅଛି ସତ, ଯନ୍ତ୍ରପାତି ଅଛି, ଆପଣଙ୍କ ଲୋକ ଅଛନ୍ତି, ଆମ ଲୋକ ଅଛନ୍ତି, କିନ୍ତୁ ଅଭାବ ହେଉଛି— ଲେବର୍ ।"

"ଲେବର୍ ?"

ଚେୟାରମ୍ୟାନ ବିସ୍ମୟରେ ଶବ୍ଦଟିକୁ ଦୋହରେଇଲେ, ବିଦ୍ରୂପ ଫୁଟିଇବା ପାଇଁ ଓଠକୁ ବଙ୍କେଇଲେ ଓ ପୁଣି ଉଚ୍ଚାରଣ କଲେ ।

"ଲେବର୍ ! ?"

ଶବ୍ଦବିଶେଷର ଘନଘନ ପ୍ରହାରରେ ଜୟନ୍ତର ଝାପ୍‌ସା ନିଦ ଭାଙ୍ଗି ଯିବା ସ୍ୱାଭାବିକ । କିନ୍ତୁ ସେ ଚେଇଁ ଉଠିବାର ପ୍ରୟୋଜନକୁ ସ୍ୱୀକାର କରିପାରିଲା ନାହିଁ । ସେଇ ସୁଡଙ୍ଗ, ମାଟି, ପଥର, ଲୁହା, ଲେବର୍, ଧ୍ୟାତ୍‌ତେରି ! —ଏହି ଭାବରେ ସେ ସଭାକାର୍ଯ୍ୟକୁ ପୁଣି ପିଠି କରି ଅଦୂରସ୍ଥ ଜଙ୍ଗଲିଆ ପାହାଡ଼ ବନାମ ଶ୍ୟାମଳ ଭୂଧର ଆଡ଼କୁ ଅନେଇଲା । ତା'କୁ ପ୍ରଥମଥର ପାଇଁ ଦେଖିଲା ପରି ଲାଗିଲା ଯେ ପାହାଡ଼ ଉପରେ ଖାଲି ଜଙ୍ଗଲ ନାହିଁ, ଗଛ ଅଛି । ଚିହ୍ନା ଗଛ, ଯେଉଁମାନଙ୍କର ବଣିଗୃ ବାଶଆଡ଼ 'ସାଙ୍ଗରେ ସମ୍ପର୍କ । ନଡ଼ିଆଗଛ, ଗୁଆଗଛ···ନିହ

ନହକା ଝାଡ଼ଗଛ ଗୁଡ଼ାକ କଅଣ ? ବେତ ? ବେତ କୋଳି ? ତା' ମାନେ ଇଚ୍ଛା କଲେ ଏ ଜଙ୍ଗଲକୁ ଛୁଇଁ ହେବ, ତା'ର ଗୁଳ ଭିତରେ ଗଳି ଭିତରେ ଖେଳି ହେବ । ହେବ ନାହିଁ କେମିତି ? ଦେଖ, ପାହାଡ଼ ଉପରେ ନାଲି ଲୁଗା ଶୁଖୁଛି ! ହୁଏତ କାହାର ଶାଢ଼ୀ କି ଗାମୁଛା କି ଆଉ କଅଣ । ପ୍ରଜାପତି ରସିକତା କରି ତା' ଉପରେ ବସି ଯାଇପାରେ, କିଏ ଜାଣିଛି ?

ପ୍ରକୃତିର କୋଳରେ ଶୋଇ ପଡ଼ିବାର ସୁଖ ନୂତନ ରୂପ ଧାରଣ କଲା । ମନେ ହେଲା ଯେ ଶୋଇ ହେବ ନାହିଁ, କାହିଁକିନା ସେମାନେ ଶୁଆଇ ଦେବେ ନାହିଁ, କୁତୁକୁତୁ କରିବେ, ଜଂଗଲର ପ୍ରାଣୀମାନେ । କହିବେ—ଆମ ସଂଗରେ ଖେଳେ, ସହର ବଜାରରୁ ଆସିଛୁ ବୋଲି ଆମେ ତୋତେ ଛାଡିଦେବୁ ନା କଅଣ ?

"ବଡ଼ ବିଚିତ୍ର କଥା କହୁଛନ୍ତି ଆପଣ ! ଏ ଦରିଦ୍ର ବେକାର ଦେଶରେ ଲେବର୍ ମିଳୁନାହାନ୍ତି ଆପଣଙ୍କୁ ? ଅସମ୍ଭବ । ମୁଁ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହେଁ, କ୍ଷମା କରନ୍ତୁ..."

କିନ୍ତୁ ଜୟନ୍ତ ଆମୋଦରେ ଆପ୍ଲୁତ ହେଲା । ଏବଂ ଚେୟାର-ମ୍ୟାନଙ୍କୁ କହିଲା ମନେ ମନେ—ସାର୍ ଆପଣଙ୍କୁ ବିଶ୍ୱାସ କରିବାକୁ ହେବ । ଲେବର୍ ମିଳିବେ ନାହିଁ ଏଠି । ଏଠି ଖାଲି ନାଲି ଲୁଗା ଶୁଖାଉଥିବା ଲୋକ, ଶ୍ୟାମଳ ଉପରେ ରଂଗ ଛାଡ଼ି ଦେଉଥିବା ମଉଜିଆ ପ୍ରାଣୀ । ନାଂପୁଇ ନଦୀର ମିତ । ହଜାରେ ବାନର୍ଜି ସାହେବ ଆସିଲେ ବି' ତାଙ୍କୁ ବାଧ୍ୟ କରି ପାରିବେ ନାହିଁ । ସେମାନେ କଦାପି ମିତଣୀକୁ ସୁଡ଼ଙ୍ଗ ଭିତରେ ପୂରେଇ ଦେବେ ନାହିଁ । ମୋର ପ୍ରିୟ ଚେୟାରମ୍ୟାନ, ବାନର୍ଜି ସାହେବ, ସହକର୍ମୀବୃନ୍ଦ, ଆପଣମାନଙ୍କୁ ଏ ଗୁଳୁଗୁଳିଆ, ବୁଢ଼ବୁଢ଼କା, ହାତପାହାନ୍ତା ପ୍ରକୃତି କଣ ମୋଟେ ଛୁଇଁ ପାରୁ ନାହିଁ ? ରୋମାନ୍ସ, ଯୌବନ ଆଜି କିଛି ମନେ ପଡୁ ନାହିଁ ଆପଣଙ୍କର ?

ଗୋଟାଏ କିଏ ଉତ୍ତର ଦେଉଛି, ଶୁକୁଟା ଅନ୍‌ରୋମାଣ୍ଟିକ୍ ଚେହେରା,

"ମିଳିବେ ଆଜ୍ଞା ମିଳିବେ । ମୋତେ କୁହନ୍ତୁ, କାଲି ସକାଳ ଭିତରେ ହ'ଶହ ଲେବର୍ ଖାଡ଼ା କରି ଦେବି । କିନ୍ତୁ ଆମେ ଯେଉଁ-ମାନଙ୍କୁ ଚାହୁଁ, ତାଙ୍କରି ଅଭାବ । ଏଇ ସୁଡଙ୍ଗ କାମ ହେବ ନାହିଁ ଆଉ କାହା ଦେଇ ।"

"କିଏ ସେମାନେ ?"

"ଓଡ଼ିଆ ଲେବର୍ ।

ମିଷ୍ଟର୍ ଗୁର୍‌ନାମ୍ ସେତିକି କହି ରହିଗଲେ । ଯେମିତିକି ତାଙ୍କ ବକ୍ତବ୍ୟର ତାତ୍ପର୍ଯ୍ୟ ଏମାନଙ୍କ ମୁଣ୍ଡରେ ପଶିବାକୁ ଟିକିଏ ଡେରି ହୋଇପାରେ ।

ବର୍ତ୍ତମାନ ଜୟନ୍ତ ଚୂରିପୂରି ଚେଇଁ ଉଠିଲା ବୋଲି କହିଲେ ଯଥେଷ୍ଟ ନୁହେଁ । ସେ ଜଳିଲା ପରି ତେଜି ଉଠିଲା । ଭଦ୍ରଲୋକ ସରକାରୀ ମିଟିଂ ନ ହୋଇଥିଲେ ଲୋକଟାକୁ ଶୁଣେଇ ଦିଅନ୍ତା । ସାହସ କମ୍ ନୁହେଁ ! ଓଡ଼ିଆ ଲେବର ଦରକାର ! କାହିଁକି, ବିହାରୀ, ବଂଗାଳି, ମାଡ୍ରାସୀ, ପଞ୍ଜାବୀ ଏତେରେ ଗଲେ କୁଆଡେ ? ଖାଲି ଏଇ ପଥର କାଟିବା ପାଇଁ ଓଡ଼ିଆଙ୍କୁ ଡାକ ପଡ଼ୁଛି ? ତା'ଛଡା ଲେବର୍ ତ ଲେବର, ସେଥିରେ ଏଇ ଭେଦଭାବ କାହିଁକି ? ତମରି ପରି ଲୋକଙ୍କ ଯୋଗୁ ଆଜି ଭାରତର ଏଇ ଅବସ୍ଥା—

ମିଷ୍ଟର୍ ଗୁରନାମ୍ କଥାଟାକୁ ବୁଝେଇଲେ । କହିଲେ,

"ଏଠିକା ଲୋକ ଏମିତିକା କାମ କରିବାକୁ ଚାହାନ୍ତି ନାହିଁ, ଚାହିଁଲେ ମଧ୍ୟ ପାରିବେ ନାହିଁ । ସେକଥା ଆପଣ ଜାଣନ୍ତି ।"

(କାହିଁକି ଚାହିଁବେ ନାହିଁ ? କାହିଁକି ପାରିବେ ନାହିଁ ? ଏମାନେ କଣ ସମସ୍ତେ ଦୁଧଘିଅ ଖାଇ ବଢିଛନ୍ତି, ଆଉ ଆମେ କୁଣ୍ଡା ଖାଇ ମଣିଷ ହୋଇଛୁ ? ଜୟନ୍ତ ଆହୁରି ତତେଇଲା ନିଜକୁ )

ଆସିଲେ ଆସିବେ ଆଦିବାସୀ । କିନ୍ତୁ ସେମାନେ ମଜୁଆ । ହ'ଦିନ କାମ କଲେ ଆଉ ହ'ଦିନ ମଦ ଖାଇବେ, ହେଣ୍ଡି ମାରିବେ । ଆଉ ଏଣେ କର ଏଇ ଅଣ୍ଟିବୁଜା ଧମାଧମ୍ କାମ, ଅମୁକ ତାରିଖ ଭିତରେ

ସାରବାକୁ ହେବ, ନ ହେଲେ ମୁଣ୍ଡକାଟ ହେବ, ଏ ପାଠ ତାଙ୍କୁ କେହି ପଢ଼େଇ ପାରିବ ନାହିଁ । ତା'ଛଡ଼ା ଗତବର୍ଷ ଯେଉଁ ଆନ୍ଦୋଳନ ହେଲା ବୁଝୁନାହାନ୍ତି ? ଆଜକାଲି ତାଙ୍କୁ ପଦେ ଧମକେଇବାର ସାହସ ନାହିଁ କାହାର । ନାଆଁକୁ ଅଛନ୍ତି କେଇଜଣ, କିନ୍ତୁ ସେମାନେ ଥିବା ଯାହା ନ ଥିବା ସେଇଆ ।

(ବେଶ୍ ହୋଇଛି ! ସେଇମାନେ ହିଁ ଜଗିଛନ୍ତି ତମକୁ )

ବାକି ରହିଲେ ଆଉଟ୍‌ସାଇଡ୍ ଲେବର୍ । ତେଲଙ୍ଗା ତ ଆସିବେ ନାହିଁ ଏ ଆଡକୁ । ଖାଲି ବିହାରୀ ଆଉ ଓଡ଼ିଆ । ଗତବର୍ଷ ସେଇମାନଙ୍କୁ ନେଇ ଆମ କାମ ଅନେକ ଆଗେଇ ଯାଇଥିଲା, କିନ୍ତୁ ଦୁର୍ଭାଗ୍ୟକୁ ଆନ୍ଦୋଳନ ଖଣ୍ଡିକ ସବୁ ମାଟି କରି ଦେଲା । ଡରି କରି ସେ ଯୁଆଡ଼େ ପଳେଇ ଗଲେ, ଆପଣ ତ ସବୁ ଜାଣନ୍ତି । ଏ ବର୍ଷ ଯେତେ ଚେଷ୍ଟା କଲେ ମଧ୍ୟ ବିହାରରୁ ଆଣି ହେଲା ନାହିଁ । ତେବେ ଟୋକା ବୁଢ଼ା ହୋଇ ବେଶ୍ କେତେଜଣ ଓଡ଼ିଆ ଆସି ଯାଇଥିଲେ । ସେଥିପାଇଁ ଆମ ଲେବର୍ କଂଟ୍ରାକ୍ଟର୍ ଅମର ସିଂହଙ୍କୁ ଧନ୍ୟ କହିବ —"

( କିଏ ତମ ଅମର ସିଂହ ? ବିଚରାଙ୍କୁ କଣ ସବୁ ମିଛସତ କହି ଭଣ୍ଡେଇ ଆଣିଛୁ ? ଏଠି କୋଉଠି ଥିଲେ ଜେରା କରନ୍ତି ତା'କୁ )

"ହବ୍ୟ ଚାଲିଥିଲା ଆଜ୍ଞା, କିନ୍ତୁ ଏଇ କେତେଦିନ ହେଲା କ'ଣ ହୋଇଛି କେଜାଣି ତାଙ୍କ ମୁଣ୍ଡକୁ ପୋକ ଚଢ଼ିଛି । କହୁଛନ୍ତି ଆମେ ରହିବୁ ନାହିଁ ଏଠି । ଏଇ ଅପନ୍ତରାରେ ପଡ଼ି ମରିବୁ ନାହିଁ, ଲକ୍ଷେ ଟଙ୍କା ଦେଲେ ବି' ରହିବୁ ନାହିଁ···

"ଲକ୍ଷେ ଟଙ୍କା ମାଗିଛନ୍ତି ଆପଣ ?" ଜଣେ କେହି ଛୁଗୁଲେଇଲା ପରି ପ୍ରଶ୍ନ କଲା । କିନ୍ତୁ ଚେୟାରମ୍ୟାନ୍ ତା'କୁ 'ଓ୍ୱେଟ୍ !' ବୋଲି କହି ତତ୍‌କ୍ଷଣାତ୍ ଦବେଇ ଦେଲେ । ମନେହେଲା ଯେ ପ୍ରବୀଣ କର୍ମକର୍ତ୍ତା ହିସାବରେ ସେ ସମସ୍ୟାଟାକୁ ତଳେଇକରି ବୁଝିବାକୁ ଚାହାନ୍ତି । ସେଇଠୁ ତାର ସମାଧାନର ବାଟ ବତେଇ ଦେବେ ।

"ବର୍ତ୍ତମାନ ପ୍ରଶ୍ନ ହେଲା କେମିତି ସେମାନଙ୍କୁ ମନେଇବାକୁ ହେବ ମଣ କରିବାକୁ ପଡ଼ିବ, କଳେ ବଳେ କୌଶଳେ। ସମସ୍ତ ଗଡ଼ି ଯାଉଛନ୍ତି। ଖୁବ୍ ଶୀଘ୍ର ବର୍ଷା ଆସିଯିବ। କାମ ସହଜେ ବନ୍ଦ ହୋଇଯିବ। ପୁଣି ଆଉଥରେ ବର୍ଷେ ଡେରି ହୋଇଯିବ। କିନ୍ତୁ ଆମେ ପାରୁନାହୁଁ ସାର୍, ଥକି ଗଲୁଣି।"

ଜୟନ୍ତ ଅବଶ୍ୟ ଖୁସିହେଲେ ଯେ ବିପକ୍ଷଦଳ ପାରୁନାହାନ୍ତି। ଥକି ଗଲେଣି। କିନ୍ତୁ ତା'ର ଭୟ ହେଲା। ଏମାନଙ୍କୁ ବିଶ୍ୱାସ ନାହିଁ। ଚେୟାରମ୍ୟାନ ଗୋଟାଏ ଗମ୍ଭୀର "ହୁଁ-ଉଁ" କହିଲେଣି। ସେ ପ୍ରୋଜେକ୍ଟକୁ ଭୁଷୁଡ଼ିବାକୁ ଦେବେ ନାହିଁ। ୱାର୍ଲ୍ଡ ବ୍ୟାଙ୍କ୍‌ର ଟଙ୍କା। ଷଷ୍ଠ ପ୍ଲାନର ଅଟକଳ। ଉପର ମହଲର ତାଗିଦା। ଆଉଥରେ ଡେରି ହେଲେ ମୁହଁ କଳା ପଡ଼ିଯିବ ତାଙ୍କର।

ଇଏ କଅଣ ? ସାର୍ ପୁଣି ମୋ ଆଡ଼କୁ ଅନେଇଛନ୍ତି କାହିଁକି ?

ଲୋକଟା କହିଚାଲିଛି, "ଆମର ଧାରଣା ସେମାନେ ରାଜି ହୋଇ ଯାଆନ୍ତେ। କିନ୍ତୁ ତାଙ୍କ ଭିତରେ ଗୋଟାଏ ଅଖାଡ଼ୁଆ ଲୋକ ଅଛି, ତା'କୁ ସେମାନେ ମଉସା ବୋଲି ଡାକନ୍ତି, ସେଇ ଅଡ଼ି ବସୁଛି···।" କିନ୍ତୁ ଚେୟାରମ୍ୟାନ ଆଉ କିଛି ଶୁଣିବାକୁ ନାହାନ୍ତି। ମୋରି ଆଡ଼କୁ ଅନେଇ ରହିଛନ୍ତି।

ଖାଲି ସେତିକି ନୁହେଁ। ମୁରୁକି ମୁରୁକି ହସୁଛନ୍ତି। ଯେମିତିକି ଏଥର ତାଙ୍କର ପାଳି। ମୋ ମନ କଥା ଜାଣି ପାରି ହସୁଛନ୍ତି, ବଦଳା ନେବେ ମୋ ଉପରେ। ହେଲେ ମୁଁ ସହଜ ଜନ୍ତୁ ନୁହେଁ। ମୁଁ ତାଙ୍କ ତଳେ କାମ କରିପାରେ। କିନ୍ତୁ ମୋର ଆତ୍ମସମ୍ମାନ ଅଛି।

"ଜୟନ୍ତ, ତମେ ଆମକୁ ସାହାଯ୍ୟ କରି ପାରିବ ନାହିଁ ?"

ଏଇଆ କହିବେ ବୋଲି ଜଣା ଥିଲା। କିନ୍ତୁ ସିଧାସଳଖ ଅର୍ଡ଼ର ଦେବାକୁ ଚାହାନ୍ତି ନାହିଁ। ପୁରୁଣା ମୂଷା, ସବୁ ଫିକର ଜଣା ଅଛି ତାଙ୍କୁ। ଦରକାର ପଡ଼ିଲେ ବୋହିଯିବେ ଗୋଡ଼ିପଣେ, ହାତ ଯୋଡ଼େଇବାର ଢଂଗ କରିବେ। କାମ ସରିଲେ ଗର୍ଜି ଉଠିବେ। ଧନ୍ୟବାଦ, ମୁଁ ତମ ପାଲରେ ପଡ଼ିବାକୁ ପ୍ରସ୍ତୁତ ନୁହେଁ।

"ସାର୍, ମୁଁ କଅଣଟା ସାହାଯ୍ୟ କରି ପାରିବି ? (ବନସ୍ପତି ଶୁଖିଲା ହସ) ମାନେ ମୁଁ ଓଡ଼ିଆ ସିନା, ସେମାନେ ହେଉଛନ୍ତି ଲେବର୍—"

ପରେ ପରେ ଜୟନ୍ତର ଖିଆଲ ଆସିଲା ଯେ ଏମିତି ଭାବରେ କହିବା ଉଚିତ ନ ଥିଲା । ମନେ ହେବ ସେମାନେ ଓଡ଼ିଆ ହେଲେ ମଧ୍ୟ ମୋର ଜାତିଭାଇ ନୁହନ୍ତି, କାହିଁକନା ସେମାନେ ମୂଲିଆ ମଜ୍‌ଦୁର । ତେଣୁ ସେ ବ୍ୟାଖ୍ୟା କଲା,

ମୋର କହିବାର ଅର୍ଥ ହେଉଛି ଯେ ଲେବର୍ ଯାହା ବୁଝିଥିବେ ସେଇଆ, ତାଙ୍କୁ ସହଜେ ଟଳେଇ ହେବନାହିଁ । ସେମାନେ ଯେଉଁଠିକାର ହୁଅନ୍ତୁ ପଛେ । ମୁଁ ସାହାଯ୍ୟ କରିବାକୁ ମନା କରୁ ନାହିଁ, କିନ୍ତୁ କଥା ହେଉଛି—"

ଚେୟାର୍‌ମ୍ୟାନ୍‌ଙ୍କ ସ୍ମିତ ମଧୁର ଭାବ ମଉଳିଗଲା ପରି ଦିଶିଲା । ଜୟନ୍ତ ପ୍ରମାଦ ଗଣିଲା । ଭାବିଲା ବଚନେ କା ଦରିଦ୍ରତା, ଭାଷାକୁ ଆଉ ଟିକିଏ ମୁଲାଏମ୍ କରିଦେଲେ ହେବ ।

କିନ୍ତୁ ଭାଷାକୁ ମୁଲାଏମ୍ କରିବାର ସମୟ ମିଳିଲା ନାହିଁ । ଚେୟାର୍‌ମ୍ୟାନ୍ ପ୍ରଫେସରିଆ ଠାଣିରେ, ହସ କି ଦ୍ୱେଷ ନାହିଁ ସେଥିରେ, କହି ବସିଲେ,

"ଜୟନ୍ତ, ମୁଁ କହୁନାହିଁ ତୁମେ ଲେବର୍‌ଙ୍କୁ ବେଶି ଚିହ୍ନିଛ । ଏବଂ ତୁମେ ଓଡ଼ିଆ ବୋଲି ତାଙ୍କ ଉପରେ ତୁମର ଦଖଲ ଅଛି, ସେଭଳି କହିବା ମଧ୍ୟ ଅନ୍ୟାୟ ହେବ । କେବଳ ଏତିକି ଯେ ତୁମେ ତାଙ୍କ ସାଙ୍ଗରେ ତାଙ୍କରି ଭାଷାରେ ଆଳାପ କରି ପାରିବ । ତାଙ୍କ "ହିଁ-ନାଁର ଭିତରିଆ କଥା ବୁଝି ପାରିବ । ବୁଝିପାରିବ, ବୁଝେଇ ପାରିବ । ପ୍ରକୃତରେ ତାଙ୍କର ଦୁଃଖ କଅଣ, କଅଣ ସେମାନେ ଚାହାନ୍ତି । ସେଇଠୁ ଆମେ ପୁଣି ଏକାଠି ବସିବା, ବିଚାର କରିବା । ଏତେ ବଡ଼ ପ୍ରୋଜେକ୍ଟ । ଅଞ୍ଚଳ ନୁହେଁ, ପ୍ରଦେଶ ନୁହେଁ, ଦେଶ ଚାହିଁ ବସିଛି । ଖାଲି ଦେଶ କାହିଁକି, ସାରା ବିଶ୍ୱ କହିଲେ ଚଳେ । କେଇଜଣ ଲେବରଙ୍କ ମାନ ଅଭିମାନ ପାଇଁ ତାକୁ ପକେଇ ରଖିବା, ପକେଇ ରଖିବାର ଅର୍ଥ ନଷ୍ଟ କରିଦେବା ଉଚିତ ହେବ କି ?

ଉଚିତ ହେବ ନାହିଁ । ଏହି ମର୍ମରେ ପ୍ରାୟ ସମସ୍ତେ ମୁଣ୍ଡ ହଲେଇଲେ । ଜୟନ୍ତର ମୁଣ୍ଡ ମଧ୍ୟ ଆପେ ଆପେ ସଂଚାଳିତ ହେବାକୁ ଲାଗିଲା । ପ୍ରୋଜେକ୍ଟ୍‌ର ମାହାତ୍ମ୍ୟ ବୁଝିବାରେ ମୁଁ କାହାରଠାରୁ କମ୍ ନୁହେଁ । କିନ୍ତୁ—

କିନ୍ତୁ କଅଣ ? ହୋଇପାରେ ମୁଁ ରୋମାଣ୍ଟିକ୍, ତା ବୋଲି ମୁଁ କଅଣ ପ୍ରକୃତରେ ବୁଝେଁ ଯେ ସୁଡଙ୍ଗ ଗଢ଼ା ହେବ ନାହିଁ ? ନଈ ପଶିବ ତାହିଁ ତା ଭିତରେ ? ନାଂପୁଇ ହାଇଡ୍ରୋ ଇଲେକ୍‌ଟ୍ରିକ ପ୍ରୋଜେକ୍ଟ, ତିନଶହ ମେଗାଓ୍ୱାଟର ବିଦ୍ୟୁତ୍‌ଶକ୍ତି ଏଇ ପାହାଡ଼ିଆ ଅନୁନ୍ନତ ଅଞ୍ଚଳର ବିଶେଷ ଆଶା ଭରସା, ମାଡ଼ ଖାଇଯିବ ? ଅବଶ୍ୟ ମୁଁ ମୋର ଓଡ଼ିଆ ଭାଇଙ୍କ ପ୍ରତି ଅନ୍ୟାୟ ହେବାକୁ ଦେବି ନାହିଁ । ତେବେ ତାଙ୍କ ସାଙ୍ଗରେ ପଦେ ଦୁଃଖସୁଖ ହେଲେ କଣ ମୋର କାଯ୍ୟ ନଷ୍ଟ ହୋଇଯିବ ? ବରଂ ସେତିକି ନ କଲେ ସ୍ପଷ୍ଟ ଜଣା ପଡ଼ିବ ଯେ ମୁଁ ଘରଛଡ଼ା ନୁହେଁ କି ଓଡ଼ିଆ ନୁହେଁ । ପ୍ରୋଜେକ୍ଟ୍ ରହୁ କି ଯାଉ, ଓଡ଼ିଆ ଲେବର୍ ଜୀଅନ୍ତୁ କି ମରନ୍ତୁ ମୋର ଯାଏ ଆସେ ନାହିଁ । ମୁଁ ମାର୍କାମରା ବ୍ୟୁରୋକ୍ରାଟ୍, ଶୀତଳ, ସ୍ୱାର୍ଥପର—

"ଠିକ୍ ଅଛି ସାର୍, ମୁଁ ଯିବି ସେମାନଙ୍କ ପାଖକୁ ।"

ଅର୍ଦ୍ଧସ୍ଫୁଟ ସାଧୁବାଦରେ ସଭାଘର ଗୁଂଜରି ଉଠିଲା । ଜୟନ୍ତ ତାକୁ ଧ୍ୟାନ କଲା ନାହିଁ । ଏବଂ ଚେୟାରମ୍ୟାନ୍‌ଙ୍କ ମୁଖମଣ୍ଡଳ କେତେ-ଦୂର ଝଲକି ଉଠିଲା, ସେଥିରେ କପଟତା ଅଛି କି ନାହିଁ, ଦେଖିବାପାଇଁ ମଧ୍ୟ ପରୁଆ କଲା ନାହିଁ । କେବଳ ମନକୁ ମନ କହି ହେଲା, ମୁଁ ଯିବି । ମୁଁ ପାରିବି ।

ସେ ଖାଲି ଗୋଟିଏ ପ୍ରଶ୍ନ ପଚାରିବ ବୋଲି ହେଉଥିଲା, ପଚାରିଲା ନାହିଁ । ଅଖାଡ଼ୁଆ ଲୋକଟି କିଏ, ଦେଖିବାକୁ କେମିତିକା, ତା' ନାଆଁ କଅଣ ? ଦରକାର ନାହିଁ । ମଉସା ଚିହ୍ନା ପଡ଼ିଯିବ । ମୁଁ ବି ତାକୁ ମଉସା ବୋଲି ଡାକିବି ।

ଆସନ୍ତା ସକାଳେ ଜୟନ୍ତ ଏକୁଟିଆ ଯାଇ ସେମାନଙ୍କ ସାଙ୍ଗରେ ଦେଖା କରିବ ବୋଲି ସ୍ଥିର ହେଲା । ତାଙ୍କରି କୁଡ଼ିଆ ଘରେ ବସିବ,

କଥା ଭଷା ହେବ । କାହାରକୁ ପୂର୍ବରୁ ଖବର ଦେବା ଦରକାର ନାହିଁ, କମ୍ବା କାମରୁ ଉଠେଇ ଆଣିବାକୁ ପଡ଼ିବ ନାହିଁ । ଆଜଠୁଁ ଘୋଷଣା କରି ଦିଆଯିବ ଯେ ଚେୟାର୍‌ମ୍ୟାନଙ୍କ ଆଗମନ ହେତୁ ବାବୁମାନେ ବ୍ୟସ୍ତ ଅଛନ୍ତି, ତେଣୁ ଆସନ୍ତା କାଲି ମଧ୍ୟାହ୍ନ ଯାଏଁ ପ୍ରୋଜେକ୍ଟର ଭଙ୍ଗାଗଢ଼ା ସମେତ ଯେତେକ ନିତିଦିନିଆ କାମ ବନ୍ଦ ରହିବ । ଭଲ । ଆକସ୍ମିକ ଛୁଟି ମିଳିବାରୁ ସେମାନଙ୍କ ମିଜାଜ୍ ଅଳ୍ପବହୁତ ଖୁସି ଥିବ ବୋଲି ଆଶା କରାଯାଏ । ମୋଟ ଉପରେ ଫେଲ୍ ହେବାର କାରଣ ନାହିଁ । ଜୟନ୍ତ ନିଜକୁ ଦମ୍ଭ ଦେବା ସଙ୍ଗେ ସଙ୍ଗେ ଭାବିଲା ଯେ ଏତେ ମୁଣ୍ଡ ଖେଳେଇବା ଅନୁଚିତ, ସେ କୋଉ ଇଣ୍ଟର୍‌ଭିଉ ଦେବାକୁ ଯାଉ ନାହିଁ, ସେମାନେ ଚୋର ଜାତିଭାଇ—ବୋଧହୁଏ ପ୍ରଥମରୁ ଗୋଟାଏ ଚଗ ପେଲିଦେଲେ ମନ୍ଦ ହେବ ନାହିଁ—

ଶୁଭଲକ୍ଷଣ ହିସାବରେ ପରବର୍ତ୍ତୀ ଦିନର ସକାଳକୁ ଗୁଣିବାର ନଥିଲା । ଯଥା—ପାଣିପାଗ କାଲିକା ପରି ଗୁମ୍‌ସୁମ୍ ଓ ବାଂଫୁଆ ହେଲେ ମଧ୍ୟ ପାହାଡ଼ର କେଉଁ ସଂଧିବାଟେ ଶୀତଳ ପବନ ପଶି ଆସୁଛି । ଅଭିଯାନର ଶୁଭକାମନା କରୁଛି ବୋଲି କହିଲେ ଚଳେ । ପାହାଡ଼ର କଡ଼େ କଡ଼େ ତଳ ଉପର ହୋଇ ଧପାଇଲେ ମଧ୍ୟ ବିଶେଷ ହାଲିଆ ଲାଗୁ ନାହିଁ । ଫୁଲପ୍ରଜାପତିଙ୍କ ସମ୍ମେଳନ ବେଶି କିଛି ଆଖିରେ ପଡୁ ନାହିଁ ସିନା, କେଉଁ ଛପି ରହିଥିବା ଚଢ଼େଇ ହଠାତ୍ କୁଁ କୁଁ ହୋଇ ଉଡ଼ି ଯାଉଛି ପାଖ ଦେଇ, ପାଗ୍ଲେଟି ନେଲିପରି । ଏବଂ ଯେଉଁ ଅଳ୍ପବହୁତ ମଣିଷ ଯା'ଆସ କରୁଛନ୍ତି, ତାଙ୍କ ଭିତରୁ କାହାରି ଠେଇଁ ଲେବର୍‌ର ଗ୍ରୁପ ମରିଛି ବୋଲି ମନେ ହେଉ ନାହିଁ । ଜଣେ ଅଧେ ଗଛକୁ ଧରି ହାଣୁଥିଲେ ମଧ୍ୟ ଦେହରୁ ଝାଳ ଫୋଟୁନାହାନ୍ତି, ଖୋଲା ଆଖିରେ ଅନଉଛନ୍ତି ମୋତେ । ଯେମିତିକି ମୁଁ ବି ତାଙ୍କ ସାଂଗରେ ଛୁଟି ବିତେଇବାକୁ ଆସିଛି, ଆମେ ଚୁପ୍‌ଚାପ୍ ନିଜ ନିଜ ଗଛକୁ ଧରି ହାଣିବା । ନିଜ ନିଜ ବନ୍‌ଶୀରେ ମାଛ ଧରିବା । ଯୁଆଙ୍କର ଭିତରେ ଓଡ଼ିଆ ଲେବର ନଥିବେ ବୋଲି କିଏ କହିବ ? ପାହାଡ଼ିଆ ପିଲାମାନେ ମଧ୍ୟ ଅଛନ୍ତି, ଝିଅଙ୍କ କାନରେ ନାଲିପଥର ଦୁଲ୍, ପୁଅଙ୍କ ଓଠରେ ସୁସୁର । ପିନ୍ଧାଜାମା ଯେତେ ମଇଳା ହେଉ ନା କାହିଁକି, ହଳଦିଆ-ଗୋରା ମୁହଁରେ ଜୀବନରଙ୍ଗ...

ଆମ ଓଡ଼ିଆ ଲେବର୍ କଣ ଏଇମାନଙ୍କ ଫଗସୁଖରୁ ଅଳ୍ପବହୁତ ଆନନ୍ଦ ପାଉନଥିବେ ? ପୁଣି ଦେଖ-ଝରଣା ! ପ୍ରଖ୍ୟାତ ନାଏଗ୍ରା, ପ୍ରଶସ୍ତ ଚିତ୍ରକୂଟ କଣ ସ୍ବାଠୁଁ ବେଶି ସୁନ୍ଦର ? ପାହାଡ଼ର ପଥର ଦେହକୁ ଓଦା କରି ତା'ର ଶ୍ୟାମଳ ଗ୍ରୀମକୁ ଫେଣେଇ ଫେଣେଇ ଛଳ ଛଳ ହ'ଧାର ବହି ଆସୁଛି, ଯା'ର ଶୋଭା କେଉଁ ହିସାବରେ ଊଣା ? ଏଙ୍କ ତା ପାଦଦେଶରେ କବିସିମା ଟିଣ ମାଦ ଥୋଇ ପିଲାମାନେ ଠିଆ ହୋଇଛନ୍ତି, ହାତରେ ଦଉଡ଼ିବଂଧା ଚକଲଗା ଗାଡ଼ି, ପିଲାଙ୍କ ରଥ ପରି, ସେଇଥିରେ ଭରିଟିଣ ଟାଣି ଟାଣି ନେବେ, ଏଭଳି ବିଚିତ୍ର ଦୃଶ୍ୟ କ'ଣ ସହଜେ ମିଳେ ? ଓଡ଼ିଆ ଲେବରମାନଙ୍କ କୁଡ଼ିଆ ବେଶି ଦୂର ହୋଇ ନଥିବ ଏଠୁଁ । ରେସିଡେଣ୍ଟ୍ ଇଂଜିନିଅର୍ ସଇକଆ କହୁଥିଲି ଯେ ପ୍ରଥମେ ଗୋଦାମ ଜାଗାପୁ ଗୋଟାଏ ବଡ଼ ଟିଣଘର ଆସିବ···ଟିଣଘର ତ ହେଇ, ଆଖିପାହାନ୍ତାରେ !

ଜୟନ୍ତର ଗତି ଧୀମେଇ ଗଲା ! ପ୍ରଥମେ କଣ କହିବ ? ସିଧା ତାଙ୍କ ନାଆଁ ଗାଆଁ ପଚାରିବ ? ନା ତମ ଘରପାଖ ଝରଣାଟି କେଡେ କଉତୁକିଆ ବୋଲି କହିବ ?

ମାଟିକାନ୍ଥ ଓ ଟିଣଛାତ ବିଶିଷ୍ଟ ଦଶବାରଟି ଘରର ଧାଡ଼ି । ସଇକଆ କହୁଥିଲି ଏଇ ହେଉଛି ଓଡ଼ିଆ ଲେବର୍ଙ୍କ ଅସଲ ପେଣ୍ଠ, ଏଇମାନଙ୍କୁ ମଣ କରି ପାରିଲେ···ସଇକଆଟାକୁ କଥା କହି ଆସେ ନାହିଁ । ଏମାନେ କଣ ବଳଦ ନା ମହିଁଷି ? ତା ସାଙ୍ଗରେ କଳି କରିବାକୁ ବେଳ ନ ଥିଲା, ନ ହେଲେ—।

ଜଣେ ଟୋକାଳିଆ ଲୋକ ରାସ୍ତା କଡ଼ରେ ଥିବା ପଥର ଉପରେ ବସି ଫାଳେ କାଠ ଗୁଂଚୁଥିଲା । ଏକାଗ୍ରତାର ପ୍ରତିମୂର୍ତ୍ତି । ଜୟନ୍ତର ପାଟିରୁ ବାହାରି ପଡ଼ିଲା 'ଏକ୍ସକଉଜ୍ ମି'···ସେଇଠୁଁ ନିଜକୁ ସୁଧୁରେଇବାକୁ ଯାଇ ହିନ୍ଦୀ,

'ଇଧର କୌନ୍ ରହତା ହୈ'

(କାଠଚଞ୍ଚାରୁ ମୁଣ୍ଡ ନ ଟେକି) 'ହାମ୍ ।'

"ତୁମେ କଣ ଓଡ଼ିଆ ?" ଏମିତି ପ୍ରଶ୍ନ କରି ପଚାରିବା ଉଚିତ୍ ନୁହେଁ। କିନ୍ତୁ ଉପାୟ ନାହିଁ ?

ଏଥର ସେ ଚଣ୍ଟାକାମ ବନ୍ଦ କରି ଜୟନ୍ତ ଆଡ଼କୁ ଅନେଇଲା। ବୃଦ୍ଧାଣୀରେ ବିସ୍ମୟ। କିନ୍ତୁ ସନ୍ଦେହ ଥିଲା ପରି ଲାଗୁ ନାହିଁତ ? ଜୟନ୍ତ ଆଶ୍ୱସ୍ତ ହେଲା। ଆଗ୍ରହ ବି' ଆସିବ...ଆସିବ ଆଉ ଟିକିଏ ପରେ...

'ହଁ। ଆପଣ କୋଉଠୁ ଆସିଛନ୍ତି ?'

ଜୟନ୍ତ ତା'ର ଉତ୍ତର ଦେବା ପୂର୍ବରୁ ପାଖ କୁଡ଼ିଆ ଭିତରୁ ଆଉ ଜଣେ ଲୋକ ବାହାରି ଆସିଲା। ମୁଣ୍ଡଲୁଚିଆ ଚେହେରା, ଅଧା ବୟସ। ହାତରେ ପିତଳ ଗଡୁଟିଏ, ପୂଜାଘରୁ ଉଠି ଆସିଛି ଯେମିତି, ଏବଂ ମୁହଁରେ ପ୍ରଶସ୍ତ ହସ। ଟୋକାର ମୁହଁରେ ହସଟିକେ ଆସିବାକୁ ନାହିଁ ସିନା, ଏଙ୍କର ହସକୁ ଦେଖ ! ସେତିକିବେଳେ ଘର ଭିତରୁ କେଉଁଠୁ ସରୁ କଣ୍ଠର ଧ୍ୱନି ଶୁଣା ଗଲା। ଜୟନ୍ତକୁ ଭଲ ଲାଗିଲା। ଦୂର ବିଦେଶରେ ଓଡ଼ିଆ ବସ୍ତି ଖଣ୍ଡିକ ନୁଖୁରା ନୁହେଁ, ମୋଟେ ନୁଖୁରା ନୁହେଁ। ଧର୍ମ, କର୍ମ, ଘରକରଣା—କଅଣ ନାହିଁ ?

ଜୟନ୍ତ ଅପ୍ୟାୟିତ ହେଲା ଯେ ଧୀରେ ଧୀରେ ଆହୁରି କେତେ ଓଡ଼ିଆ ଲୋକର ଭିଡ଼ ଜମା ହୋଇଗଲେଣି। ଆମର ପରମ ସୌଭାଗ୍ୟ ବୋଲି କେହି କହୁନାହାନ୍ତି, ଏଙ୍କ ଠାରୁ ସେମିତିକା ଚିକଣିଆ କଥା ଆଶା କରିବା ଭୁଲ୍, କିନ୍ତୁ ଆଗ୍ରହ ଜଳ ଜଳ ହୋଇ ଦିଶି ଯାଉଛି। ଅତିଥି ସତ୍କାରରେ ମଧ୍ୟ ଊଣା ନାହିଁ। କିଏ ଜଣେ ଘରକୁ ଡାକିଲା। ଆଉ କିଏ ଖୁଦା ଆଣିବ କି ନାହିଁ ବୋଲି ପଚାରିଲା, ମୁଣ୍ଡରେ ଗାମୁଛା ଭିଡ଼ିଥିବା ମୋଟା ଲୋକ ଜଣେ କେଉଁ ନ ପଚାରି ଚଉକିଟିଏ ପକେଇ ଦେଲା ବସିବା ପାଇଁ। ଜୟନ୍ତ ତା'ର ସମ୍ବିତ ସ୍ୱରୂପକୁ ଆଦୌ କୋହଳ ହେବାକୁ ଦେଲା ନାହିଁ। ପ୍ରକୃତପକ୍ଷେ ତା'କୁ ସେଥିପାଇଁ କଷ୍ଟ କରିବାକୁ ପଡ଼ିଲା ନାହିଁ। ଆତ୍ମୀୟତାର ଭାବ ଦେହସାରା ଜରିଯାଉଛି ବୋଲି ମନେ ହେଲା।

କିନ୍ତୁ ଏ'ଙ୍କ ଭିତରେ ମଉସା ଜଣକ କିଏ ? କେମିତି ଜାଣିବ ?

ନ ଜାଣିଲେ କ୍ଷତି ନାହିଁ । ମୁଁ ଉପ୍‌କେଇବା ପାଇଁ କ ମେଳ ଭାଙ୍ଗିବା ପାଇଁ ଆସି ନାହିଁ ଏଠିକି । ମୋ କାମ ହେଉଛି ତଥ୍ୟ ସଂଗ୍ରହ କରିବା, ଏମାନଙ୍କର ପ୍ରକୃତ ଅଭାବ ଅସୁବିଧା ବୁଝି ନେବା । ସେଇଠୁଁ କଣ କରା ଯାଇ ପାରେ ତା'ର ବିଚାର ପରେ । ଏଇ ମନୋ-ଭାବକୁ ଆହ୍ୱାନ କରି ଜୟନ୍ତ ଅନେକ ପ୍ରଶ୍ନ ପଚାରିଗଲା ଓ ଉତ୍ତର ଟିପି ରଖିଲା ମନେ ମନେ ।

ଯାହା ବୁଝାଗଲା ତା'ର ସାରାଂଶ ହେଲା : ଏମାନେ ଦକ୍ଷିଣ ଓଡ଼ିଶାର ଲୋକ । ଅମର ସିଂହ କଂଟ୍ରାକ୍ଟରର ପ୍ରରୋଚନାରେ ଆସିଛନ୍ତି ଏଠିକି ଛଅମାସ ପାଇଁ, ତିନିମାସ କଟି ଗଲାଣି । ଦୈନିକ ମଜୁରି ଦଶଟଂକା । ଏଇ ଘର ଯୋଗେଇ ଦିଆ ହୋଇଛି, କିନ୍ତୁ ଖାଇବା ପିଇବା ହାତରୁ । ଦିନକୁ ଆଠ ଘଣ୍ଟା କାମ । ମାଲିକମାନଙ୍କ ବ୍ୟବହାର କେମିତି ବୋଲି ପଚାରିଲାରୁ ଶୁଣିବାକୁ ମିଳିଲା—ଯେତିକି ଚପଟ ଆମରି ଉପରେ । ଆମକୁ ଗାଳିମନ୍ଦ କରନ୍ତି ନାହିଁ, ହେଲେ ଅନ୍ୟମାନେ କାମ ଛାଡ଼ି ଦେଇ ବିଡ଼ି ପିଇବେ, ଗୀତ ଗାଇବେ ଆଉ ଆମେ ଟିକିଏ ହେଉଛି ମାରିଲେ···ଇତ୍ୟାଦି । ଏତିକି ଟଙ୍କା ପାଇଁ ଏତେ ଦୂରକୁ କାହିଁକି ଆସିଛ ବୋଲି ପଚାରିଲାରୁ ଗଡ଼ୁଧାରୀ ଖୁସିବାସିଆ ଲୋକଟି କହିଲା—ଅଙ୍କା ଗୋଟାଏ ହୋ'ରେ ଆସିଗଲୁ ତ, ଆଉ କଅଣ ? ଆଉ ଜଣେ ଅର୍ଥନୈତିକ ମନସ୍ତତ୍ତ୍ୱ ଶୁଣାଇଲା । କହିଲା, କଥା ହେଉଛି କଣ କି ଗାଆଁରେ ପିଲାଛୁଆଙ୍କୁ ନେଇ ସବୁ ଟଙ୍କା ଖର୍ଚ୍ଚ ହୋଇଯାଏ, ଏଠି କ'ଣଟା କରିବୁ, ସେଇଲାଗି କିଛି ଟଙ୍କା ଜମେଇ ହୁଏ ।

ମୋଟାମୋଟି ସବୁ ଭଲ । ଆଶଙ୍କାର କାରଣ ନାହିଁ । ଧରିନେବାକୁ ହେବ ଯେ ସେଇ ଗୁର୍‌ନାମ ଲୋକଧାର ବୁଝିବାରେ ଗଣ୍ଡଗୋଳ ହୋଇଛି । କେଉଁ ସାମାନ୍ୟ ଅସୁବିଧାକୁ ନେଇ କିଏ ହୁଏତ କହିଥିବ କଅଣ, ସେଥିରେ ତିଳକୁ ତାଳ କରୁଛି । ଭାଗ୍ୟ ଭଲ, ମୁଁ ଆସି ପହଞ୍ଚିଗଲି ବୋଲି । ତେବେ ସିଧାସଳଖ ପଚାରିଦିଏ ଥରେ । ସନ୍ଦେହ ତୁଟିଯିବ ।

"ତା'ହେଲେ ତମେ ସବୁ ଆଉ ତିନିଟା ମାସ ବିତେଇ କରି ଯିବ—ନୁହେଁ ?"

ଜଣକଠାରୁ ତା'ର ଉତ୍ତର ମିଳିଲା । ଧୀର ଗମ୍ଭୀର କଣ୍ଠ, ମଞ୍ଚରୁ ଘୋଷଣା କଲାପରି,

'ନାଇଁ ଆଜ୍ଞା, ଆମେ ଚାଲିଯିବୁ ବୋଲି ସ୍ଥିର କରିଛୁ ।'

'କଓ କାହିଁକି ?' ଜୟନ୍ତ ପରାଭବର ବିସ୍ମୟକୁ ମାନିଲାନାହିଁ, ଅଯଥାରେ ଦାନ୍ତ ଦେଖେଇଲା ହସିଲା ପରି ।

କିନ୍ତୁ ଉତ୍ତରଦାୟକ କିଏ ବୋଲି ଅନେଇଲାରୁ ତା'ର ମନେ ହେଲା ଯେ ଏଠି ଚପଳତା ଚଳିବ ନାହିଁ । ଲମ୍ବା ଲୋକଟାଏ । ଘଞ୍ଚ ଭ୍ରୂଲତା, ହାଡୁଆ ଗାଲ, ମାଡ଼ ଆସିଥିବା ଥୋମଣି । ନାକ ଆଉ ଟିକିଏ ବଡ଼ ହୋଇଥିଲେ ବୋଧହୁଏ ଆବ୍ରାହାମ୍ ଲିଂକନ୍‌ଙ୍କ ପରି ଦେଖାଯାଆନ୍ତା । ଚାହାଣୀରେ କ୍ରୋଧ ଅଛି କି ନାହିଁ ଜାଣି ହେଉ ନାହିଁ, କାହିଁକିନା ଭ୍ରୂକୁଞ୍ଚନ ହିଁ ତା'ର ଦର୍ଶନ, ସାର ସଂପତ୍ତି ବୋଲି ମନେ ହେଉଛି । ହୁଏତ ଯେତେକ କ୍ରୋଧ ମୁକ୍ତି ନ ପାଇ ସେଇଠି ବସି ଯାଇଛି ବଦଳ ହୋଇ । ତା'ର ମିଛସତ ଲକ୍ଷଣ କେଇଟା ବାହାରକୁ ଦିଶୁଛି—ହେୟଜ୍ଞାନ, ଅସନ୍ତୋଷ, ଅବା ଚିରନ୍ତନ ହୃଦ୍‌ରୋଗର ବ୍ୟଥା । ଏଇ ନିଷ୍ଟୟ ମଜୁସା । ଜୟନ୍ତ ନିଜକୁ ଭିନ୍ନ ଭାବରେ ସଜାଡ଼ିବାକୁ ସଳଖେଇବାକୁ ଚାହିଁଲା ।

ଜୟନ୍ତର ପ୍ରଶ୍ନକୁ ମାଡ଼ି ବସିଲେ ସେମାନେ । ଧରାପରା ହୋଇ କହି ଚାଲିଲେ, —ଚାଲିଯିବୁ ନାହିଁତ ଆଉ କଣ କରିବୁ ? ଏଇ ଅପନ୍ତରାରେ ପଡ଼ି ରହିବୁ ? ( ପାହାଡ଼ ଖୋଳା କାମ କ'ଣ ଗାଆଁରେ ନା ସହରରେ ହେବ ବୋଲି ଭାବିଥିଲ ? )··· ସ୍ତ୍ରୀ ପିଲାଙ୍କ ମୁହଁ ଦେଖୁନାହିଁ ମଣିଷ, ମଲେଗଲେ କେହି ପଚାରିବାକୁ ନାହିଁ ( ଆ-ହା ! ତମ ଘର ଭିତରୁ ଯେଉଁ ନାରୀକଣ୍ଠ ଶୁଣାଗଲା ତା'ର କୈଫିୟତ୍ ଦେଇ ପାରିବ କି ? ) ···କହିଲେ ଶସ୍ତାରେ ଚାଉଳଡାଲି ଯୋଗେଇ ଦେବେ, କିନ୍ତୁ ଚାଉଳ କିଲୋ ପାଞ୍ଚଟଙ୍କା ଏଇ ହେଉଛି ଶସ୍ତା ! ( ଦରଦାମ ଆଗରୁ ଛିଣ୍ଡେଇଲ ନାହିଁ, କିଏ ମନା କରୁଥିଲା ? ) ··ଯୋଉ ହାଡଭଙ୍ଗା ଖଟଣି ( ମାନୁଛି, କିନ୍ତୁ ପଥରକଟା ମାଟିବୁହା କାମ ଏମିତି ହେବବୋଲି ଜାଣି ନ ଥିଲ ? ) ···ଭଲକରି ପାଣି ମଧ୍ୟ ମିଳୁନାହିଁ, ଖାଲି ଆଗରେ ଯୋଉ ପାଣିଧାର-

ଖଣ୍ଡିକ, ଗୋରୁ ମୁଣ୍ଡଲ ପରି ( ଭଗବାନ୍ ! ଝିରଣାର ମୂଲ୍ୟ ଏଇଆ ବୁଝିଲ ତୁମେ ? )···

ମିଛ, ମିଛ, ମିଛ ନ ହେଲେ ମଧ୍ୟ ଅଧା ସତ । ଖାଲି କହିବା ପାଇଁ କହୁଛ । ମଉସା କଥାରେ ପାଳ ଦେବା ପାଇଁ କହୁଛ । ନହେଲେ ମୂଳରୁ ଗୁହାରି କରିଥାଆନ୍ତ । ଭଣ୍ଡେଇ ନଥାଆନ୍ତ ମୋତେ ଯେ ଆମେ ଅଛୁ ଚୋଟାଏ ରକମର । ନା, ମୁଁ ପାରିବ ନାହିଁ । ତମ ମଉସା ମୁହଁରୁ ଶୁଣିବ । ଜୟନ୍ତ ଅପେକ୍ଷା କଲା ।

ତା'କୁ ବେଶି ସମୟ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । ମଉସା ଜଣକ ଆନ୍ୟମାନଙ୍କୁ ହାତ ଦେଖେଇ ଚୁପ୍ କରେଇ ଦେଲା, ଓ ପୁଣି କହିଲା,

"ଏଣୁତେଣୁ କାରଣ ଦେଇ କିଛି ଲାଭ ନାହିଁ । ଆମେ ଚାଲିଯିବୁ । ବାସ୍ ।"

ମହା ଜିଦିଖୋର୍ ଲୋକ ! ଚ୍ୟାଲେଞ୍ଜ କଲା ପରି ଛିଡ଼ାହୋଇଛି, ମାରିବ ଯଦି ମାର, କ'ଣ କରୁଛ କର ··ଭୁରୁକୁଞ୍ଚା ହେମିତକୁ ସେମିତ ଅଛି । ଏଥି ଉତ୍ତରରୁ କଅଣ ବୋଲି ଜୟନ୍ତ ଭାବିହେଲା । ତେବେ ସେଇ ଲୋକର ଆହୁରି କିଛି କହିବାକୁ ଥିଲା,

"ଗାଆଁରେ କିଛି ନାହିଁ ଆମ ପାଇଁ, ଭୂମି ନାହିଁ, ଅନ୍ନନାହିଁ, ନଜର ଘରଖଣ୍ଡେ ନାହିଁ । ଏଠି ମଧ୍ୟ କିଛି ନାହିଁ । ଆମେ ବାପାମାଆ ଛଜଣ । ଆସିଥିଲୁ ଚାଲିଯିବୁ । ଆମର ଇଚ୍ଛା ହେଲା ଚାଲିଯିବୁ । କିଏ କାହିଁକି ମନା କରିବ ଆମକୁ ?"

ସ୍ତବ୍ଧ ଚେତନାକୁ ସହି ହେଲାନାହିଁ । ଜୟନ୍ତର ମନ ହେଲା ବକବକ ହେବ । କହିବ—ମଉସା ମୁଁ ତମକୁ ମନା କରିବ । ସୁଡ଼ଙ୍ଗ ଚୂଲିକୁ ଯାଉ, ଚେୟାରମ୍ୟାନ କୁହନ୍ତୁ ମୋଦେଇ କିଛି ହେଲା ନାହିଁ, ସେଥିକୁ ମୁଁ ପରୁଆ କରି ନାହିଁ । କିନ୍ତୁ ତମେ ଏଭଳି ପ୍ରଚଣ୍ଡ ଅଭିମାନ କରି ଚାଲିଯାଇ ପାରିବ ନାହିଁ, ଆମେ ତମକୁ ଛାଡ଼ିବୁ ନାହିଁ । ବିଶ୍ୱାସ

କର ଆମ ଦେଶ ବଦଳୁଛି, ଏଠି ସୁନା ଫଳିବ, ସେଠିବି ଫଳିବ···ତମକୁ ନେଇ। କେବେହେଲେ କଣ ଆମ ଆଖିରୁ ସତ ଲୁହ ଝରିବ ନାହିଁ ବୋଲି ଭାବୁଛ ?

"ଆଜ୍ଞା, ଆମେ ଯିବୁ। ଫେରସ୍ତ ବାଟ ଖର୍ଚ୍ଚ ନ ଦିଅନ୍ତୁ ପଛେ···"

ନା ! ···ହେଉ, ସେଇଆ। ସେତିକି ଥାଉ ଅନ୍ତତଃ, ନାହିଁ କରିବାର ସ୍ୱାଧୀନତା। ବର୍ତ୍ତମାନକୁ ଛିଃ କରି ଚାଲିଯାଇ ପାରିବାର ଗର୍ବ, ମହାରଣରୁ କାନ୍ତାରକୁ ଲେଉଟିବାର ଅଧିକାର। ଏହା'ଠାରୁ ଦାମିକା ଆଉ କଣ ଦେଇ ହେବ ମଉସାକୁ ?

·· ଡାକବଙ୍ଗଳାକୁ ଫେରିଗଲା ପରେ ଜୟନ୍ତ କଣ୍ଟ୍ରାକ୍ଟରଙ୍କୁ ଓଡ଼ିଆ ଲେବରଙ୍କ ଅଭାବ ଅସୁବିଧା ଜଣାଇବାକୁ ବସିଲା। ଜଣାଇଦେଲେ ଗଲା। କିନ୍ତୁ ସେ ଆରମ୍ଭ କରୁ ନ କରୁଣୁ ମିଷ୍ଟର ଗୁର୍‌ନାମ କେଉଁଠି ଥିଲେ ପହଞ୍ଚିଗଲେ ଓ ମହା ଆନନ୍ଦରେ ଟେବୁଲରେ ହାତ ବାଡ଼େଇ କହିଲେ, 'ଶୁଣନ୍ତୁ। କାମ୍‌ଫତେ। ମିଷ୍ଟର ରଥଙ୍କୁ ଆଉ କଷ୍ଟ କରିବାକୁ ପଡ଼ିବନାହିଁ। ଅମର ସିଂ ଲୋକଟାକୁ ମେଡ଼ାଲ ମିଳିବା ଉଚିତ। ଆଜି ସକାଳେ ବିହାରରୁ ଫେରିଛି, ଗୁଡ଼ାଏ ବିହାରୀ ଲେବରଙ୍କୁ ଧରି ଆଣିଛି···ମାନେ ଏଇ ହପ୍ତାକ ଭିତରେ ଆସିଯିବେ···ଆଉ ଚିନ୍ତା ନାହିଁ ଏଥର··· ( ଜୟନ୍ତ ଆଡ଼କୁ ଅନେଇ ) ଆପଣଙ୍କ ଓଡ଼ିଆ ଲେବର, କ୍ଷମା କରିବେ, ଯାଆନ୍ତୁ କେଉଁ ଗାତକୁ ଯିବେ···"

ପ୍ରଶଂସାର କଳରୋଳ ମଧ୍ୟରେ ଜୟନ୍ତ କେବଳ ଭଗବାନଙ୍କୁ ଡାକିଲା ଯେ ମଉସା କାନରେ ଏ କଥା ନ ପଡ଼ୁ, ସେ କାଲି ଦିଅରିଦିନ ଚାଲିଯାଉ ଏଠୁଁ, ତା' ପୁଅପୁତୁରିଙ୍କୁ ନେଇ। ନହେଲେ ତା' 'ନା' ପଦର ଯଶ ରହିବ ନାହିଁ।



# ରାଜଚବେଶ

ପୁରୁଷୋତ୍ତମ ପାଣି ଆପଣା ଘର ବାଲ୍‌କନିରେ ଆସି ଠିଆ-ହେଲେ । ସବୁଦିନେ ପ୍ରାୟ ଏତିକିବେଳକୁ ତାଙ୍କ ଦର୍ଶନ ମିଳେ । ବଡ଼ ସକାଳୁ ନୁହେଁ, ଯେତେବେଳେ ସାହିର ଲେଟାଧରା ଦାନ୍ତକାଠି ଘେଞ୍ଚୁବାଉ-ଥିବା ପୁରୁଷବିଶେଷ ଏବଂ ରାସ୍ତାର ଝାଡୁଦାରଙ୍କ ଛଡ଼ା ଆଉ କେହି ଦେଖଣାହାରି ନ ଥାଆନ୍ତି । ନା, ଗହଳି ଅଳ୍ପବହୁତ ବଢ଼ିଲାପରେ, କିନ୍ତୁ ଅଫିସ କଚେରି ସ୍କୁଲ କଲେଜ ଭିଡ଼ ଲାଗିଲା ପୂର୍ବରୁ ପାଣିସାହେବ ଆସନ୍ତି ଏଠିକି । ସ୍ନାନ ଓ ପ୍ରସାଧନ ସାରି ତାଙ୍କର ପାଞ୍ଚଫୁଟିଆ ଚେହେରାକୁ ଧୋବଧାଉଳିଆ ସାର୍ଟପ୍ୟାଣ୍ଟରେ ମଣ୍ଡି କିଛି ସମୟ ଛିଡ଼ା ହୋଇ ରହନ୍ତି । ତା'ପରେ ନିଜର ଖାସ୍‌କମରାକୁ ଯାଆନ୍ତି । ବାରିଷ୍ଟରଙ୍କ କାମ ଆରମ୍ଭ ହୋଇଗଲା ବୋଲି ବୁଝିବାକୁ ପଡ଼େ ।

ସେହି ସମୟରେ ଅପର ଘରମାନଙ୍କର କାମ ଆରମ୍ଭ କରୁଥିବା ଲୋକେ ପାଣି ସାହେବଙ୍କୁ ଦେଖି ମୁଗ୍‌ଧ ହୁଅନ୍ତି । ଦି'ମହଲା କୋଠା ତଥା ବିବିଧ ବିଳାତି ଫୁଲ ଓ ଲତାଗୁଳ୍ମଙ୍କୁ ନେଇ ଧାଡ଼ି ବାନ୍ଧିଥିବା ଫୁଲକୁଣ୍ଡମାନଙ୍କର ଗାରିମା କିଛି ବଡ କଥା ନୁହେଁ । ଯେତେହେଲେ ସହର, ତେଣୁ ଏଠି ଏଭଳି ଘର-ବାଲ୍‌କନି ବିରଳ ନୁହେଁ । କିନ୍ତୁ ଏତାଦୃଶ ସାହେବ ଏବଂ ତାଙ୍କ ବ୍ୟକ୍ତିତ୍ୱର ପ୍ରକାଶ କ୍ୱଚିତ୍ ଦେଖିବାକୁ ମିଳେ । ଯାହାଙ୍କ ଚେହେରା ଆଖି ଉଠିଲା ଦିନୁ ସେମିତି ଗୋରା, ତୋଫା ଓ ଚିକ୍‌କଣ ଦେଖାଯାଉଛି । ଗୋଟିଏ ବୋଲି କେଶ ପାଚି ନାହିଁ କି ସୀମା ଲଙ୍ଘନ କରି ପଦାକୁ ଯାଇ ନାହିଁ । ଯାହାଙ୍କ ବେଶଭୂଷା ଏତିକି-ବେଳକୁ ଠିକ୍ ଏମିତି । ଶାଣିତ ସମୁଜ୍ଜ୍ୱଳ ସାର୍ଟପ୍ୟାଣ୍ଟ । ଯଥାସମୟରେ ସେ ହାଇକୋର୍ଟ୍‌ଲାଖି ବେଶ ପିନ୍ଧି ତଳକୁ ଓହ୍ଲାଇବେ ଓ ତାଙ୍କ ପାଇଁ ଅପେକ୍ଷା କରି ରହିଥିବା କାର୍‌ରେ ବସିବେ । ଦିନ ଶେଷରେ ସାନ୍ଧ୍ୟ ପୋଷାକ ପିନ୍ଧି କ୍ଲବ୍‌କୁ କିମ୍ବା ଆଉ କେଉଁଠିକି ଯିବେ । ସେତେବେଳର ବେଶ ତହୁଁ ବଳି ସୁଦୃଶ୍ୟ, ସନ୍ଦେହ ନାହିଁ । କିନ୍ତୁ ସକାଳୁ ଅନ୍ୟମାନେ

ପରସ୍ପରକୁ ଲୁଙ୍ଗି, ଛିଣ୍ଡା ଗେଞ୍ଜି ଅଥବା ଫୁଙ୍ଗୁଳା ଦେହର ଅମର୍ଯ୍ୟାଦା ଦେଖେଇ ବୁଲୁଥିଲାବେଳେ ପାଣି ସାହେବ ଏମିତି ଫିଟ୍‌ଫାଟ୍ ହୋଇ ଜନସମ୍ମୁଖରେ ବିରାଜମାନ, ଦିନ ପରେ ଦିନ ପ୍ରତିଦିନ, ଏଇ ଚମତ୍କାରିତା ଦେଖାଣାହାରୀଙ୍କୁ ଅଭିଭୂତ କରେ । ଯାହା କୁହ, ଲୋକଙ୍କର ପରିଚାଳନାଶକ୍ତି ଅଛି । ସତେକି ବାରିଷ୍ଟର ବୃତ୍ତିର ସୁନାମକୁ ଖାପ୍ ଖାଇଲାପରି ଏଇ ଚେହେରା, ଏଇ ବେଶ—ବିଧାତା ବିଜ୍ଞାଣିର ମଡ଼େଲ ।

କେତେକ କୁହନ୍ତି ଯେ ସେ ନିୟମିତଭାବରେ ବାଳ ରଙ୍ଗାନ୍ତି । ହାତପାପୁଲିର ରୁମକୁ ମଧ୍ୟ ଛାଡ଼ନ୍ତି ନାହିଁ । କୁହନ୍ତି ଯେ ଗୋଟାଏ ନକଲି ଦାନ୍ତ ଧାଡ଼ିରେ ଖଞ୍ଜି ହୋଇ ଯାଇଛି । ପୁଣି କୁଆଡ଼େ ବିଲାତରୁ ମଗେଇଥିବା କୋଉ ଔଷଧ ଚମରେ ବୋଳନ୍ତି । ତଥାପି ସେମାନେ ସ୍ୱୀକାର କରିବାକୁ ବାଧ୍ୟ ହୁଅନ୍ତି ଯେ ସ୍ୱାଙ୍କୁ ସାହେବ ନ କହିଲେ ଆଉ କହିବ କାହାକୁ ? ସମକକ୍ଷ ପ୍ରବୀଣ କିନ୍ତୁ ପେଟୁଆ ଆଇନଜୀବୀ ମୁକୁନ୍ଦ ମାହାନ୍ତି ? ଧୋଇ କାନରେ ଓଠରୁ ପାନବୋଳ ପୋଛୁଥିବା ମହାନ୍ ବକ୍ତା-ନେତା ଯଦୁ ମିଶ୍ର ? ନା ଧୋକଡ଼ ଚମ ବୃଦ୍ଧ କେତେ ଜଣ ? ଯେଉଁମାନଙ୍କୁ ବିଶିଷ୍ଟ ସଭାସମିତିରେ ପାଣି ସାହେବଙ୍କ ସହ ଏକ ଧାଡ଼ିରେ ବସିବାର ଦେଖାଯାଏ ? ନା, ତତୋଧିକ ଗୁଣୀ ଅନେକ ଥାଇପାରନ୍ତି; କିନ୍ତୁ ସେମାନଙ୍କୁ ସାହେବ ବୋଲି କଦାପି କୁହାଯାଇ ନ ପାରେ ।

କିନ୍ତୁ ଆଲୋଚକବର୍ଗ କଣ ପାଣିସାହେବଙ୍କ ଅସଲ କୃତିତ୍ୱ ଅନୁମାନ କରିପାରିବେ ? ଯେ ଏହି ସୌଖୀନ ପରିଚ୍ଛନ୍ନତାକୁ ସେ କେତେ କଷ୍ଟରେ ବଞ୍ଚେଇ ରଖିଛନ୍ତି ? ପ୍ରଥମରେ ଖାସଦରଜୀ ଓ ଧୋବା, ଲେସନ୍, ବ୍ୟାୟାମ ଇତ୍ୟାଦିରେ କୁଶଳତା । ଦ୍ୱିତୀୟରେ ଏବଂ ପ୍ରଧାନତଃ ମନ । ମନଟା ଅସଜଡ଼ା ହୋଇଥିଲେ ଢଙ୍ଗ ମୋଡ଼ ହୋଇଯିବାକୁ କେତେ ସମୟ ଲାଗିବ ? ଆଖିତଳ କଳା ଗାରକୁ କିଏ ଲୁଚେଇ ପାରିବ ? କୃତିତ୍ୱର ସାରମର୍ମ ହେଉଛି ଯେ ଘରେ ବାହାରେ ଅଶାନ୍ତି-ଜନକ ଯାବତୀୟ କଳୁଷରେ ଘାଣ୍ଟି ହେବାକୁ ପଡ଼ିଲେ ମଧ୍ୟ ସେ ସେଥିରୁ ନିଜକୁ ଦୂରେଇ ରଖିପାରିଛନ୍ତି । ବେଳେବେଳେ ତାଙ୍କର ମନେ ହୁଏ ଯେ ଏଇ ହେଉଛି ଅନାସକ୍ତ ଯୋଗ । ଫୌଜଦାରୀ ଓକିଲ ହୋଇଥିବାରୁ

(ଜମିଜମା ମହାଜନ ମାମଲାକୁ ସେ ଘୃଣା କରନ୍ତି) ଗଦାଗଦା ଦୁଷ୍ଟ ଦୁରାଚାରୀମାନଙ୍କ ସହ ଜଡ଼ିତ ହୋଇ ରହିଲେ ସୁଦ୍ଧା ସେମାନଙ୍କ ଧୂଳିମଇଳା ତାଙ୍କୁ ଛୁଇଁପାରି ନାହିଁ । ଫିସ୍ ମିଳିଲା ପରେ ସେମାନେ କେସ୍ ହାରି ଜେଲ ଗଲେ ବି ତାଙ୍କର ଦୁଃଖ ନାହିଁ, ପୂରା ଫିସ୍ ନ ମିଳିଲାଯାଏ । କେସ ଜିତିଲେ ସୁଖ ନାହିଁ, ତେବେ ସେମାନେ ପୁଣି ଆଉ କାହା ଘରେ ଡକେଇତି କରି ଫିସ୍‌ଟିକ ପୂରା କରିଦେଲେ ଭଲ କଥା । ଏଭଳି ନିର୍ଲିପ୍ତତା କଣ ସହଜେ ଆସିଯାଏ ?

ଅଧିକତର ଦାରୁଣ ପରୀକ୍ଷା ହେଉଛି ବାଲ୍‌କନି ପଛରେ ଆନ୍ଦୋଳନ । ତାକୁ ସମ୍ଭାଳିନେଇ ଢଙ୍ଗ ଠିକ୍ ରଖିପାରିବା ସହଜ କଥା ନୁହେଁ । ଏଇ ଶୁଣନ୍ତୁ, ଆଜିକାଲି ସକାଳେ ମଧ୍ୟ ତା'ର ଧ୍ୱନି ଶୁଭୁଛି, ବିନଷ୍ଟ ମହାଭାରତର ଗୁ ରୁଗୁ ରୁ । ଗୁ ରୁଗୁ ରୁ ନୁହେଁ, ଗରଗର । ତାକୁ ଶୁଣି ଶୁଣି, ହେଲେ ପଛରେ ପକେଇ, ଏଇ ବେଶ ଏଇ ଚେହେରାକୁ କେତେ ଜଣ ବଜାୟ ରଖିପାରିବେ ? ସକାଳର ଜନତାକୁ ଏଭଳି ଉଦାରପ୍ରସନ୍ନ ମୁଦ୍ରାରେ ଛୁଇଁପାରିବେ ?

ନିତିଦିନିଆ ବ୍ୟାପାର । ବେଳକାଳ ନାହିଁ, ପ୍ରତ୍ୟକ୍ଷ କାରଣ ଲୋଡ଼ା ନାହିଁ, ବରଜାଙ୍କର କେତେବେଳେ ମୁଣ୍ଡକୁ ପିତ୍ତ ଚଢ଼ିବ କେହି ତା'ର ସୂଚନା ଦେଇପାରିବେ ନାହିଁ । କେବଳ ଗର୍ଜନ ହୋଇଥିଲେ ତା'ର ମୁକାବିଲା କରିହୁଅନ୍ତା । କୋର୍ଟରୁମ୍‌ରେ ପାଣିସାହେବ କେମିତି ହୁଁ କାରଣ ଅପରପକ୍ଷର ପିଳେହିପାଣି କରିଦିଅନ୍ତି, ତାହା ଅନେକ ଦେଖିଥିବେ । ଯେତେ କଟୁଭାଷାରେ ହେଉନା କାହିଁକି, ସିଧାସଳଖ କଳି କଲେ ଯୁକ୍ତି କଲେ ତ ଆହୁରି ଭଲ, ବାରିଷ୍ଟର ସାହେବ ତା'ର ସମୁଚିତ ଜବାବ ଦେଇପାରିବେ । କିନ୍ତୁ ଗରଗର, ତହୁଁ ରବେଇଖବେଇ, ଶେଷକୁ କଟାସମ୍ପା, ତାକୁ କ'ଣ କରିହେବ ? କିଛି ନାହିଁ । ଖାଲି ନିର୍ମମ-ଭାବରେ ( ଏକଦା ନିର୍ମମ ଥିଲା, ଏବେ ସ୍ୱାଭାବିକ ) ମାନସପଟରୁ ପୋଛି ଦେବା କଥା । ହଉ, ହଉ, ଯାହା କହିବାର କହିଯାଉ । ଧରିନିଅ, ମୋର ଯୋଗୁଁ ପୂଜାଘର ଭିତରଟାକୁ ଜାଉ କରି ଥୋଇଲି, ସୁକରାଣୀ ବାସନ ଫାଟେଇଲି, ଶୋଇବା ଘର ନଳା ଭିତରୁ କଙ୍କଡ଼ା ବିଛା ବାହାରିଲା, ସାନଟା ଛତରା ହୋଇଗଲା, ତାଙ୍କ ସ୍ୱାସ୍ଥ୍ୟ ନାରଖାର ହୋଇଗଲା,

ଇତ୍ୟାଦି ଇତ୍ୟାଦି, ଏବଂ ସର୍ବୋପରି ତାଙ୍କ ଜୀବନ ନଷ୍ଟ ହୋଇଗଲା । ଧରିନିଅ ଏବଂ ଭୁଲିଯାଅ, ପୋଛି ଦିଅ । ଯେହେତୁ ପ୍ରଧାନ ଅଭିଯୋଗମାନ ମିଥ୍ୟା, ପିଲା କେହି ଛତର ହୋଇ ନାହାନ୍ତି, ସେ ତାଙ୍କ ବୟସକୁ ଠିକ୍ ଅଛନ୍ତି, ସମସ୍ତେ ମୋପରି ସ୍ୱାସ୍ଥ୍ୟ ପାଇବାକୁ ଆଶା କରିବା ଭୁଲ, ଏବଂ ସାମାନ୍ୟ ଅଭିଯୋଗମାନ ଅବାନ୍ତର । ମୋଟ ଉପରେ ତାଙ୍କ ଜୀବନ ନଷ୍ଟ ହୋଇ ନାହିଁ । ସେ କେମିତି ଗୋଡ଼ ଲମ୍ବେଇ ଘଣ୍ଟା ଘଣ୍ଟା ଧରି ପଡ଼ୋଶୀ ମାଉସୀ ପିଉସୀ ଗଣ୍ଡୀଖଣ୍ଡୀଙ୍କ ସାଙ୍ଗରେ ଗପ ଜମାନ୍ତି, ଢଗ ବୋଲନ୍ତି, ହସି ହସି ଗଡ଼ିଯାଆନ୍ତି, ତା'ର ଦୃଶ୍ୟ ମୁଁ କଣ ଦେଖିନାହିଁ ? ଯଦିଓ ମୁଁ ନ ଥିଲାବେଳେହିଁ ସେ ଏହି ପ୍ରକାର ସୁଖ କରିବାକୁ ଚାହାନ୍ତି । ଭଲ, ଭଲ, ଏଇ ଆମ ଘରକରଣା, କ୍ଷତି ନାହିଁ । ଠାକୁରେ ବଡ଼ଲୋକ । ସେ ଏମିତି ବ୍ୟବସ୍ଥା କରିଛନ୍ତି ଯେ ମହାକାଳ ତା' ଅନ୍ଧାରରେ ଯାହା କଲେ କରୁ, ବିରଜା ପରଦା ପଛରେ ଯାହା କହିବାକୁ କୁହନ୍ତୁ, ରସନ୍ତୁ, ମୋ ସଂସାରରେ ସେମାନଙ୍କ ଛାଇ ପଡ଼ିବ ନାହିଁ । ବିରଜା କେବେହେଲେ ପରଦା ଆଗକୁ ଆସିବାପାଇଁ ଇଚ୍ଛା ପ୍ରକାଶ କରି ନାହାନ୍ତି । କ୍ଲବରେ, ପାର୍ଟିରେ, ସଭାସମିତିରେ ସାଥୀ ହେବା ଦୂରର କଥା । ଅକସ୍ମିକ ଦୁଃସ୍ୱପ୍ନ, ଯେ ଦାଣ୍ଡମଝିରେ ସେ ପୁରାଣ ଆରମ୍ଭ କରିଦେଇଛନ୍ତି, କେବଳ ଦୁଃସ୍ୱପ୍ନରେ ରହିଯାଇଛି । ଠାକୁରଙ୍କ ମହିମା । ମୋର ସଭ୍ୟ ସମାଜ ସ୍ଥିର କରିନେଇଛି ଯେ ମୋ ସ୍ତ୍ରୀ ମୋପରି ନୁହେଁ, ସଂପୂର୍ଣ୍ଣ ଭିନ୍ନ—ମଫସଲଆଣୀ, କମ୍ପା ରୋଗିଣୀ, ହୁଏତ ପାଗଳୀ । କିନ୍ତୁ ମୋ ଇମେଜ୍‌ରେ ଟିକିଏ ହେଲେ ଆଞ୍ଚ ଲାଗିନାହିଁ କି ଲାଗିପାରିବ ନାହିଁ । ଠାକୁରେ···

ଠାକୁରଙ୍କ ପ୍ରତି ଏଇ ଅଗାଧ ବିଶ୍ୱାସ ପାଣିପାହେବଙ୍କ ଚରିତ୍ରର ଅନ୍ୟତମ ଚମତ୍କାର । ସ୍ନାନପ୍ରସାଧନପରେ ସେ ତାଙ୍କ କୃଷ୍ଣଙ୍କ ପାଖରେ ଯେଉଁ ମୁଣ୍ଡିଆଟିଏ ମାରନ୍ତି—ଇଏ ତାଙ୍କ ନିଜ ରୁମର କୃଷ୍ଣ ବିରଜାଙ୍କ ଠାକୁରଘରେ ଭେଳାଭେଳା ହେଉଥିବା ଦେବଦେବୀଙ୍କ ସାଙ୍ଗରେ କିଛି ସଂପର୍କ ନାହିଁ ତାଙ୍କର—ସେଥିରେ ଏଇ ବିଶ୍ୱାସର କୃତଜ୍ଞତା ଉଚ୍ଛୁଳିଆସେ । ଯାହା ପାଇଛନ୍ତି, ତା' ବଦଳରେ ନିଜ ତରଫରୁ ମଧ୍ୟ କିଛି କରିବା ଦରକାର, ଦାନଧର୍ମ ଓଗେର, ଏଭଳି ନୀଚ ଧାରଣା ତାଙ୍କ ମନକୁ ଆସେ ନାହିଁ । ମୁଁ କ'ଣ ଜଷ୍ଟିସ ଗୁପ୍ତଙ୍କ ପାଖକୁ ( ସେ ମୋତେ କେସ୍

ଜଡେଇବାକୁ ଭଲ ପାଆନ୍ତ ) ନା ଆଉ କୋଉ ଜଷ୍ଟିସ ବା ମନ୍ତ୍ରୀ ଗଭର୍ଣ୍ଣର୍‌ଙ୍କ ପାଖକୁ ଡାଲି ସଜେଇ ପଠେଇଛୁ ? ନା ମୁଁ ଏବେଜାଙ୍କ ପଛ ହୋଇଛୁ ଯେ କଣ୍ଠାସମ୍ପା ଭିତରେ ଦେବୀଙ୍କୁ ମନେଇବ, ଲାଞ୍ଚ ଦେବ— ମାଆ ଲୋ ମା, ମୋତେ ମୁକ୍ତ ଦେ, ମୁଁ ଯୋଡ଼ାଏ ବୋଦା କଟେଇବି ତୋପାଇଁ ? ଭାବଲକ୍ଷଣି ତାଙ୍କ ଦେହ ଶୀତେଇଉଠେ । ଜମିଯାଇଥିବା କଳା ରକ୍ତ, ମାଛି ବେଢ଼ିଯାଇଛନ୍ତି । ଠାକୁରଙ୍କ ସାଙ୍ଗରେ ତାଙ୍କ ସମ୍ପର୍କ କଭଳି ସୂକ୍ଷ୍ମ, ସଭ୍ୟ ଓ ସୌଖୀନ, ଗଣ-ଚେତନାର କେତେ ଊର୍ଦ୍ଧ୍ୱରେ, ତାର ଅନୁଭବ ପ୍ରବଳ ହୋଇଉଠେ । ଏପରିକି ସେ ବେଳେବେଳେ ବିକ୍ଷିପ୍ତ ଥରପାଇଁ ମୁଣ୍ଡିଆ ମାରନ୍ତି ।

ଖାଲି ଦାମୁ ବରଙ୍ଗର ଭଗବତ୍‌ପ୍ରେମ ତାଙ୍କୁ ଅକାଳେସକାଳେ କୁତୁକୁତୁ କରେ । ତା'କୁ କଦାପି ଉଚ୍ଚ ଆସନ ଦେଇ ହେବ ନାହିଁ, ଅଥଚ ତୁଚ୍ଛ ମଣିବାକୁ ସତ ବଳିବ ନାହିଁ । ଦାମୁର ମଧ୍ୟ ଅତୁଟ ବିଶ୍ୱାସ ଯେ ସେ ଭଗବାନ୍‌ଙ୍କ ପ୍ରିୟ । ବେଶ୍, ସେଥିରେ ମନା ନାହିଁ । ତା' ହିସାବରେ ସେ ମଧ୍ୟ କିଛି ପାଇଛି । ଗରିବ ବୋଲି ତା'ର ପାଉଣା ନାହିଁ, ବା ସେଥିର ଭାଉ ନଗଣ୍ୟ, ଏଭଳି ଭାବିବା ଅନ୍ୟାୟ । ଏହି ସମ୍ପର୍କରେ ମନେ ରଖିବାକୁ ହେବ ଯେ ପାଣି ସାହେବ ନିଖିଳ ଉତ୍କଳ ଗଣତାନ୍ତ୍ରିକ ବିସ୍ତରମଞ୍ଚର ଉପସଭାପତି । କିନ୍ତୁ ତାଙ୍କୁ ମଜା ଲାଗେ ଯେ ଲୋକଟା ଭଗବାନ୍‌ଙ୍କୁ ଦୋସ୍ତ ବୋଲି ମନେ କରେ । ବୋଧହୁଏ ଭାବେ ଯେ ଯଦି ସେ ମୋ ଭଳି ଜଣେ ଗୁଣୀମାନୀ ବଡ଼ଲୋକର ଦୋସ୍ତ ହୋଇ-ପାରିଛି, ତା'ହେଲେ ଭଗବାନ୍‌ଙ୍କ ଦୋସ୍ତ ହେବ ନାହିଁ କାହିଁକି ? କୁହେ କଣ ନା ବଳୟାରଭୁଜ ତା' ସାଙ୍ଗରେ ଧସ୍ତାଧସ୍ତି ଠେଲାପେଲା ହୋଇଛନ୍ତି । ସେଇଥିପାଇଁ ତା' ବାହୁରେ ଏତେ ବଳ, ଆସି ଷାଠିଏ ହେଲାଣି ତଥାପି ସେ ସିଲେଇମେସିନ୍ ଚଳଉଛି ତ ଚଳଉଛି, ମୋଟେ ଥକିବାକୁ ନାହିଁ । ଏବଂ ସେଇ ଜଗାର ଇଙ୍ଗିତରେ ବଡ଼ ଲୋକମାନେ ତାକୁ ଅଦ୍ୟାବଧି ଛାଡ଼ିବାକୁ ନାହାନ୍ତି । ପାଣି ସାହେବଙ୍କୁ ହସମାଡ଼େ । ପ୍ରଥମ କଥା, ତୋର ଏଇ ଗୋଡ଼ ସିଲେଇମେସିନ୍‌ରେ ବାହୁବଳର ପ୍ରଶ୍ନ ଉଠ୍ ନାହିଁ । ତା'ଛଡ଼ା ଆମ ସହରରେ ଏକାଧିକ ଟେଲରିଙ୍ଗ୍ ହାଉସ୍ ଟାଇପିଙ୍ଗ ମାଷ୍ଟର ଟେଲର୍‌ଙ୍କୁ ନେଇ ଗଢ଼ି ଉଠିଲାଣି । ଆଜକାଲି ତୋତେ ପଚୁରେ

କିଏ ? କହିବାକୁ ଗଲେ ପାଣି ସାହେବଙ୍କ ପରି ଲୋକ ତା ଘରଖିଆ ବୋଲି ସେଇ ଅମଳର ଥୋକେ ଚୋଟେ ସୁଟ୍ ବଗଡ୍ ଉଡାଉନ୍ତି ଏବଂ ଶସ୍ତାରେ ଖସିଯାଆନ୍ତି । କିନ୍ତୁ ପାଣିସାହେବ ତା ମୁହଁରେ କିଛି କହନ୍ତି ନାହିଁ । ପରିହାସ ଛଳରେ ମଧ୍ୟ ତା'ର ବଡେଇକୁ ଲଘୁ କରିବାକୁ ଚାହାନ୍ତି ନାହିଁ । ଭାବନ୍ତି ଯେ ତାଙ୍କ ସଂସାରରେ ଏଇ ଗୋଟିଏ ଅନାବିଳ ସ୍ବପ୍ନମହଲ, ଆମୋଦ ଆନନ୍ଦର ଉତ୍ସ ରହିଯାଇଛି, ତା'କୁ ହାତଛଡା କରିବାର ନୁହେଁ ଏବଂ ସେ ପୁଣି ଥରେ ନିଷ୍ପତ୍ତି କରନ୍ତି ଯେ—ନା, ମୋ ପିଲାମାନେ ଯେଉଁ ଟେଲର ପାଖକୁ ଯାଆନ୍ତୁ, ଆଧୁନିକ ଫେସନ୍ ଯାହା ହେଉ ପଛକେ, ମୁଁ ମୋ ଦାମୁକୁ ଛାଡ଼ିବି ନାହିଁ । ପୋଷାକ ସିଲେଇରେ ତା'କୁ କିଏ ବଳେଇଯିବ କହିପାରୁ ନାହିଁ, କିନ୍ତୁ ଜଗା ମୋ ସାଙ୍ଗ—ତମେ ମୋ ସାଙ୍ଗ, ଏହି ରସୋତ୍ତୀର୍ଣ୍ଣ ବନ୍ଧୁତ୍ବର ଭେଟି ଆଉ କିଏ ଆଣି ଦେଇପାରିବ ?

ଦାମୁ ପାଣି ସାହେବଙ୍କୁ "ତମେ" କୁହେ, ଆପଣ ପଦଟି ହେଲେ ନାହିଁ ତା' ଦେଇ । ସେ ନିଜେ ତା'ର ସଫେଇ ଦିଏ । କୁହେ—ମୁଁ ଷଡ଼ଙ୍ଗୀବାବୁଙ୍କୁ ଦାସବାବୁଙ୍କୁ ଆପଣ ଡାକୁଛି, ତମକୁ କଣ ଡାକିପାରନ୍ତି ନାହିଁ ? କିନ୍ତୁ ସେମିତିରେ ତମେ ଦୂରକୁ ପଳଉଛ । ମୋର ମନେ ପଡୁଛି ମୋର ବା' ଯେତେବେଳେ ବଞ୍ଚିଥିଲେ ଆଉ ମୁଁ ତା' ଲଙ୍ଗୁଡ଼ ହୋଇ ଯାଉଥିଲି ତମ ଘରକୁ, ତମ ପୁରୁଣା ଘରକୁ । ତମେ ମୋତେ କୋଳି ତୋଳିବାକୁ ଡାକିନେଉଥିଲ । ଥରେ ଝୁଣ୍ଟି ପଡ଼ିଲି ଯେ ଆଣ୍ଠୁ ଗଣ୍ଠି ଛିଣ୍ଡିଗଲା । ମତେ ଡର ମାଡ଼ିଲା, ଭାବିଲି ତମ ବାପା ମତେଇ ଗାଳି-ଦେବେ । ମୁଁ ଯେତେହେଲେ ବଡ଼ ତମଠୁ । ହେଲେ ବଡ଼ବାବୁ ସେମିତିକା ଲୋକ ନୁହନ୍ତି । ସେ ଆମ ଦି' ଜଣଙ୍କୁ ଆଖି ଦେଖେଇଲେ । କହିଲେ, ରୁହ ତମ ଦି'ଟାଙ୍କୁ ଏକାଠି ବାନ୍ଧି ଏମିତି ପିଟା ପିଟିବି ଯେ ! ତମକୁ ମନା ହୋଇଥିଲା ପରା ହତା ବାହାରକୁ ଯିବ ନାହିଁ ? ମର୍କଟ, ପାଜି, କୋଉଠିକାର···

ଅଭିନୟ ଛଳରେ ସେ ଏମିତି ଆଖି ଦେଖେଇ ସ୍ବର ଉଞ୍ଚେଇ ବସେଇ ବସେଇ କୁହେ ଯେ କ୍ଷଣକପାଇଁ ପାଣିସାହେବଙ୍କର ମନେ ହୁଏ ତାଙ୍କର

ସ୍ୱର୍ଗତଃ ବାପା, ମୁକ୍ତିଆର ନରସିଂହ ପାଣି, ବିରାଟ ପାଞ୍ଚହାତିଆ ମର୍ଦ, କଥା କହୁଛନ୍ତି । ଏବଂ ସେ ପିଲାଦିନର ଫଟୁ, ମାଆ ପରି ଗୋରା ହୋଇ ଗେଣ୍ଡୁଟିଏ, ବାପର ପ୍ରତାପକୁ ହାଁକରି ଅନେଇଛୁ । ଭ୍ରମ କଟିଗଲାରୁ ଦୁହେଁ ଏକାଠି ହସିଉଠନ୍ତି । ଦାମ୍ଭର ନିପଟ କଳା ଫାଲୁଆ ମୁହଁର ହର୍ଷ, ଆଗ ଦାନ୍ତରୁ ଦି'ଟା ଗାଏବ, ତାଙ୍କ ହସକୁ ଆହୁରି ତେଜିଦିଏ । ପାଣି ସାହେବ ଭାବନ୍ତି ଯେ ପିଲାଦିନର କାହାଣୀ ସତ କି ମିଛ ଭଗବାନଙ୍କୁ ଜଣା, ତା' ବା' ମୋ ବାପାଙ୍କ ଦରଜୀ ଥିଲା ବୋଲି ସେ ମୋ ମୁଣ୍ଡ କିଣି ନାହିଁ, କିନ୍ତୁ ଏଇ ଲୋକଟା ଯଦି କୌଣସି କାରଣରୁ ଆଜ୍ଞା ଆପଣ ଆରମ୍ଭ କରିଦିଏ, ହା' ହେଲେ ତାକୁ କ୍ଷମା କରିବାର ନୁହେଁ ।

ଦେଖିବାକୁ ଯମପରି । ବାପାଙ୍କ ଚେହେରା କି କୋଉ ନର୍ମାଲ୍ ଲୋକର ଚେହେରା ସାଙ୍ଗରେ ତୁଳନା କରିବା ବୃଥା । ବୋଧହୁଏ ଦେହର କି ଚେହେରାର ନ୍ୟୁନତମ ଯତ୍ନ ନେବା ଆବଶ୍ୟକ, ଏକଥା ତା'କୁ କେହି କହିନାହାନ୍ତି । ପେଟ ବଢ଼ି ବଢ଼ି ଝୁଲୁଛି । ନିଶ ତଳମୁହାଁ ହୋଇ ମୋଟା ଓଠକୁ ପୁରାପୁରି ଯୋଡ଼େଇ ସାରିଲାଣି । ଖିଷଣ କୁଣ୍ଡେଇ ହେଲାରୁ ଯାଇଁ ଛୁଡ଼ାକୁ କାଟିପକାଏ । ସେଇ ମିତି ପାଳନ କରି ମୁଣ୍ଡ-ବାଳକୁ ମଧ୍ୟ ମାସ ମାସ ଧରି ବଢ଼ିବାକୁ ଦିଆଯାଏ । ଏବଂ ତା'ର ଆଖି—ନାଳଚିଆ, ଅଣ୍ଡାକୃତି, ଗୋଲ୍ ନୁହେଁ ଲମ୍ବା, କିନ୍ତୁ କୋଣଗୁଡ଼ିକ ଗୋଲେଇ । ଘୁଣ୍ଡିଯାକ ବାଳ । କନକନିଆ ଶୀତଦିନେ ଗୁଦର ଖଣ୍ଡିଏ ଘୋଡେଇହୁଏ । ଅନ୍ୟଦିନରେ ଫୁଙ୍ଗୁଳା । ହଁ, ଯମପରି ଦିଶେ; କିନ୍ତୁ ଯମର ସାବତ ଭାଇ । କାହିଁକି ନା ତାର ସ୍ୱରୂପ ବିପୁଳା ପୃଥ୍ୱୀପରି ଅଳସୁଆ, ବେପରୁଆ ଏବଂ ଉଦାର ମନେ ହୁଏ । ଯଥା କରି କରାଜ ଥାଏ ସେହି, ଉପରବାଲା, ତେଣୁ ତତ୍ପରତାର କାରଣ ନାହିଁ । କ୍ୱଚିତ୍ ହୋ ହୋ ହୋଇ ହସେ, ଯେମିତି ପିଲାଦିନର କୋଳତୋଳା କଥା ମନେ ପକେଇ ହସିଲା, ସତେ କି ସେଥିରେ ମଧ୍ୟ ଉଦ୍ୟମର ଅପଚୟ ହେବ । କିନ୍ତୁ ହସିବାକୁ ପଡ଼ିଲାରୁ ସେ ତା'ର ପୃଥ୍ୱୀସର୍ବସ୍ୱକୁ ନେଇ ହସେ । ଥଲ୍‌ଥଲ୍‌ପେଟ, ରସାପ୍ଲୁତ ଓଠ, ଫୁଲକା ଗାଲ ଏବଂ ଅନାବିଷ୍ଟ ଅଣ୍ଡାକୃତି ଆଖି ବିଶିଷ୍ଟ ପୃଥିବୀକୁ ଆଦେଶ ଦିଆହେଲା ହସିବାକୁ ଏବଂ ସେ ତା'କୁ ଅକ୍ଷରେ ଅକ୍ଷରେ ପାଳନ କରିବ । କାର୍ପଣ୍ୟ କରିବ ନାହିଁ ।

ଥରୁଟିଏ ପାଣିସାହେବଙ୍କ ମନରେ ଆସିଥିଲା—କାନ୍ଦିବାକୁ ପଡ଼ିଲେ ସେ କାନ୍ଦିବ କେମିତି ? ପୃଥ୍ୱୀ କ'ଣ କାନ୍ଦିପାରେ ।

କେଜାଣି କାହିଁକି ଆଜି ବେଶି ମନେପଡ଼ୁଛି ତା' କଥା । ସ୍ମରଣଦ୍ୟୋତକ ସ୍ମିତହାସଟିଏ ପାଣି ସାହେବଙ୍କ ଓଠରେ ଫୁଟିଉଠିଲା । ଅଳସୁଆ ଛଅ ମାସ ହେଲା ମୋର ଯୋଡ଼ାଏ ପ୍ୟାଣ୍ଟ୍‌କନା ପକେଇ ରଖିଛି । ପଚ୍ଛରଲରୁ କହିବ, ସାନବାବୁ, ମୁଁ ତମକୁ କେବେହେଲେ ହଇରାଣ କରିଛି ? ଦରକାରବେଳେ ଆଣି ଦେଇ ନାହିଁ ? କହନ୍ତ, କୁହ ? ସତ କଥା । ମୂଳରୁ ଯେତେ ଡେରିକରୁ ନା କାହିଁକି, ସେ ଠିକଣା ସମୟରେ ପୋଷାକ କାଖରେ ଜାକି ହାଲହାଲ ହାଜର୍ ହୋଇ-ଯାଇଛି । ଏକଦମ୍ ଫିଟ୍ । କୋଉଠି ଟିକିଏ ବଦଳେଇବାକୁ ପଡ଼ିବ ନାହିଁ । ଗଲାବର୍ଷର ଅଲ୍‌ଇଣ୍ଡିଆ ଲିଗାଲ ରାଇଟ୍‌ସ୍ କନଫରେନ୍‌ସ୍, ତା' ପୂର୍ବରୁ ଯୁବ-ସଂସ୍କୃତି ସମ୍ମିଳନୀ ( ପାଣିସାହେବ ଏବେ ମଧ୍ୟ ଯୁବସମାଜର ଅଗ୍ରଣୀରୂପେ ଗୃହୀତ ), ଇତ୍ୟାଦି ପ୍ରତି ଅନୁଷ୍ଠାନଲାଗି ବିଶିଷ୍ଟ ପୋଷାକ ଯଥାସମୟରେ ପହଞ୍ଚିଯାଇଛି । ଗୁଡ଼, ମୋ ପ୍ୟାଣ୍ଟ ନ ହେଲା ନାହିଁ, ନିକର ସୁଟ୍ ଡେରି ନ କଲେ ହେଲା, ଆସନ୍ତା ସପ୍ତାହରେ ତା'ର ଇଣ୍ଟରଭ୍ୟୁ । ମୁଇଁ ତାକୁ ବିକେଇଲି । ସେ ଅନ୍ତତଃ ଏଇ ଇଣ୍ଟରଭ୍ୟୁ ସୁଟ୍‌ଟା ଦାମୁ କରିଦେଉ । କାହିଁକି କହିଲି ଏକଥା ? ସେ ମୋ "ଦୋସ୍ତ୍" ବୋଲି ? ନା ଭାବିଲି ସେ ଦାମୁହାତ ଲାଗିଲେ ପୁଅ ଇଣ୍ଟର୍‌ଭ୍ୟୁରେ ଭଲ କରିବ ? ଆଇ. ଏ. ଏସ୍. ହବ ଇ ହବ, ଆଉ ମୋ ସ୍ୱପ୍ନ ସଫଳ କରିବ ? ପାଣିସାହେବ କାରଣ ଖୋଜିବା ଦିଗରେ ବିଶେଷ ଆଗେଇ ପାରିଲେ ନାହିଁ । ଖାସ୍‌କାମରାକୁ ଯିବାର ବେଳ ହୋଇଗଲାଣି ।

ଖାସ୍‌କାମରାରେ ମହକିଲ ସମେତ ଯାବତୀୟ ଅପର ଲୋକମାନଙ୍କ ପ୍ରବେଶ ନିଷେଧ । ଅନ୍ଦରମହଲର ଗୁରୁଗୁରୁ ମଧ୍ୟ ଏଯାଏଁ ଶୁଣାଯାଏ ନାହିଁ । ଏଠି କେବଳ ତାଙ୍କର ଆଇନଗତ ଅଧ୍ୟୟନ ଓ ଚିନ୍ତା । ଠାକୁରେ ତାଙ୍କ ନିଜ ଠଣାରେ ବିରାଜମାନ । ମୁଣ୍ଡ ଉପରକୁ, ନିରନ୍ତରେ ଆଶୀର୍ବାଦ ଦେଲାପରି । ଏବଂ ଟେବୁଲ ଉପରେ ଫ୍ରେମ୍‌ରେ ବନ୍ଧା ସୁଖୀ ପରିବାରର ଗୋଟିଏ ଫଟୋ । ପାଣିସାହେବଙ୍କ ଚିରନ୍ତନ ଫୋକା

ଚେହେରା । ବିରଜା ଗମ୍ଭୀରବଦନା, ହେଲେ ସୁନ୍ଦରୀ । ଦି'ପାଖରେ ବାଳକପୁତ୍ର ସଞ୍ଜୟ ଓ ମଳୟ, ଡାକ ନାଆଁ ଟିକି ଓ ନିକି ଉଭୟ ଆନନ୍ଦରେ ଦାନ୍ତ ଦେଖେଇଛନ୍ତି ।

ସୁଖୀ ପରିବାର । ତାକୁ ଦେଖିଲାକ୍ଷଣି ଦାମ୍ପତ୍ୟ ଅସ୍ୱସ୍ତି ଧୋଇ-ପୋଛି ହୋଇଯାଏ ତା' ନୁହେଁ, କିନ୍ତୁ ଆପାତତଃ ଦୂରକୁ ଠେଲିଦେଇ ହୁଏ । ଥରେ ଅଧେ ଏମିତି ବି ମନେହୁଏ ଯେ ଏକଦା ଆମ ଦି'ଜଣଙ୍କ ଭିତରେ ପ୍ରେମ ବୋଲି ଗୋଟିଏ ଆଶ୍ଚର୍ଯ୍ୟଜନକ ବସ୍ତୁ ଥିଲା । ସଞ୍ଜୟ ନ ହେଲେ ବି ମଳୟ, ଅନ୍ତତଃ ମଳୟ ତା'ର ପ୍ରମାଣ । ଅନ୍ତତଃ ସେଇଦିନ ସଞ୍ଜବେଳିଆ ଶୃଙ୍ଗାର ଶେଷରେ ଯେଉଁ ପବନ ଶ୍ରାନ୍ତି ହରିବା ପାଇଁ ବହିଆସୁଥିଲା ଝରକାବାଟେ, ତା'ର ନାଆଁ ମଳୟ । ସେଇଲାଗି ମୁଁ କହିଲି ଏଥର ପୁଅଟିଏ ହେଲେ ସରସୀ ( କାହିଁକିନା ପବନ ଆମ ପୁରୁଣା ଘରକୁ ଲାଗିଥିବା ପୋଖରୀକୁ ଛୁଇଁ-ଛୁଇଁ ଆସୁଥିଲା )···ଫ୍ୟାକ୍ଟସ । କିଏ ତାକୁ କାଟି ଦେଇପାରିବ ?

ଆଜି ଫଟୋଆଡ଼କୁ ଅନେଇଲାକ୍ଷଣି ନିକି ବନାମ ମଳୟ ହିଁ ବିଶେଷ କରି ତାଙ୍କ ଚେତନାକୁ ଆବୋରିଲା । ଚାଲାକ୍‌ଚତୁର ଟୋକା । ତା' ବଡ଼ଭାଇପରି ଗ୍ରନ୍ଥକୀଟ ନୁହେଁ । ହଜାରେ ଫେସନ୍ କରେ, ସାଙ୍ଗମାନଙ୍କୁ ନେଇ ଫୁର୍ତ୍ତି କରେ, କିନ୍ତୁ ଯେତିକି ପାଠ ପଢ଼ିବାକଥା ଠିକ୍ ସେତିକି ପଢ଼ିଦେଇ ରାମାୟଣ ଲେଖିପାରେ । ଆମ ସ୍ତ୍ରୀ କହିଲେ କ'ଣ ନା ସେ ଛତରା ହୋଇଯାଉଛି । ତାଙ୍କର ଶିକ୍ଷାରେ ପଡ଼ି ନ ଥିଲେ ବଡ଼ପୁଅ ମାଷ୍ଟରିଆ ଲାଇନରେ ଯାଇ ନ ଥାଆନ୍ତା । ଭଗବାନଙ୍କ କୃପାରୁ ସାନର ମତିଗତି ଭିନ୍ନ । ନେତାର ଲକ୍ଷଣ ଅଛି ତା' ପାଖରେ । ହୁଏତ ମନ୍ତ୍ରୀ ହୋଇପାରିଥାଆନ୍ତା । ନ ହେଲା ନାହିଁ, ଅନ୍ତତଃ ଆଇ. ଏ. ଏସ୍. ହେବ । ଟଙ୍କା ରୋଜଗାର କରିବା ବଡ଼ କଥା ନୁହେଁ । ଅସଲ ହେଉଛି ହାକିମି । ସେଇଥିରେ କ'ଣ ବାପକୁ ଜିତିବ ନାହିଁ ? ଅବଶ୍ୟ ଜିତିବ । ଇଣ୍ଟରଭିଉକୁ ଡକାହେଇସାରିଲାଣି ଯେତେବେଳେ, ଚିନ୍ତାର କାରଣ ନାହିଁ । ସ୍ମାର୍ଟ ବୁଦ୍ଧିଆ ପିଲା, ନବାବ୍ ପୁଅକୁ ଜବାବ୍ ଦେଇପାରିବ । କିନ୍ତୁ ଜବାବ ଦେବାର କାଇଦା ଜଣାଅଛି ତାକୁ । ଯେମିତି କି ପ୍ରଶ୍ନକର୍ତ୍ତା ଭାବିବ ନାହିଁ ଯେ ତାକୁ ବୋକା ବନେଇ ଦିଆଗଲା । ବାରିଷ୍ଟରଙ୍କ

ବେଟା ! ପାଣି ସାହେବ ପୁତ୍ରସ୍ନେହ ତଥା ଆତ୍ମପ୍ରେମରେ ଆପ୍ଳୁତ ହେଲେ । କିନ୍ତୁ···କିନ୍ତୁ କହିହେବ ନାହିଁ । ବେଳେବେଳେ ଅକାଟ୍ୟ ଯୁକ୍ତି ଓ ସାକ୍ଷୀପ୍ରମାଣ ସତ୍ତ୍ୱେ କେସ୍ ବିଗିଡ଼ିଯାଏ । ଜଜ୍‌କୁ ଗାଳିଦେଇ ଲାଭ ନାହିଁ । ସବୁଥିକୁ ଠାକୁରଙ୍କ ଆଶୀର୍ବାଦ ଲୋଡ଼ା । ପାଣିସାହେବ ଘୁରି ଚଉକିଟା ଘୂରେଇଦେଇ ଠାକୁରଙ୍କୁ ପଚ୍ଛରିଲପରି ହେଲେ ।

ଟୋକାଟା ଯେତିକ ଚଲାଖ୍ ସେତିକ ଖିଆଲି । କହୁଥିଲା ଏଥର ଆଇ. ଏ. ଏସ୍. ନ ହେଲେ ସେ ଅନ୍ୟ ପନ୍ଥା ଧରିବ । ନାଗଭୂଷଣ ପଟ୍ଟନାୟକ ତା'ର ଚହ୍ଲା ବୋଲି କହୁଥିଲା । ହେ ଭଗବାନ୍ ! ପାଣି-ସାହେବଙ୍କ ଦେହ ଶୀତେଇଉଠିଲା । ନା ତା' ହେବନାହିଁ । କିନ୍ତୁ ମୋ ହାତରେ କ'ଣ ଅଛି ବୋଲି ଭାବୁ ଭାବୁ ସେ ପୁଣି ଦାମୁକୁ ମନେ ପକେଇଲେ । ସୁଟ୍ ! ଲୋକଟା ଉପରେ ଯେତେ ଭରସା ଥିଲେ ମଧ୍ୟ ମୁଁ ଶେଷମୁହୂର୍ତ୍ତଯାଏଁ ଅପେକ୍ଷା କରିପାରିବ ନାହିଁ । ଇଏ ସାଧାରଣ ସୁଟ ନୁହେଁ । ଘ୍ୟାର ଟ୍ରାଏଲ୍ ନେବାକୁ ପଡ଼ିବ । କେଉଁଠି ଟିକିଏ ଅବଗୁଣ, ଚପା, ଢିଲା, ମୋଡ଼ମୋଡ଼ିକା ରହିବ ନାହିଁ, ମୁଁ ନିଜେ ତା'ର ଯାଞ୍ଚ କରିବ । ପରଫେକ୍ଟ ନ ହେଲାଯାଏ ଛାଡ଼ିବ ନାହିଁ । ମୁଁ ଆଜି ଡକଉଛି ତାକୁ···

ଡକେଇଲେ ଚଳିବ ନାହିଁ, ମୁଁ ନିଜେ ଯିବି ସେଠିକି । କାମ କେଉଁଯାଏଁ ଗଲାଣି ଦେଖିବ । ଧମକେଇବ ।

ଏହିପରିଭାବରେ ପାଣି ସାହେବ ସ୍ଥିର କଲେ ଯେ ଆଜି କୋର୍ଟରୁ ଫେରିଲା ପରେ ପରେ ସେ ଦାମୁ ଦରଜୀର ଦୋକାନକୁ ଯିବେ । ଅପରପକ୍ଷର କୌଣସି ଯୁକ୍ତି ଶୁଣିବା ପାଇଁ ରହିଲେ ନାହିଁ । ତା ପାଖକୁ ଗଲେ ତୋର ଚାଣ ରହିବ ନାହିଁ । ଆପଣା ଆସ୍ଥାନରେ ସେ ଆହୁରି ଗପ ଯୋଡ଼ିବ ଓ ତୁ ସେଥିରେ ଭଳିଯିବୁ । ବାଜେ କଥା ! ମୁଁ କ'ଣ ପିଲା ହୋଇଛି, ନା ସତରେ ତା'ର କୋଳଖିଆ ଦୋସ୍ତ ? ଇଚ୍ଛା ହେଲେ ମୁଁ ଜାଣିଶୁଣି ନିଜକୁ ହୁଗୁଳେଇଦିଏ, ତା'ର ମଜାଗପରେ ମନ ଖୁସି କରିବାପାଇଁ । ତା' ବୋଲି ମୁଁ କ'ଣ ମୋ ଜରୁରୀ କାମ ଭୁଲିଯିବ ? ଦରକାର ହେଲେ ତାକୁ ଆଖି ଦେଖେଇ ପାରିବ ନାହିଁ ? ···ତା' ଗଳାରେ ବାଟ ଓଗାଳିଥିବା

ଶଗଡ଼ଦଣ୍ଡା, ଚବର ଚବର କାଦୁଅ, ଆଉ ଖୋଲା ନର୍ଦ୍ଦମାରେ ଲଙ୍ଗଳା ପିଲାଙ୍କ ପାଇଖାନା ଦୃଶ୍ୟ ମନେଅଛି ତ ? ଏବଂ କେଇଯୋଡ଼ା ଆଖି ତୋଟେ ଜଳଜଳ କରି ଅପେଇଥାଆନ୍ତି ହିସାବ କରିଛ ? ଆଇ ଡୋଣ୍ଟ କେଆର୍ ! ଘରଚର ଦରିଦ୍ରତା ମୋ ପାଖରେ ନୂଆ ନୁହେଁ । ତା'ଛଡ଼ା ପାଣି ସାହେବ ବୁର୍ଜୁଆ ବାବୁ ନୁହେଁ, ସଚ୍ଚା ବଡ଼ଲୋକ, ଅଭିଜାତ । ଅସନା ଗଳି ଭିତରେ ପଶି ଦାମୁ ଦରଜୀର ଦୋକାନକୁ ଗଲେ ଦାମୁର ଖାଉ ବଢ଼ିବ ବରଂ, ମୋ ମାନ କମିବ ନାହିଁ । ···ଘୃଣା ଭିତରେ ଲୁଚିଛପି କୁଣ୍ଠିତ କୁଣ୍ଠିତ ହୋଇ ଦାନ୍ତେଇଲା ପରି ଈର୍ଷା । ଦୋକାନ ପଛକୁ ତା' ଘର, ମନ୍ଦିର । ସେଇ ପ୍ରକୃତରେ ସୁଖୀ, ଭୁ ନୁହଁ । ଯମ ହେଉ, ମଇଁଷି ହେଉ, ତା' ସ୍ତ୍ରୀ ତାକୁ ଭଲ ପାଏ ଏବଂ ତାଙ୍କର ଛଅଟା କି ଆଠଟା ପିଲା ହେଉଛନ୍ତି ଗୋଟି ଗୋଟି ଆନନ୍ଦ, ଅମୃତ, ଦେବତାର ଦାନ । ସନ୍‌ସେନସ !

ନନ୍‌ସେନସ ! ଶେଷୋକ୍ତ ଯୁକ୍ତି ଉଦ୍ଦେଶ୍ୟରେ ସେ ବାରମ୍ବାର ଏଇ ପଦଟିକୁ କହିହେଲେ । ଦୂର ପରବତ ସୁନ୍ଦର । ସେଦିନ ବୋଧ-ହୁଏ ମୋର ରୋମାଣ୍ଟିକ୍ ପ୍ରବଣତା ବଢ଼ିଯାଇଥିଲା କୌଣସି କାରଣରୁ । ସେଇଲାଗି ସେ ଯେତେବେଳେ ତା' ସ୍ତ୍ରୀପିଲାଙ୍କୁ ନେଇ ଏଣୁତେଣୁ ଗପିଲା, ଯେତେକ ଗ୍ରେପରି କଥା, ଜଗା କେମିତି ତା' ଦୁଇ ହାତରେ ଷୋଳକଳା ଖଞ୍ଜି ଦେଇଛି, ସକଳସୁନ୍ଦର ସିଲେଇ ଛଡ଼ା ସେ ସରୁସରୁ ଗୁଆ କାଟିପାରେ ଆଉ ( ଗୋପନରେ କହିଲା ପରି ଫୁସ୍ ଫୁସ୍ ହୋଇ ) ସ୍ତ୍ରୀର ମୁଣ୍ଡବାଳ ଯତନରେ ବାନ୍ଧି ଦେଇପାରେ, ପୁଣି ରତନାପୁଅ କେମିତି ତାକୁ ହିସ୍ଟ୍ରି ପାଠ ପଢ଼େଇଲା, ନୀଳାଚଳର ମହିମା ବୁଝେଇଦେଲା, ମୁଦୁଲିଝିଅ ବଢ଼ିଆ ଶାଗୁଆଡ ରାନ୍ଧିପାରେ, ସରବା ପୁଅ ଗୋଟିପଣେ ତା' ମାଆ ପରି, ସାହେବ ଛୁଆପରି ଦେଖାଯାଏ, ସବା ସାନ ସପନା ତା'ର ଅନ୍ତାଲପେଟରେ ବାଜା ବଜାଇଲେ ଖେକଶୋଷ ଭୁଲିଯାଏ, ଇତ୍ୟାଦି ଇତ୍ୟାଦି । ମୋର ମନେ ହେଲା ଯେ ସେଇଠି ସୁଆଗ ଅଛି, ଆମ ଆଡ଼େ ନାହିଁ । ଗରିବ ବୋଲି ସେ ଅନ୍ୟ ହିସାବରେ ଧନୀ । ଛି ! ବିଚରାର ମଙ୍ଗଳ ହେଉ । ମୁଁ ତା' ସାଙ୍ଗରେ ବାଦ କରିବି, ଏଭଳି ପ୍ରଶ୍ନ ଉଠେଇବା ଅନ୍ୟାୟ । ତା'ର ପୁଅମାନେ ଚଉକରେ ନ ବସିଲେ ନାହିଁ, ଦି'ଅକ୍ଷର ପଢ଼ନ୍ତୁ । ଝିଅମାନେ

ଭଲରେ ଭଲରେ ବାହା ହୋଇଯାଆନ୍ତୁ । ଆଉ ତା' ସ୍ତ୍ରୀ···ଗୁଡ଼, ତା' ସ୍ତ୍ରୀକଥା ସେ ଜାଣେ । ପାଣି ସାହେବ ଦାମୁ-ଦାମୁଆଣୀଙ୍କ ଅଶୋଭନୀୟ ପ୍ରେମ (ସେକ୍ସ) ଦୃଶ୍ୟରୁ ନିଜକୁ ଫେରାଇ ଆଣିଲେ । ଏବଂ ଯୁକ୍ତିକୁ ନନ୍‌ସେନସ ବୋଲି ପ୍ରମାଣ କଲାପରେ ପାଣିସାହେବ ଅଡ଼ିବସିଲେ ଯେ ସେ ଆଜି ଯିବେ ଦାମୁପାଖକୁ । ନିଜକୁ ସାଙ୍ଗରେ ନେଇ । ନିଜ ପାଇଁ ସୁଟ୍ ସଜାଡ଼ି ଦେଇଆସିବେ ।

ତେବେ ଦୁଃଖରେ ବିଷୟ ଯେ ଦାମୁ ଘରେ ପହଞ୍ଚିବାର ପୂର୍ବବର୍ତ୍ତୀ କେତୋଟି ଘଟଣା ତାଙ୍କ ସୌମ୍ୟ ସ୍ୱଗୁଣକୁ କଷ୍ଟ ଦେଇଥିଲା । ପାଣିସାହେବଙ୍କୁ ଏଥିପାଇଁ ଦୋଷ ଦେବାର ନୁହେଁ । ସେ ହୁଏତ ଖ୍ରୀଷ୍ଟ, କିନ୍ତୁ ପ୍ରିତ ଖ୍ରୀଷ୍ଟର ଜଣେ ଅଧେ ଶିଖଣ୍ଡୀ ଅଛନ୍ତି । ପାଣିସାହେବଙ୍କ ସର୍ବପ୍ରଧାନ ଶିଖଣ୍ଡୀ ହେଉଛନ୍ତି ବସନ୍ତମୁହାଁ, ନହନହକା, ମାଇଚିଆକଣ୍ଠ ଆଉ ଭ୍ରୋକେଟ ଧନେଶ୍ୱର ପାତ୍ର । ଗୁଡପତ୍ର ଆଦି ଦାମ୍ପତ୍ୟ ମାମଲାର ମଉସା । ତାଙ୍କୁ ଦେଖିଲାକ୍ଷଣି ତାଙ୍କର ଅସ୍ଥିମଜ୍ଜା ଚହଲିଉଠେ । ଆଜି ବାର ଲାଇବ୍ରେରୀରେ ତା' ସାଙ୍ଗରେ ଦେଖା ହୋଇଥିଲା । ଅଯଥାରେ ପଚାରିଲା, ଉତ୍ତର ନପାଇ ଫଟରେଇ ହେଲା—କଣ ଖବର ପାଣିସାହେବ ? ମିସେସ ଭଲ ଅଛନ୍ତି ? ପିଲାମାନେ ? ମାଇଚିଆ କୋଉଠିକାର ! ତାଙ୍କ ଭଲ ମନ୍ଦରୁ ତୋତେ କ'ଣ ମିଳିବ ? ମୁଁ କ'ଣ ତୋର ସାଙ୍ଗ ନା ମହକିଲା ? ବ୍ୟିକ୍ଷିପ୍ତରେ ନିଜ ଯାହାପାଇଁ ଦାମୁ ଘରକୁ ଯିବାକଥା, ଖବର ଦେଇଛି ଯେ ସେ ସଞ୍ଜକୁ ରହିବ ନାହିଁ, କୋଉ ଫ୍ରେଣ୍ଡ୍ ସାଙ୍ଗରେ କାର୍‌ରେ କଲିକତା ପଳାଉଛି, ଟେଷ୍ଟ୍ ମ୍ୟାଚ୍ ଦେଖିବ ବୋଲି । ତା' ମାନେ ଦାମୁଘରକୁ ଯିବା ଅକାରଣ । କିଏ କହିଲା ଅକାରଣ ? କାହିଁକି ଅକାରଣ ? ମୁଁ ଠିକ୍ କରିଛି ଯିବି ସେଠିକି । ନିଜ ନ ଆସିଲେ ନାହିଁ । ସୁଟ୍‌ର ଭୁଲଠିକ ମୁଁ ନିଜ ଆଖିରେ ଦେଖି ନେଇପାରିବ । କିନ୍ତୁ ସଞ୍ଜବେଳେ ଦାମୁର ଗଳିରେ ପ୍ୟାଣ୍ଟକୁ ସନ୍ତର୍ପଣରେ ଟେକି ଧରି ଡେଇଁଡେଇଁକା ଚାଲିଲାବେଳେ (ଯେହେତୁ କାରକୁ ଖଣ୍ଡେଦୂରରେ ଛାଡ଼ିବାକୁ ପଡ଼େ) ସେଇଠି ଅନୁଷ୍ଠିତ ହେଉଥିବା ସାହିଟୋକାଙ୍କ ହକେଟ ତାଙ୍କୁ ମନେ ପକେଇଦେଲା ଯେ ନିଜକୁ ଏଇ ଗୁଲିଦଣ୍ଡା ଭଲ ଲାଗେ, ହୁଏତ ସେ ପ୍ରକୃତରେ ଛତରା, ହାକମି ସୁଖ ତା' କପାଳରେ ନାହିଁ ।

ଏହାପରେ ଖେଳିଲାବେଳେ 'କ୍ରିକେଟ ଖେଳ'ର ବଲ ତାଙ୍କ ପ୍ୟାଣ୍ଟ ଗୋଡରେ ପିଟି ହୋଇଗଲା ଓ ଧୂଳି ମଇଳାର ଦାଗ ଛାଡ଼ିଦେଲା। ଏଥିରେ ତାଙ୍କୁ ଆଉ କି ବାଧା ହେବ ନାହିଁ କେମିତି ?

"ନମସ୍କାର ସାନବାବୁ, ଆସ, ଆସ, ମୁଁ ପରା ଏଇକ୍ଷଣିକା ତମ କଥା ଭାବୁଥିଲି। କେବେ ଯାଇ ଚନ୍ଦନବେଳକୁ ଦେଖା ହୋଇଥିଲା, ତା'ପରେ ମୁଁ କେତେ ଥର ଯାଇଛି ତମେ ଘରେ ନ ଥିଲ, ବାବୁ ତମର କ'ଣ ଦେହପା ଖରାପ ଥିଲା ? ଶୁଖିଯାଇଛ, ମୁହଁରେ ହସ ନାହିଁ—"

ତା'ର ବଡ଼ପାଟିଆ ସମ୍ଭାଷଣ ପାଣିସାହେବଙ୍କୁ ଯେତେଟା ଅବ୍ରତ କରି ନ ଥିଲା, ତାଙ୍କ ଚେହେରାକୁ ନେଇ ପ୍ରଶ୍ନ ଓ ସହାନୁଭୂତି ତାଙ୍କୁ ମୋଟେ ଭଲ ଲାଗିଲା ନାହିଁ। ମୋର ଚେହେରା ବାଛିବାକୁ ତୁ କିଏ ? ମୋର କେଉଁଠି କିଛି ଊଣା ହୋଇଯାଇ ନାହିଁ। ଖାଲି ତୋ ଗଳିକୁ ଆସିବାକୁ ପଡ଼ିଲା ସେଇ ମୋ ଦୁର୍ଭାଗ୍ୟ। କିନ୍ତୁ ଦାମୁ ଉପରେ ରାଗିବା ସହଜ ନୁହେଁ। ତେଣୁ ସେ ନୀରବତାର ପ୍ରତ୍ୟୁତ୍ତର ଦେଲେ। ଆପତ୍ତି ନ କରି ତା'ର ଇଶାରା ଅନୁଯାୟୀ ଅନ୍ଦରମହଲକୁ ଗଲେ। ସେଇ ନିର୍ଦ୍ଦିଷ୍ଟ ଚଉକି। ପିଲାଙ୍କ ଭିତରୁ ଜଣେ ଗଦି ଖଣ୍ଡେ ଆଣି ଥାପିଲା ତା' ଉପରେ। ଘସରା ହେଲେ ମଧ୍ୟ ଭେଲ୍‌ଭେଟ୍‌ର ଗଦି। ଦାମୁ ଖଟ ଉପରେ ଚକାମାଡ଼ି ବସିଲା, ସବୁଥର ଯେମିତି ବସେ ଏବଂ ଅନୁଷ୍ଠାନ ଆରମ୍ଭ କଲାପରି "ଜୟ ଜଗନ୍ନାଥ" କହିଲା। ଇଏ ମଧ୍ୟ ତା'ର ଚିରାଚରିତ ଢଙ୍ଗ, କିନ୍ତୁ ପାଣି ସାହେବଙ୍କ ମନେହେଲା ଯେ ସେ ଅଭ୍ୟସ୍ତ ଆସରର ସମସ୍ତ ଉପଚାର ଠିକନଖି ପାଳନ କରିବାକୁ ଚାହେଁ। କୋଉଠି ଟିକିଏ ଫାଙ୍କ ରହିବ ନାହିଁ ଯେ ସାନବାବୁ କିଛି ଅଖାଡ଼ୁଆ ପ୍ରଶ୍ନ କରିବେ।

ତଥାପି ପାଣିସାହେବ ଆପଣା ଉଦ୍ଦେଶ୍ୟରୁ ବିଚଳିତ ହେଲେ ନାହିଁ। କିଛି ସମୟ ଅପେକ୍ଷା କରି ଗମ୍ଭୀର ମୁଦ୍ରାରେ, ପଚାରିଲେ, "ସୁଟ୍ କୋଉଥିପାଇଁ ଗଲା ?"

"ସୁଟ୍ ? ଓ-ହୋ ନଳିବାବୁଙ୍କ ସୁଟ୍ ? ଇଣ୍ଟର୍‌ଭିଉପାଇଁ ? ବୁଝିଲି। ହବ। ଠିକଣା ସମୟକୁ ହାଜର କରେଇ ଦେବ। ଚିନ୍ତା ନାହିଁ।"

ପାଣି ସାହେବଙ୍କ ପାଟିରୁ ବାହାରି ଆସୁଥିଲା—ତୋର ଚିନ୍ତା ଆସିବ କେଉଁଠୁ ? ନିଜ ତୋ ପୁଅ ନା ତୋର କୋଳ ପୁଅ ଉଣ୍ଟରଭିଉରେ ବସିଛି କି ବସିବ ? କିନ୍ତୁ ସେ ନିଜକୁ ସଂଯତ କରି ଦୃଢ଼ଭଙ୍ଗୀରେ କହିଲେ !

"ନା, ମୁଁ ଶେଷ ମୁହୂର୍ତ୍ତିଯାଏ ଅପେକ୍ଷା କରିପାରିବି ନାହିଁ । କିନା କିଛି ନ ହୋଇଥିଲେ ଫେରେଇଦେ । ମୁଁ ଆଉ କାହାକୁ ଦେଇଆସିବି ।"

ପାଣିସାହେବ ଆହୁରି ନିର୍ମମ ହେବାକୁ ପ୍ରସ୍ତୁତ ଥିଲେ । କିନ୍ତୁ ସେ ଆଶା କରିଥିଲେ ଯେ ଦାମୁ ଏତିକିରେ ଚିତ୍ ହୋଇଯିବ, ପାଟି ମେଲେଇ ଅନେଇବ ତାଙ୍କ ଆଡ଼କୁ । ତା'ପରେ ପ୍ରଚଣ୍ଡ ଅଭିମାନର ଢଙ୍ଗ କରିବ । ମରମକୁ ବାନ୍ଧିଲା ପରି ଆଖି ଛଳଛଳ କରିବ । କିମ୍ବା ସିଧାସଳଖ ଯୁଦ୍ଧ ଆରମ୍ଭ କରିଦେବ, କ'ଣ କହିଲ ସାନବାବୁ ? କପଡ଼ା ଫେରେଇ ନେବ ମୋଠୁଁ ? ତମେ ପୁଣି ଏକଥା କହୁଛ ? ନିକବାବୁ କ'ଣ ଖାଲି ତମରି ପୁଅ, ମୋର ନୁହେଁ ? ଇତ୍ୟାଦି । ପୁରାତନ ଭିତ୍ୟସୁଲଭ ନଭେଲ୍—ସିନେମାସମ୍ମତ ଏଭଳି ସେଣ୍ଟିମେଣ୍ଟ୍‌ର ମୁକାବିଲା କରିବାପାଇଁ ମଧ୍ୟ ସେ ରାଜି ଥିଲେ । କୋର୍ଟରୁମ୍‌ରେ ନିଜ ମକ୍କେଲଙ୍କୁ ଜିତେଇବାପାଇଁ ସେଣ୍ଟିମେଣ୍ଟ ପ୍ରୟୋଗ କରିବା ବିଧି ଯେତିକି ଜଣାଅଛି ତାଙ୍କୁ, ଅପରପକ୍ଷର ସେଣ୍ଟିମେଣ୍ଟ୍‌କୁ ଅଲଣା ବୋଲି ଦର୍ଶାଇବାର କୌଶଳ ମଧ୍ୟ ସେତିକି ମାଲୁମ । କିନ୍ତୁ ଦାମୁ ସେଭଳି କିଛି ରଙ୍ଗ ଦେଖାଇଲାପରି ମନେ ହେଉ ନାହିଁ ତ ? ପାଣିସାହେବ ଆଶ୍ଚର୍ଯ୍ୟ ହେଲେ, ଅପେକ୍ଷା କଲେ ।

ସେଇଠୁ ଦାମୁ କେବଳ ଥରୁଟିଏ ମୁଣ୍ଡ ଟୁଙ୍ଗାରିଲା । କହିଲା, ହଉ ।

କିନ୍ତୁ ଉଠିଯାଇ କାପାଡ଼ା ନେଇ ଆସିବାର କୌଣସି ଲକ୍ଷଣ ଦେଖାଇଲା ନାହିଁ । ଅଳସୁଆମିର ଗୋଟାଏ ସୀମା ଅଛି ! ଏଥର ପ୍ରକୃତରେ ରାଗିବା କଥା । ପାଣିସାହେବ ନିଜକୁ ତେଜୁଥିଲେ, ଏହି ସମୟରେ ସେ ପୁଣି ପାଟି ଖୋଲିଲା ଧୀରେ ସୁସ୍ଥେ କହିଲା, "କିନ୍ତୁ ତମେ

ଯାହାକୁ ଦଉଛ ଦିଅ, ନିକବାବୁ ଇଣ୍ଟରଭିଉରେ ଜିତିବ, ମୁଁ ଲେଖି ଦେଉଛି ।"

ଇଏ ବି' ଗୋଟାଏ ଅସ୍ତ୍ର । ତୋଷାମଦ । ଆଉ ଟିକିଏ ମଜା ଦେଖିଲେ ହେବ । ତେଣୁ ପାଣିପାହେବ ବିସ୍ମୟର ଛଳନା କରି ପଚାରିଲେ, "ଆଚ୍ଛା ? ତେବେ କିଏ କହିଲା ? କମିସନ୍‌ର ଚେୟାର୍‌ମ୍ୟାନ ?"

"ନାଇ ବାବୁ, ଚେୟାର୍‌ମ୍ୟାନ ଫେୟାର୍‌ମ୍ୟାନ କିଏ ମୁଁ ଚିହ୍ନି ନାହିଁ । ମୋତେ ଜଗା କହିଛି, ତାଙ୍କ ବଡ଼ ବାପ । ଯୋଉ ଦିନ ତମେ ନିକବାବୁର ସୁଟ୍ ବିଷୟ ଦେଲ, ମୋ ଆଖିରେ ନାଚିଗଲା···ମୁଷାଛୁଆ ପରି ଗୁଡ଼ିଖଣ୍ଡିକର ପିଲା ବଞ୍ଚିବ କି ମରିବ ଜଣା ନାହିଁ···"

ମନେ ଅଛି । ନିକ ସାତମାସିଆ ପିଲା ହୋଇ ଜନ୍ମ ହୋଇଥିଲା । ବିରଜା କେତେ କଣ ରୋଗରେ ଘାଣ୍ଟି ହୋଇ ପିଲାଟାକୁ ଜନ୍ମ କଲା । ଡେଲିଭରି ଏମିତି ଗଣ୍ଡଗୋଳିଆ ହୋଇଗଲା ଯେ ଡାକ୍ତର କହିଲା ଦି' ଜଣଙ୍କୁ ବଞ୍ଚେଇବା ସମ୍ଭବ ନୁହେଁ । ସେଇଠୁ ମୁଁ ଡାକ୍ତରଙ୍କୁ କଣ କହିଲି ? ଏଣେ ଭଗବାନଙ୍କୁ କଣ ମାଗିଲି ? ନା, ନା, ମୁଁ ମୋଟେ ସେମିତି କିଛି ମାଗି ନାହିଁ ଯେ ବିରଜା ଯାଉ ପଛେ ମୋର ଆଉ ଗୋଟିଏ ପିଲା ଆସୁ । ଯେ ବଡ଼ଟା ଅବାଗିଆ ହୋଇଗଲା, ମୁଁ ସ୍ତ୍ରୀ'କୁ ଇ ମୋପରି ଗଡ଼ିତୋଳିବି, କୋଉ ମାଆ ବିଗାଡ଼ିବାକୁ ନ ଥିବ । ମିଛ କଥା । କଳ୍ପନାର କୁହୁାରଟନା । ମୋର ନୁହେଁ, ବିରଜାର । ବୋଧହୁଏ ସେତିକିବେଳୁ ତା'ର ସ୍ୱଭାବ ନଷ୍ଟ ହୋଇଯାଇଛି, ଆଉ ସେ ଭୁଲ୍‌ଟାକୁ ରବେଇଖବେଇ ହେଉଛି ମୋ ଉପରେ ।

"ହେଲେ ପିଲାଟାକୁ ଦେଖିଲାକ୍ଷଣି ଏଇ ନିକବାବୁ ଆସି ଠିଆ ହେଲା ମୋ ଆଗରେ । ଭେଣ୍ଡା ଟୋକା, ଗଜରି ନିଶ, ଗଡ଼ ଜିତିବ ବୋଲି ଡର ସହୁ ନାହିଁ । କିଏ ତାକୁ ଠିଆ କରେଇଲା ମୋ ଆଗରେ ? ଜଗା ! ସେଇ ଜଗା । ପିଲାଟା ଚେଁଚେଁ ହଉଥିଲା, ତମେ ସବୁ ବ୍ୟସ୍ତ ହଉଥିଲ; କିନ୍ତୁ ମୁଁ ଶାନ୍ତ ଥିଲି । ମନେ ଅଛି ?···"

ନା, ମନେ ନାହିଁ । ଆମର ଘଡ଼ସନ୍ଧିବେଳରେ ଆମେ ଯାଇଥିଲୁ ବସି ଅନେଇବୁ ଯେ କୋଉ ଦରଜ, ସେ ଯେତେ ପୁରୁଣା ହଉନା କାହିଁକି

କେମିତି ମୁହଁ କରୁଛି !…କିନ୍ତୁ ସତରେ କ'ଣ ତାର ଜଗା ତାକୁ ଛଡ଼ାଇଦେଲେ ? ସେ ସେଇ ଚେଁଚେଁଇଆ ପିଲା ସୁଠ୍ ପିନ୍ଧିବ, ଗଡ଼ି ଜିଣିବ ? ଅସମ୍ଭବ ନୁହେଁ । ଦାମୁ ସାମାନ୍ୟ ଦରଜୀ ହୋଇପାରେ, କିନ୍ତୁ ସେ ହୁଏତ ଠାକୁରଙ୍କର ବିଶେଷ ଆଶୀର୍ବାଦ ପାଇଛି । ହୁଏତ ସେ ମୋଠାରୁ ବଡ଼ ଭକ୍ତ; ଯାହା ସଙ୍ଗରେ ଖାଲି ଦୋସ୍ତିର ଛଳନା କରି ମନ ଭୁଲେଇଲେ ଯଥେଷ୍ଟ ନୁହେଁ, ବୋଧ ହୁଏ ସେ ପ୍ରକୃତରେ ସମ୍ମାନର ପାତ୍ର । ପାଣିସାହେବ ଦାମୁକୁ ନୂତନତମ ଦୃଷ୍ଟିରେ ଦେଖିଲେ । ତା' ଜଗା ତାକୁ କିଛି କହି ନ ଥିବେ ନିଜ ବିଷୟରେ ? କିମ୍ବା ମୋ ବିଷୟରେ ? ପାଣିସାହେବ ଦାମୁର ବିରାଟ ଏବଂ ରହସ୍ୟମୟ ପୃଥ୍ୱୀପଣକୁ ଅନେଇ ରହିଲେ, ପ୍ରାଣୀ ପାହାଡ଼ ଦେଖିଲାପରି ।

ହଠାତ୍ ପାଣି ସାହେବଙ୍କୁ ବାସ୍ତବ ନିଜ ପୁଅର କାନ୍ଦଣା ଶୁଭିଲା-ପରି ମନେହେଲା । ଧ୍ୟାତ୍, ମୋର ମୁଣ୍ଡ ଖରାପ ନା କଅଣ ? ଭାବିଲେ ସେ ଏଇ ଗୁମୁଟି ଘର, ଗଳିର ହାଉଆ ଯା'ଭିତରକୁ ପଶିଲାକ୍ଷଣି ଆହୁରି ବାସେଇଯାଉଛି, ପିଲାକବିଲା କନାମସିଣାର ଆବର୍ଜନା ଭିତରେ ଶ୍ୱାସ ଫେଲୁଛି, ଏଇ ଭିନ୍ନ-ବିଷମ ପରିବେଶରେ ବୋଧ ହୁଏ…କିନ୍ତୁ, ନା, ଇଏ ତ ସତ କାନ୍ଦଣା ! ଶିଶୁର ନୁହେଁ, ବଡ଼ ପିଲାର, ଝିଅ କଣ୍ଠପରି ମନେ ହେଉଛି । ପରଦା ପଛରୁ ଜଣେ କିଏ ମୁହଁ ଗଳେଇ ଫେରିଗଲା । ପାଣି ସାହେବଙ୍କର ଧାରଣା ହେଲା ସେ ପୃଥ୍ୱୀ କି ପାହାଡ଼ ଆଢ଼ୁଆଳରେ କଣ କିଛି ଘଟୁଛି । ଅପର ଆଗନ୍ତୁକର ଅଗମ୍ୟ ।

ପାଣି ସାହେବଙ୍କ ବିମୂଢ଼ତାକୁ ବୁଝିଲାପରି ଦାମୁ ଈଷତ୍ ହସ ହସି କହିଲା—

"ମୋ ଝିଅ ମୃଦୁଳା । କାନ୍ଦୁଛି । କଷ୍ଟ ସହିପାରୁନାହିଁ ।"

"କଣ ହୋଇଛି ତା'ର ?" ପାଣିସାହେବ ପଚାରିବାକୁ ବାଧ୍ୟ ହେଲେ ।

"କିଏ କହିପାରିବ ବାବୁ ? ତମେ ନା ମୁଁ, ନା କୋଉ ବଇଦ ଡାକ୍ତର ? ଜମାଲ୍ ମିଆଁ ଡାକ୍ତର ଆସିଥିଲା, ଡାକ୍ତରଖାନାକୁ ନେଇ ପେଟର ଫଟୋ ନେଲା, ଆଉ କେତେ କଣ ପରୀକ୍ଷା କରେଇଲା, ଶେଷକୁ

ଗୋଟାଏ ଲମ୍ବା ନାଆଁ ହାକିଲା, କହିଲା ଏଇଆ ହେଉଛି । ବହିରେ ପଢ଼ା ନାଆଁ । ସେଥିରୁ ମତେ ମିଳବ କଅଣ ? ସମସ୍ତେ ତ ମଣିଷ, ତା ବୋଲି ଦାମୁ ଯାହା ସାନବାବୁ କଣ ସେଇଆ ? ମୋ ଝିଅର ରୋଗ ତାର ପାଇଁ, ତା' ହସକାନ୍ଦ ତା'ର ପାଇଁ, କାହିଁକି କଅଣର ଫର୍ଦ୍ଦ ଖାସ ତାରପାଇଁ । ଜଗା ଜାଣିଛି । ଆଉ କେହି ତା' ଭେଦ ପାଇବେ ନାହିଁ । ଔଷଦ ଖାଉଛି । କାନ୍ଦୁଛି । ବେଳେବେଳେ ହସୁଛି, କହୁଛି ସେ ତା'ର କୋଉ ସାଙ୍ଗଠାରୁ ମାଂସକାଳିଆ ରାନ୍ଧି ଶିଖିଛି, ଭଲ ହୋଇଗଲେ ମତେ ଖୁଆଇବ ।

ଯୁଦ୍ଧର ପାଞ୍ଚବର୍ଷତଳେ ମୋ ପୁଅ ରତନା ବି ସେମିତି କହୁଥିଲା । ଭଲ ହେଇଗଲେ ମତେ କ୍ରିକେଟ୍ ଖେଳ ଶିଖେଇବ । ତାର ଛାତି ଭିତରେ କଣ ହୋଇଥିଲା ଯେ ତିନ ଚାରିମାସ ହାସ୍‌ପାତାଲ୍‌ରେ ପଡ଼ିରହିଲା, ଶେଷକୁ ଡାକ୍ତର ବି ମୁହଁ ଶୁଖେଇଲେ । କିନ୍ତୁ ସେ ମତେ କ୍ରିକେଟ୍ ଖେଳ ଶିଖାଇଲା ନା ଛାଡ଼ିଲା ? ମୁଁ ଜାଣିଥିଲି ଆଗରୁ, ଜଗା ମତେ କହି ଦେଇଥିଲା···"

ଏହି ସମୟରେ କାନ୍ଦଣାର ସ୍ୱର ଆହୁରି ତୀବ୍ର ହୋଇ ଉଠିଲା, ଏବଂ ପରଦାପାଖରେ ପୁଣି ଜଣେ କିଏ ଛିଡ଼ା ହୋଇ ତାକୁ ଡାକିଲାପରି ମନେହେଲା । 'ଯାଉଛି ଲୋ ମାଆ ଯାଉଛି । ତୋ କଷ୍ଟ ଚାଲିଯିବ, ଆଉ ବେଶି ଦିନ ନୁହେଁ···" କହି ଦାମୁ ଖଟରୁ ଉଠିବାକୁ ଲାଗିଲା ।

ପାଣି ସାହେବ ଆଶ୍ୱସ୍ତ ହେଲେ ଯେ ତାଙ୍କୁ ଆଉ ଏଠି ବସି ରହିବାକୁ ପଡ଼ିବ ନାହିଁ । କାରଣ ସେ ମୁଗ୍‌ଧ ହେବା ସଙ୍ଗେ ସଙ୍ଗେ ଉପ୍ତୁଖିତ ହୋଇଆସୁଥିଲେ । ଯେମିତି କି ଏଇ ଦାମୁ ଆଉ ତା' ଜଗା, ପୃଥିବୀ ଓ ଆକାଶ ଏକାଠି ହୋଇ ଆସୁଛନ୍ତି, ପାଖେଇ ଆସୁଛନ୍ତି ତାଙ୍କ ଆଡ଼କୁ, ମତଲବ ବୁଝି ହେଉନାହିଁ···

କହିବା ବାହୁଲ୍ୟ ଯେ, କପଡ଼ା ଫେରାଇ ଆଣିବା କଥା କୋହିଲା । କିନ୍ତୁ ବିଦା ହେଲାବେଳେ ଦାମୁ ପୁଣି ଥରେ ନିର୍ଭର ଜବାବ ଦେଲା ସାହିଚଢ଼ଣାଙ୍କୁ ଶୁଣେଇଲା ପରି—ନକବାବୁର ସୁଟ୍ ଠିକ୍ ସମୟରେ ପହଞ୍ଚିଥିବ ଚିନ୍ତା ନାହିଁ । ଏଇ ଝିଅଟା ପାଇଁ ଯାହା କିଛି ଡେରି ହୋଇଗଲା ସିନା ।

ନକର ଇଷ୍ଟରଭ୍ୟୁ ଭଲରେ ସରଗଲା । ନକର ମତରେ ତାଙ୍କୁ ସେମାନେ ଏତେ ଭଲ ପାଇଲେ ଯେ ତା'ଙ୍କୁଇ ସବୁଠାରୁ ବେଶି ପ୍ରଶ୍ନ ପଚାରିଲେ, ଗଭାସ୍କରଙ୍କ ରେକର୍ଡଠାରୁ ଆରମ୍ଭ କରି ବିଶ୍ୱଶାନ୍ତି ପର୍ଯ୍ୟନ୍ତ । ତା'ର ଟେଲେଗ୍ରାମେ ସନ୍ଦେହ ନ ଥିଲା ଯେ ସେ କେବଳ ପାସ୍ କରିବ ନାହିଁ । ପାଣିସାହେବ ବାକ୍ୟ ପୂରଣ କରିବାକୁ ଚାହୁଁଥିଲେ ସେ ଗଡ଼ କରିବ । ମୁଁ ଜାଣିଛି । ଏବଂ ସେ ଦାମୁ ଉଦ୍ଦେଶ୍ୟରେ ମନେ ମନେ ଆଖିମିଟିକା ମାରିଲେ ।

ହେଲେ ସେ କାମ ଭିଡ଼ରେ ଦାମୁ କଥା ଭୁଲି ଯାଇଥିଲେ । ମନେ ପଡ଼ିଲା ସେତେବେଳେ ସେ ବିଶ୍ୱସ୍ତ ସୂତ୍ରରୁ ଖବର ପାଇଲେ—ଫଳାଫଳ ପ୍ରକାଶ ପାଇବା ପୂର୍ବରୁ—ସେ ହୋଇଯାଇଛି । ମଳୟ ପାଣି ଆଇ.ଏ.ଏସ. । ସେ ପ୍ରଥମେ ବରଜାଙ୍କ ପାଖକୁ ଗଲେ । ତମ ପୁଅ ଆଇ.ଏ.ସ୍. ହୋଇଛି ବୋଲି କହି ତାଙ୍କୁ ଶୋଇବା ଅବସ୍ଥାରୁ ଉଠେଇଲେ, ତାଙ୍କ ପୃଥୁଳ ହାତକୁ ନଚେଇ କରମର୍ଦ୍ଦନ କଲେ । ଖାଲି ସେତିକି ନୁହେଁ, ସେ ବହୁ କଷ୍ଟରେ ପତ୍ନୀଙ୍କୁ ଚୁମ୍ବନ କରିବାର ଆବେଗ ସମ୍ଭାଳି ନେଲେ । ଅଧିର ବାସ୍ତବରେ ତାଙ୍କ ପାଇଁ ଆତୁର ହୋଇ ଉଠିନଥିଲା, ଅଖିତର ମଳୟ ପବନକୁ ଶୋଷିବ ବୋଲି ହେଉଥିଲା, ତା'ସାଙ୍ଗକୁ ଭବିଷ୍ୟତର ସୁନାସିଂହାସନ ଛୁଇଁବାକୁ ବସିଥିଲା । ଯାହା ହେଉ, ପାଣି ସାହେବଙ୍କୁ କଚ୍ଛଟା ପାଇଲାପରି ଲାଗିଲା । କାରଣ ବରଜାଦେବୀ ପାଟିଭୁଣ୍ଡ ନକରି ବେଶ୍ ସୁନ୍ଦରିଆ ହସଟିଏ ହସିଲେ । ଅନେକ ଦିନୁ ତାଙ୍କର ଏଭଳି ରୂପ ଦେଖିବାକୁ ମିଳିନଥିଲା । ସେଇଠୁ ତାଙ୍କର ମନେପଡ଼ିଲା ଦାମୁ । ପରିବାର ଛଡ଼ା (ବଡ଼ ପୁଅ ତ ଏଠି ନାହିଁ, ଦୂର କଲେଜରେ ପାଠ ପଢ଼ାଏ) ଆଉ କାହାକୁ ଏଇ ସୁଖବର ଦେଇହେବ ନାହିଁ, ଯେହେତୁ ସମ୍ବାଦ ଗୋପନୀୟ । କିନ୍ତୁ ଦାମକୁ କହିଲେ କ୍ଷତି ନାହିଁ, ଦାମୁକୁ କହିବାକୁ ହେବ, ତା'ର ସ୍ୱଚ୍ଛ୍ ପିଲ୍ଲ ପୁଅ ଗଡ଼ କରିଛି, ତା'ର ଜଗା ମୂଳରୁ ଟହ୍ଲେଇଦେଇଛି···

ଅଦମ୍ୟ ଉତ୍ସାହରେ, ଅପେକ୍ଷା କରି ବସିଥିବା ମହକିଲମାନଙ୍କୁ ଚଟରେ ପକାଇ ପାଣି ସାହେବ ଦାମୁ ଘରକୁ ବାହାରିଲେ । କୋର୍ଟକୁ ଗିବାପାଇଁ ଡେରି ହୋଇଯିବ, ଆଜି ଗୋଟାଏ ବଡ଼ ମାମଲାର ଶୁଣାଣି

ଅଛୁ, ସେ ସ୍ୱପ୍ନରେ ମଧ୍ୟ ଭାବିବା ପାଇଁ ସମୟ ପାଇଲେ ନାହିଁ । ବଡ଼ନ୍ତା ସକାଳର ଗହଳ ଗର୍ଜିଉଠୁଥିଲା ସେତେବେଳକୁ ।

ପଦ୍ମଅଁଲାକ୍ଷଣି ସେ ଦେଖିଲେ ଯେ ସିଲେଇ କଳ ପାଖରେ ତା'ପୁଅ ରତନା ବସିଛୁ । ଆଜ କେହ୍ବ କୁଆଡ଼େ ନାହାନ୍ତି । 'ତୋ' ବାପା କୁଆଡ଼େ ଗଲା ?' ପଗ୍ଭରଲାରୁ ସେ ମୁଣ୍ଡ ଉଠେଇଲା ଓ ପାଣି ସାହେବଙ୍କୁ ଶୂନ୍ୟଦୃଷ୍ଟିରେ ଅନେଇଲା ।

"ବା' ନାହିଁ । ମାସେ ହେଲାଣି ପୁରସ୍ତମରେ ଅଛୁ ।"

"କ'ଣ ହେଲା ? କାହିଁକି ସେଠି ବସିଛୁ ଯାଇଁ ?"

"ମୃଦୁଲ ଚ୍ଚାଲିଗଲା ବୋଲି—"

"ଏଁ ? ମୃଦୁଲ ? ମୃଦୁଲ ଚ୍ଚାଲିଗଲା ବୋଲି ?" ହୃଦୟଙ୍ଗମ କରିବାପାଇଁ ସମୟ ଲଗିଲା । ତା'ପରେ ପାଣିସାହେବ ଅସ୍ୱାଭାବିକ ଭାବରେ ତେଜି ଉଠିଲେ । ତାଙ୍କର ମନେ ହେଲା ତାଙ୍କୁ ଅଯଥାରେ ଦୋଷୀ କରାହେଉଛୁ । ଏମାନେ ସମସ୍ତେ ମିଶି ତାଙ୍କୁ ଗୋଟାଏ ଖାପ୍‌ଚାରେ ପକେଇଛନ୍ତି । କହିଲେ—"ଅସମ୍ଭବ ! ଇଂପସିବ୍ଲ ! ମୃଦୁଲ ଚ୍ଚାଲିଗଲା··· ଚ୍ଚାଲିଯିବ କେମିତି ? ଆଜ ସେ ମୋତେ କହିଲା ନାହିଁ କଣ୍ଣ ? ଖବର ବି ପଠେଇଲା ନାହିଁ ? ଏଡ଼କ ପାଜି, ମୋତେ ମିଛୁଟାରେ—"

ରତନା ବୁଝେଇବାକୁ ଚେଷ୍ଟାକଲା ଯେ ବା' ତା ପରଦିନ ପୁରସ୍ତମ ପଳେଇଲା । କହୁଥିଲା ଯେ ସାନବାବୁଙ୍କୁ ଖବର ଦେବାକଥା, କିନ୍ତୁ ଏଇକ୍ଷଣି ନୁହେଁ, ପରେ । କୋଉ ଇଣ୍ଟରଭିଉ ଅଛୁ । ତା'ର ଗତକାଲି ଫେରିବାର ଥିଲା, କିନ୍ତୁ ଅଟକିଗଲା କାହିଁକି ନା ଆଜି ମହାପ୍ରଭୁଙ୍କର ରାଜବେଶ । ସେଇଆକୁ ଦେଖିକରି ଆସିବ ।

"ରାଜବେଶ ମାଇ ଫୁଟ୍ !" ପାଣିସାହେବ ସିଲେଇ ଟେବୁଲରେ ହାତକୁ କଚଡେଲେ, କିନ୍ତୁ ପରମୁହୂର୍ତ୍ତରେ ଆଖି ଫେରାଇଆଣିଲେ । କାରଣ ତାଙ୍କର ମନେହେଲା ସେ ମୁହୂର୍ତ୍ତକରେ ଗଳଗଳ ହୋଇ କାନ୍ଦି ପକେଇବେ । ଶୋକରେ ନୁହେଁ, ନିଷ୍ଫଳ କ୍ରୋଧରେ ହାରିଗଲାପରି ।

ହ୍ୟାପ, ତଥାପି ତାର ରାଜବେଶ ଦେଖିବାକୁ ଅନେଇଛୁ ? ଆଉ ସିଏ ବି ଏତେ ଅଲାଜୁକ ଯେ ଜଭ ସ୍ବଚ୍ଛୁ ତୋ’ ଆଗରେ ? ମୁଁ ତୋ ରଜା, ମୁଁ ତୋତେ ଭୁଲେଇବ, ଭଣ୍ଡେଇବ, ପୁଅକୁ ତାଡ଼ିବ, ଝିଅକୁ ମାରିବ, ସତ କହିବ, ମିଛ କହିବ, ମୁଇଁ ତୋ’ ମାଲିକ ବୋଲି ଫୁଲେଇ ହେଉଛୁ ।

ପ୍ରକୃତିସ୍ଥ ହୋଇ ଫେରିଆସିଲାବେଳକୁ ସେ ଦୋହରେଇ ହେଉଥିଲେ ଯେ ସେ ପୁଣି କେବେ ହେଲେ ଏଠିକି ଆସିବେ ନାହିଁ । କାହିଁକିନା ଏଇ ଭକ୍ତମାନଙ୍କର ଠାକୁରଙ୍କୁ ବିଶ୍ବାସ ନାହିଁ । କିଏ ଜାଣେ ତା’ର ଜଗା ମୋତେ ବି ସତକୁ ସତ ପାଲରେ ପକେଇବ ? ନିଜକୁ ସିନା ଗଡ଼ କିତେଇଲି···

ନା, ମୋର କିଛୁ ହେବ ନାହିଁ । ମୁଁ କଣ ଦାମୂପର ବୋକା ହୋଇଛୁ ? ପାଣିସାହେବ ଆପଣା ଶ୍ରୀକୃଷ୍ଣଙ୍କୁ ହେଜିଲେ ଓ ପିନ୍ଧା ପୋଷାକକୁ ଝାଡ଼ିହେଲେ ।



# ଖେଳ ସବୁ ନାହିଁ

ଆମ ଯୋଦ୍ଧାମାନେ ସ୍ପଷ୍ଟତଃ ଜାଣି ନ ଥିଲେ । ତେଣୁ ନୂଆ ଖେଳର ଆନନ୍ଦ ପାଇଁ ଯୁଦ୍ଧଂ ଦେହି କହିବା ତାଙ୍କ ପକ୍ଷରେ ସମ୍ଭବ ହୋଇ ନ ଥାଆନ୍ତା । କିନ୍ତୁ ଯୁଦ୍ଧର ଜୟଗାନ କରିବାପାଇଁ ସେମାନେ ଆଉ ଗୋଟିଏ ଦୁହା ଧରିଥିଲେ । ଇନ୍‌କିଲାବ ଜିନ୍ଦାବାଦ । ତାର ଅର୍ଥ ମଧ୍ୟ ସେମାନେ ଜାଣି ନ ଥିଲେ । କିମ୍ବା ଜାଣି ପାରି ନ ଥାଆନ୍ତେ । ତାଙ୍କ ଦୋଷ ନୁହେଁ । ବିଗ୍ଭର କରନ୍ତୁ ଯେ ସେମାନଙ୍କର ବୟସ ଛଅରୁ ବାର ଏବଂ ମହାନଗରୀରେ ସମବେତ ଉତ୍ତେଜନାର ଆଉ କୌଣସି ମଡ଼େଲ୍ ତାଙ୍କ ଆଖିରେ ପଡ଼ି ନ ଥିଲା ।

ତେବେ ମାନିବାକୁ ପଡ଼ିବ ଯେ ଗଞ୍ଜୁ ଦଳରେ ମିଶିବା ପୂର୍ବରୁ ସେମାନେ ଏମିତିକା ଦୁହା ଧରି ନ ଥିଲେ କି ରଣରଙ୍ଗରେ ରଞ୍ଜିତ ହୋଇ ନଥିଲେ । ଶୋଭାଯାତ୍ରା ତାଙ୍କ ବାଟ ଦେଇ ଗଲାବେଳେ ହୁଏତ ତାଙ୍କ ଭିତରୁ ଜଣେ ଅଧେ (ବିଶେଷତଃ ନଡ୍ଡୁ) ଜିନ୍ଦାବାଦର ପାଳି ଧରେ, କିନ୍ତୁ ସେଇଠୁଁ ଆଗକୁ ନୁହେଁ । ଅବିଳମ୍ବେ ସେମାନେ ଆପଣା ଚିରାଚରିତ ଖେଳକୁ ଫେରି ଆସନ୍ତି—ଡାଉଡ଼ୀ-ମନ୍ତ୍ରୀ, ବାହାଘର, ପିକ୍‌ନିକ୍ ଇତ୍ୟାଦି । ଖାଲି ଥରୁଟାଏ ଯାହା ଇନ୍‌କିଲାବ୍‌ବାଲାଙ୍କୁ ନେଇ ବିପଦ ଘଟିବାର ସମ୍ଭାବନା ଥିଲା । କ'ଣ ହେଲା କି, ଶୋଭାଯାତ୍ରାରେ ତାଙ୍କର ବୟସର ପିଲାଟିଏ, ହେଲେ ମଳମୁଣ୍ଡିଆ, ଗ୍ଭେଟିଆ ପତାକା ଧରି ଗ୍ଭଲିଥିଲା ଓ ନାକ ପୋଛୁ ପୋଛୁ ପାଟି କରି ଉଠୁଥିଲା । ତା'କୁ ଦେଖି ଅନୁ ହସି ପକେଇଲା । ସେଇଠୁଁ ଆଉକ ଖତେଇ ହେଲା । ଅନୁ ମଧ୍ୟ ଟିକିଏ ଖତେଇ ହୋଇଥିଲେ କାମ ଛୁଟି ଯାଇ ଥାଆନ୍ତା । କିନ୍ତୁ ସେ କିଛି କହିବା ପୂର୍ବରୁ ନଡ୍ଡୁ 'ବ୍ଲଡ଼ି ବାଷ୍ଟାର୍ଡ଼୍' ଶବ୍ଦ ଗ୍ଭେବେଇଲା ପରି ହୋଇ ଗୋଟାଏ ଟେକା ଉଠେଇଲା । ଟେକା ଖତେଇଲାପିଲା ଅବା ଅନ୍ୟ ଶୋଭାଯାତ୍ରାକାରୀଙ୍କ ଉପରେ ପଡ଼ିଥିଲେ କ'ଣ ହୋଇଥାନ୍ତା ସହଜେ ଅନୁମେୟ । ଭାଗ୍ୟ ଭଲ, ଠିକଣା ସମୟରେ ବିଶୁ ତା' ହାତକୁ ଧରି ପକେଇଲା ଓ ଆଖିଦେଖେଇ କହିଲା—ଷ୍ଟପ୍ ଇଟ୍ ! ବିଶୁର ବଳ ବେଶି, ଅଗତ୍ୟା ନଡ୍ଡୁର ଉଦ୍ଧଣ୍ୟ

ସଫଳ ହୋଇ ପାରିଲା ନାହିଁ । ଖାଲି ସେତିକି ନୁହେଁ, ବିଶୁ ତାକୁ ଧମକେଇଲା । କହିଲା—ରହ, ତୋ ଡାଉଡ଼ୀଙ୍କୁ କହି ଦେଉଛି, ସେ ତୁ କେମିତି ପୋଲିସ୍‌ବାଲାଙ୍କ ଉପରକୁ ଟେକା ଛାଡୁଥିଲୁ । ବିଶୁ ସାମାନ୍ୟ ମିଛ କହିଲା, କାହିଁକିନା କେତେଜଣ ପୋଲିସବାଲା ଶୋଭାଯାତ୍ରାକୁ ପହରା ଦେଇ ଚାଲୁଥିଲେହେଁ ଟେକା ତାଙ୍କ ପ୍ରତି ଉଦ୍ଦିଷ୍ଟ ହୋଇ ନ ଥିଲା । ଯାହା ହେଉ ସେତିକିରେ ନିତୁ ଅପ୍ରତିଭ ରହିଗଲା । ତା'ର ବାପା ବଡ ପୋଲିସ ଅଫିସର୍ । ବାପା ରାଗିଲେ କଣ କରି ପାରନ୍ତି ସେ ଶୁଣିଛି, ଦେଖିଛି, ଭୋଗିଛି । କିନ୍ତୁ ସେଇଦିନ ଠାରୁ ତାର ବିଶୁ ପ୍ରତି ଗଢ଼ି ଉଠୁଥିବା ବିଦ୍ୱେଷ ଘନେଇ ଗଲା । ହୁଏତ ସେ କିଛିଦିନ ପରେ ଦଳ ଛାଡ଼ି ଦେଇ ଥାଆନ୍ତା । ଗଲା ପୂର୍ବରୁ କିଛି ଗୋଟାଏ ଶେଷ କଥାର ଚମତ୍କାରିତା ଦେଖାଇ ଥାଆନ୍ତା । ଯଥା – ବିଶୁ ଉଦ୍ଦେଶ୍ୟରେ ଥୁ' କରି କମ୍ପା ତାକୁ 'ସିସ୍‌ସୀ' ଅର୍ଥାତ, ମାଇଚିଆ ବୋଲି କହି ଦୌଡ଼ି ପଳେଇ ଥାଆନ୍ତା ନିଜ ଘରକୁ, ଆଉ ମୋଟେ ଫେରନ୍ତା ନାହିଁ । ପ୍ରକୃତରେ ଗଂଜୁର ଅବିର୍ଭାବ ତା'ର ଯୋଜନା ବଦଳାଇ ଦେଲା ।

ସାହସର ସହିତ ଗଂଜୁ ପହିଲି ଦିନ ମୁହେଁ ମୁହେଁ ବତେଇଲା ସମସ୍ତଙ୍କୁ ଯେ ତାକୁ ଏଇ ସବୁ ମାଇଚିଆ ଖେଳ ଭଲ ଲାଗେ ନାହିଁ । କହିଲା, ଆମେ ଲଢ଼େଇ ଖେଳ ଖେଳିବା, ଏବଂ କହୁ କହୁ ଚିତ୍କାର କଲା —ଇନ୍‌କିଲାବ··· । ଅନ୍ୟମାନେ ଛୁଏଁ ଛୁଏଁ ପାଳି ଧରିଲେ— ଜିନ୍ଦାବାଦ ! କହିବାକୁ ଗଲେ ସେଇ ମୁହୂର୍ତ୍ତରେ ୧୮ ନମ୍ବର ଗାନ୍ଧିନୁ ବାଗ୍‌ରେ ନିତ୍ୟ ପ୍ରତ୍ୟହ ଅନୁଷ୍ଠିତ ହେଉଥିବା ବାଲ୍ୟଲୀଳା ନୂତନତମ ରୂପ ଧାରଣ କଲା । ଯୁଦ୍ଧ ପର୍ବ ଆରମ୍ଭ ହେଲା ।

କିନ୍ତୁ ଇନ୍‌କିଲାବ ସାଙ୍ଗକୁ ଜିନ୍ଦାବାଦ କହିବାରେ ଯେଉଁ ସମନ୍ୱିତ ଉତ୍ସାହ ଦେଖାଗଲା, କାମ ବେଳକୁ ସେତେଟା ନଥିଲା । ଗଂଜୁ ଯେତେ ବେଳେ ତା'ର ଲଢ଼େଇ ଖେଳର ବ୍ୟାଖ୍ୟା କଲା, ତା'ର ତାତ୍ପର୍ଯ୍ୟ ଅନେକ ବୁଝି ପାରିଲେ ନାହିଁ । ବୋଧହୁଏ ସେଇଥିପାଇଁ ବିଶେଷ ଆଗ୍ରହ ଦେଖେଇଲେ ନାହିଁ । କେବଳ ନିତୁ ଛଡ଼ା । ସେ ସମର୍ଥନରେ ଉଣା କଲା ନାହିଁ । ମୁଣ୍ଡ ଟୁଙ୍ଗାରିଲା, ଭୂଇଁରେ ହାତ ପିଟିଲା, ତାଳି ମାରିଲା, ଇତ୍ୟାଦି । ବରଂ ତା'ର ଭାବଭଙ୍ଗୀ ଏତେ ମୁଖର ମନେ ହେଲା ଯେ

ଗଂଜୁ ତାକୁ ଥରୁଟାଏ କଟମଟ କରି ଚାହିଁଲା । ପିଲା ମୋତେ ଥଟ୍ଟା କରୁଛୁ ନା କ'ଣ ? କିଛି କହିଲା ନାହିଁ, କିନ୍ତୁ ଚିପି ରଖିଲା । ପ୍ୟା'କୁ ବିଶ୍ୱାସ ନାହିଁ । ଅଥଚ ଅନ୍ୟମାନଙ୍କୁ ମୂଢ଼ ବାଳକବାଳିକା ବୋଲି ଗଣି ଧୈର୍ଯ୍ୟର ସହ ବୁଝେଇବାକୁ ଚେଷ୍ଟା କଲା ।

କହିଲା, ଶୁଣ, ଏଇ ଯେଉଁ ପଞ୍ଜାବ ଖେଳ କଥା କହୁଛି, ଏଇ ସେଇ ଚୋର-ପୋଲିସ ଖେଳ । କିନ୍ତୁ ଏଥିରେ ବେଶି ଲଢ଼େଇ, ଗୁଡ଼ୁମ୍... ଗୁଡ଼ୁମ୍, ଢୋ-ଢା । ଗୁଡ଼ାଏ ଲୋକ ମରୁଥିବେ, ବଦମାସମାନେ ଦୌଡ଼ି ପଳେଇବେ, ପୋଲିସ ତାଙ୍କୁ ଗୋଡ଼େଇଥିବ କିନ୍ତୁ ଧରି ପାରିବ ନାହିଁ । ଏଠି ଗୋଡାଇଲାବେଳେ ସେଠି ଆଉ କୋଉ ବଦମାସ ଆଉ କାହାକୁ ଗୁଡ଼ୁମ୍ ଗୁଡ଼ୁମ୍ କଲାଣି, ପୁଣି ପୋଲିସ୍ ଗୋଡ଼େଇବ, ଚାଲିଥିବ ଏମିତି । କିଏ କାହାକୁ ମାରିବ କେତେବେଳେ ଜଣା ନ ଥିବ ଆଗରୁ । ଆରେ ଖବରକାଗଜରେ ବାହାରୁ ନାହିଁ ଆଜିକାଲି ? ତମ ଡାଡ଼୍ଡୀ ହେରିକାଙ୍କ ଠାରୁ ଶୁଣୁ ନାହିଁ ? ସତ ଖେଳ, ବେଷ୍ଟ ଖେଳ । ସବୁଠୁ ନୂଆ ଖେଳ । ଆମ ଛଡ଼ା ଆଉ କେହି ଜାଣି ନ ଥିବେ ପ୍ୟା'କୁ । କ'ଣ କହୁଛ ?

ଧୀରେ ଧୀରେ ଅନ୍ୟମାନେ ଖେଳର ମାହାତ୍ମ୍ୟ ବୁଝିଲା ପରି ମନେ ହେଲା । ବିଶେଷତଃ ଦଳରେ ଥିବା ପୁଅପିଲାମାନେ । କାରଣ ସେମାନେ ଘରେଇ ଚୁପ୍‌ଚାପିଆ ଖେଳରେ ବୋର୍ ହୋଇ ଆସୁଥିଲେ । ଅବଶ୍ୟ ଝିଅଙ୍କୁ ପରି ଆଉ କେହି ହଠାତ୍ ଭୂତ ଲାଗିଲାପରି ହେଉ ନଥିଲେ । ଅକାରଣରେ ଚୂଳିଚାଳକୁ ଗୋଇଠା ମାରୁ ନଥିଲେ । ଡାଡ଼୍ଡୀ-ମମ୍ମୀ ଖେଳରେ ମମ୍ମୀର ଗାଲକୁ ନିର୍ମମ ଭାବରେ ଚିପୁ ନଥିଲେ କିମ୍ବା ବାହାଘର ଖେଳରେ ଠିକ୍ ହାତଗଣ୍ଠି ବେଳକୁ ମତେ ମୁତ ମାଡ଼ୁଛି ବୋଲି କହୁ ନଥିଲେ । କିନ୍ତୁ ଯେତେ ଭଦ୍ର ହୋଇ ରହିଲେ ମଧ୍ୟ ଜଣାଅଧିକେ ସବୁ ପୁଅପିଲା ଖେଳ ମଝିରେ ଅନ୍ୟମନସ୍କ ହୋଇ ଆକାଶକୁ ଅନେଇବାର, ସ୍ୱଗତ କଥା କହିବାର, ଏବଂ କଦବା କ୍ୱଚିତ୍ ଗଛ ଡାଳଖଣ୍ଡ ଆଦି ବସ୍ତୁକୁ ହଲେଇ-ବାର ଦେଖା ଯାଉଥିଲା । ତେଣୁ ପଞ୍ଜାବ-ପଞ୍ଜାବ ଖେଳର ଅଭିନବ ମାଧୁରୀ ପୂରାପୂରି ଧରି ନ ହେଲେ ମଧ୍ୟ ସେମାନେ ଦେଖିଲେ ଯେ ଗଞ୍ଜୁକୁ ମାନିନେଲେ ଭଲ ହେବ । ଝିଅମାନେ ଆଉ ଆମକୁ ଦବେଇ ପାରିବେ ନାହିଁ ।

କହିବେ ନାହିଁ ଯେ ଏମିତି ରନ୍ଧା ହୁଏ, ବାହାଘରରେ ଏଇଆ ସବୁ ହୁଏ । ବାପା ବୋଉଙ୍କ କାରବାର ଏମିତିକା—ଆମଠୁ ତମେ କଣ ବେଶୀ ଜାଣିଛ ? ତେଣୁ ଦଳରେ ଥିବା ପୁଅମାନେ ଯଥାକ୍ରମେ ଗଞ୍ଜୁର ପ୍ରସ୍ତାବକୁ ସ୍ୱୀକାର କରନେଲେ ।

ବାକି ରହିଲେ ଝିଅମାନେ । ଗଞ୍ଜୁ ତା'ର ଅନୁଗତ ହରିଣକୁ ନେଇ ଦଳରେ ମିଶିଲା ପରେ ସେମାନେ ସଂଖ୍ୟାଲଘୁ ହୋଇ ଗଲେଣି, ଝିଅ ଗ୍ୱରିଜଣଙ୍କୁ ପୁଅ ପଞ୍ଚଜଣ । କିନ୍ତୁ ସେମାନଙ୍କୁ ବାଦ ଦେଇ ହେବ ନାହିଁ । ବିଶେଷ କାରଣ ହେଉଛି ଯେ ଅଠର ନମ୍ବରର ହତା ପରି ପ୍ରଶସ୍ତ କ୍ଷେତ୍ର ଏଇ ପଡ଼ାରେ ଆଉ କେଉଁଠି ନାହିଁ ଏବଂ ଅଠର ନମ୍ବରର ମାଲିକ ହେଉଛନ୍ତି ଅନୁର ବାପା, ଗୋଟିଏ ସରକାରୀ କର୍ମାଗାର ଦୁଇ ନମ୍ବର କର୍ତ୍ତା । ତେଣୁ ଝିଅମାନଙ୍କୁ ଆଶ୍ୱାସନା ଦେବା ଜରୁରୀ ହୋଇ ପଡ଼ିଲା । ମାସ୍ତୁ ଯେତେବେଳେ କହିଲା ଯେ ଆମର ଦରକାର ନାହିଁ, ଆମେ ବଦମାସ ହେବୁ ନାହିଁ କି ପୋଲିସ ହେବୁ ନାହିଁ, ଆମର ଏଭଳି ଗନ୍ଧଆ ଖେଳ ଦରକାର ନାହିଁ । ପୁଅମାନେ ତା'କୁ ମନେଇବାକୁ ଚେଷ୍ଟା କଲେ । ଶେଷକୁ ଗଞ୍ଜୁ ଗପୁ ଦେଲା—

'ବେଶ । ତମେ ବଦମାସ୍ ହେବ ନାହିଁ । ତମେ ହେବ ଲୋକ ।'

'ତା ମାନେ କଣ ?

'ମାନେ ତମେ ପବ୍ଲିକ । ଦୋକାନୀ, ରିକସାବାଲା, ସ୍ତ୍ରୀଲୋକ ଏମିତି ସବୁ । ବୋମା ପଡ଼ିଲେ କି ଗୁଳିମାଡ଼ ଚ୍ୱଲିଲେ ତମେ ପ୍ରଥମେ ମରିଯିବ । ସେଇଠୁ ଆମ ଖେଳ ଆରମ୍ଭ ହେବ ।''

ଏଥିରେ ମାସ୍ତୁ ରାଗିଯିବା ସ୍ୱାଭାବିକ । କିନ୍ତୁ ତାର ରାଗ ପ୍ରଚଣ୍ଡ ହୋଇ ଉଠିବା ପୂର୍ବରୁ ବିଶୁ ତାକୁ ଶାନ୍ତ କରେଇବାକୁ ଚେଷ୍ଟା କଲା । କହିଲା ଗଞ୍ଜୁ ଜୋକ୍ କରୁଛି । ଆମେ ସମସ୍ତେ ବଦ୍‌ମାସ୍ ହେବୁ, ପୋଲିସ ହେବୁ ଆଉ ଲୋକ ହେବୁ । ଅଦଳେଇ ବଦଳେଇ । ତା'ଛଡ଼ା ଥକି ଗଲେ ଆମେ ପୁଣି ଡାକ୍ତର-ମନ୍ତ୍ରୀ ହେବୁ, ପିକ୍‌ନିକ୍ କରିବୁ···

କିନ୍ତୁ ଅଳ୍ପଦିନ ଭିତରେ ପିଲାମାନେ ଏଇ ନୂଆ ଖେଳରେ ଏମିତି ମଜ୍ଜିଗଲେ ଯେ ପୁରୁଣା ଖେଳକୁ ଥରେ ହେଲେ ଫେରି ଯିବାର ନାଁ

ଧରିଲେ ନାହିଁ । ତାହା ସବୁଠୁଁ ମଜା ଲଗିଲା ଜୀବନ ମରଣର ଆକସ୍ମିକତା । ଏବଂ ସ୍ୱାଧୀନତା । ପୋଲିସ୍ ଓ ବଦ୍‌ମାସ ଏଇ ଦୁଇ ଦଳ ନେଇ ଖେଳ ଆରମ୍ଭ ହୁଏ । ବଦ୍‌ମାସ୍‌ଙ୍କ ଦଳରେ ଜଣେ ଅଧିକା ହେବା ଦରକାର, ଟିଂକୁ କହିଛି । ରେଡ଼ି, ଷ୍ଟେଡ଼ି, ଗୋ···ହୁଇସିଲ୍ ବାଜିଲା, ସେଇଠୁ ଦୁଇ ଦଳ ମଧ୍ୟରେ ଯେ ଯାହାକୁ ଗୁଳି କରିପାରେ । ତମ ଦେହରେ ଦି'ଥର ଗୁଳି ବାଜିଲେ ତମେ ମରିଯିବାକୁ ବାଧ୍ୟ । କିନ୍ତୁ ବଦ୍‌ମାସ୍‌ଙ୍କ ଭିତରୁ ଜଣେ ସବୁବେଳେ ପଳେଇ ଯାଇ ଲୁଚିବ, ଏବଂ ପୋଲିସବାଲାଙ୍କ ଭିତରୁ ଶେଷ ଜଣକ ବଞ୍ଚି ରହି ତାକୁ ହିଁ ଖୋଜିବ । ଅନ୍ତିମରେ ଭୀମ ଦୁଃଶାସନଙ୍କ ହାତାହାତି ନ ହେବା ଯାଏଁ ମହାଭାରତ ସରିବ ନାହିଁ । ଆଉ ଗୋଟିଏ କଥା । ଯେଉଁମାନେ ମଲେ ସେମାନେ ପୁଣି "ଲୋକ" ହୋଇ ଜୀଇଁ ପାରନ୍ତି ମରି ପାରନ୍ତି । ସେମାନେ ସ୍ୱାଧୀନ କିନ୍ତୁ ଅନାବଶ୍ୟକ । ଯଥା ଛଅ ବର୍ଷର ନନ ସବୁଠୁ ଶୀଘ୍ର ମରିଯାଏ, ମରିଗଲା ଉତ୍ତାରୁ ବେଶ୍ ଖୁସିରେ ଥାଏ । ହୁଏତ କେତେବେଳେ ଭେଁକିନା ରଡ଼ି ଛାଡ଼େ, ଖେଳରେ ଗଣ୍ଡଗୋଳ କରେ, ହେଲେ ତା'କୁ କେହି ପରୁଆନ୍ତି ନାହିଁ । ଆଠବର୍ଷିଆ ଅନୁ ମଧ୍ୟ ଯଥାଶୀଘ୍ର ମରିଯିବାକୁ ଚାହେଁ, ଯେମିତିକି ସେ ତା'ପରେ କେବଳ ଲୋକ ହୋଇ ଖେଳ ଦେଖିବ ଓ କଥା କଥାକେ ହସିବ । ତେଣୁ ଯେଉଁମାନେ ଲଢ଼େଇରେ ମାତି ରହନ୍ତି, ସେମାନେ ହେଲେ ବାରବର୍ଷିଆ ଲିଡର୍ ଟିଞ୍ଚୁ, ଦଶବର୍ଷିଆ ପାଟୁଆ (ସେ ତା' କ୍ଲାସରେ ଫାଷ୍ଟ ସେକେଣ୍ଡ ହୁଏ) ବିଶୁ, ସମବୟସ୍କ ଦୁର୍ବିନୀତ ନିତୁ, ସମବୟସୀ ଦୁର୍ବିନୀତା ମାୟା, ଏବଂ ସାତ ଆଠ ବର୍ଷିଆ ହରିଶ, ଲାଲୁ ଓ ପୁନ୍‌ପୁନ୍, ଯେଉଁମାନେ ଖେଳର ନିୟମ କାନୁନ୍ ବୁଝନ୍ତି ନାହିଁ ଅଥଚ ଚେଙ୍କୁଥାଆନ୍ତି, ମାନେ ଅକାରଣରେ ମରନ୍ତି, ଉଠନ୍ତି ଗାଳିଖାଆନ୍ତି ଓ ଜୁଞ୍ଝାଟାକୁ ଦୌଡ଼ୁଥାଆନ୍ତି । ଶେଷକୁ ମନେ ହୁଏ ଯେ ଖେଳ ବନାମ ଯୁଦ୍ଧର ସିପାହୀ ମାତ୍ର ଚାରି ଜଣ—ଟିଞ୍ଚୁ, ବିଶୁ, ନିତୁ ଓ ମାୟା । ସେଇମାନଙ୍କ ଭିତରେ ବେଶି ଗୁଡୁମ୍ ଗୁଡୁମ୍ ଚାଲେ ଏବଂ ଦୁଇଜଣ ବଞ୍ଚି ରହନ୍ତି ଅନ୍ତିମ ହାତାହାତି ହେବା ପାଇଁ । ଖେଳରୁ ହିଂସା ଏବଂ ରକ୍ତପାତ ଘଟିବାର ଆଶଙ୍କା ଥିଲେ ଏଇମାନଙ୍କ ପ୍ରତି ନଜର ଦେବା ଉଚିତ ।

ନିୟମ ଅନୁଯାୟୀ ଖେଳର ଆରମ୍ଭ ଓ ଶେଷରେ ଇନ୍‌କିଲାବ ଜିନ୍ଦାବାଦ୍ ଗାଇବାକୁ ପଡ଼େ । ଆରମ୍ଭର ଉପକ୍ରମ କେବେବେଳେ ବାଦ ଯାଏ ନାହିଁ । କିନ୍ତୁ ସଙ୍ଗୀତ ଭୁଲ ହୋଇଯାଏ । କାରଣ ନଅଜଣ ଯାକ ସହଜେ ଏକତ୍ରିତ ହୋଇ ପାରନ୍ତି ନାହିଁ । ଏବଂ ଶେଷ ଯୋଦ୍ଧା ଦୁ'ଜଣ ଭିତରେ ଭିତରେ ସଅଁ ସଅଁ ହେଉଥାଆନ୍ତି···ଆଜି ହେଲା ନାହିଁ, କାଲିକୁ ବାକି ରହିଲା···ପ୍ରତିହିଂସା ପ୍ରତିହିଂସାର ଭୟ ।

ନଜର ଦେବାକୁ ଥିଲେ ମାତ୍ର ଜଣେ । ଅନୁର ଜେଜେବାପା ଚନ୍ଦ୍ରଶେଖର ରାଏ ।

ସୁଇ ଲେଉଟାଣି ବେଳକୁ ସେ ଲନ୍‌କୁ ଲାଗିଥିବା ବାରଣ୍ଡାରେ ଆଉଜା ବେତ ଚଉକିଟିରେ ବସି ରହନ୍ତି । ଡୁବନ୍ତ ସୂର୍ଯ୍ୟକୁ ତଥା କୋଳାହଳପ୍ରିୟ ଚଢ଼େଇମାନଙ୍କୁ ଅନେଇ ଅନେଇ ଜୀବନର ସନ୍ଧ୍ୟାରେ ଏଇ ସନ୍ଧ୍ୟା କେମିତି ଖାପି ଯାଉଛି ତା'ର ଅନୁଧ୍ୟାନ କରିବାକୁ ପଡ଼େ । ନିତିଦିନ ପ୍ରତିଦିନ । ତା' ସହିତ ଲନ୍‌ରେ ଖେଳୁଥିବା ପିଲାଙ୍କ ହସ-ଖୁସିକୁ ସହଜେ ମିଶେଇ ଦେଇ ହୁଏ । ଆପଣାର ବିସ୍ମୃତ କୈଶୋରକୁ ଆନନ୍ଦ ବୋଲି ଧରି ନେଇ ସେଇଠୁଁ ବର୍ତ୍ତମାନକୁ ସରଳରେଖା ଟାଣି ଦେଇହୁଏ, ମଝିରେ ଥିବା ଅନୁଭୂତିର ପାହାଡ଼ ଜଙ୍ଗଲ ବାଘଭାଲୁ ମୁଣ୍ଡ ଟେକିବାକୁ ସମୟ ପାଆନ୍ତି ନାହିଁ । କିନ୍ତୁ ପିଲାଙ୍କ ନୂଆ ଖେଳ ସୁରୁ ହେବା ଦିନ ଠାରୁ ଧୀରେ ଧୀରେ ତାଙ୍କର ମନେ ହେଲା ଯେ ସୁଖର ପୃଷ୍ଠଭୂମି (ସ୍ମୃତିର ପୃଷ୍ଠଭୂମି) କୁ ପୋକ କାଟିଲାଣି । ପ୍ରଥମେ ଇନ୍‌କିଲାବ ଜିନ୍ଦାବାଦର ଧ୍ୱନି । ନୀତିଗତ ଦୃଷ୍ଟିରୁ ସେ ତା'ର ବିରୋଧ କଲେ । ଭଦ୍ରଘରର ପିଲାମାନେ ଏଭଳି ଧ୍ୱନି ଉଠେଇବା ଉଚିତ ନୁହେଁ । ବାଲୁଙ୍ଗା ଛାତ୍ରମାନଙ୍କ ଧ୍ୱନି, ଆସନ୍ତା ସର୍ବନାଶର ଦୁହା, ତା'କୁ ପ୍ରଶ୍ରୟ ଦେବାର ନୁହେଁ । ଖେଳରେ ହେଉ ପଛକେ······ନା, ମୁଁ ନିଜୁକୁ କହିବି । କିନ୍ତୁ ଭାବି ସ୍ଥିର କରିଥିବା ଆହୁରି ଅନେକ ବିଷୟ ପରି ଏ ବିଷୟରେ ମଧ୍ୟ ପୁଅକୁ କିଛି କହିବାର ସୁବିଧା ମିଳିଲା ନାହିଁ । ବୟସ ସୁଲଭ ନିଶ୍ଚେଷ୍ଟତା ତା'ର ପ୍ରଧାନ କାରଣ ନୁହେଁ । କଥା ହେଉଛି ଯେ ସେ ଯେତେବେଳେ ପାଟି ଫିଟେଇବାକୁ ବସନ୍ତି, ତାଙ୍କୁ ଲାଗେ ଯେ ପୁଅ ହସି

ହସି ତା'ର ଉତ୍ତର ଦେଇ ପାରିବ, ସାପ ମରିବ ନାହିଁ କି ବାଡ଼ି ଭାଙ୍ଗିବ ନାହିଁ । ତେଣୁ, ଗୁଡ଼ ମୋର କଣ ଯାଉଛି, ଏହି ଭାବରେ ସେ ମନ କଥା ମନରେ ରଖନ୍ତି । ତେବେ ମାନ୍ତବସ୍ତୁରକୁ ସିନା ହେଳେଇ ଦେଇ ହେବ, ଧ୍ୟନ୍ତର ଅନୁଭବକୁ ସହଜେ ଉଡ଼େଇ ଦେଇ ହେବ କେମିତି ? ତାଙ୍କ ଟେହ୍ଲା ନାତୁଣୀ ଅନୁ ଯେତେବେଳେ "ମରିଗଲି" ପରେ ବାରମ୍ବାର ତାଙ୍କ ପାଖରେ ଆସି ବସେ ଏବଂ ଅଙ୍ଗଭଙ୍ଗୀ କରି ଗୁଡୁମ୍ ଗୁଡୁମ୍ ହଣା-ହଣିର ଅଭିନୟ କରେ ତାଙ୍କର ଆଶଙ୍କା ହୁଏ ଯେ ମୋର ଏଇ ସୁନ୍ଦରିଆ କଅଁଳିଆ ଧନଟି, ମୋର ନୁହେଁ ଆସନ୍ତା ଭବିଷ୍ୟତର, ନଷ୍ଟ ହୋଇଯିବ । ତା'ର ମିଠା ହସ ବଦଳିଯିବ, ହିଂସାର ବିଷତକ ତା' ମନ ଭିତରେ ଛପିକରି ରହିବ···ନା ! ମୁଁ ରାଜୁକୁ କହିବ ଯେ ଆମ ଘରେ ଏସବୁ ଚଳିବ ନାହିଁ ।

ତଥାପି ସେ ମାଣ୍ଡେଇ ହେଲେ । ନିଜକୁ ଭୁଲେଇବାକୁ ଚେଷ୍ଟା କଲେ ଯେ ଦଳର ଅନ୍ୟମାନେ ଯାହା କଲେ କରନ୍ତୁ, ଅନୁର କିଛି କ୍ଷତି ହେବ ନାହିଁ । ସେ ତାଙ୍କ ଖେଳ ଖେଳୁଛି ସିନା ( କହିଲି କ'ଣ ନା ଇଏ ହେଉଛି ପଂଜାବ-ପଂଜାବ ଖେଳ, ଭଗବାନ୍ ସାହାଭରସା !) ତା' ମନ ସେଥିରେ ନାହିଁ । ନ ହେଲେ କଣ ଏମିତି ମୋ ପାଖରେ ଆସି ବସୁଥାଆନ୍ତା ? ଆଗରୁ ତ ଏମିତି ବସୁ ନ ଥିଲି ? ସେ ନିଜକୁ ବୁଝେଇଲେ ଯେ ସେ କାଳକ୍ଷେପ କରୁନାହାନ୍ତି ଭବିଷ୍ୟତର ଅର୍ଥାତ୍ ଅନର ଅବହେଳା କରୁ ନାହାନ୍ତି । କାହିଁକିନା ବିଶ୍ୱାସ ଆସୁଛି, ଅନ୍ତ-ସ୍ତରଣରୁ ପ୍ରମାଣ ମିଳୁଛି ଯେ ଅନୁ ଅନୁ ହୋଇ ରହିବ । ପୃଥିବୀ ପ୍ରଳୟ ହୋଇଗଲେ ବି ସେ ତା'ର କେଉଁ ସ୍ନେହର ଠଣାରୁ ଅଣେଇଥିବ, ପିମ୍ପୁଡ଼ି କାମୁଡ଼ିଲି ପରି ଟିକିଏ କାନ୍ଦିଉଠି ପୁଣି ହସିବ, ହସୁଥିବ । ଚନ୍ଦ୍ରଶେଖର ବାବୁ ଭଗବାନଙ୍କୁ ଧନ୍ୟବାଦ ଦେଲେ ଯେ ସେ ସାପୁ ପରିବାରକୁ ଅନୁ ପରି କାଣିଚୁଏ ପ୍ରସାଦ ଆଣି ଦେଇଛନ୍ତି । "କଲେ କଣ କହୁଛୁ ?" କହି ସେ ତାକୁ କୁତୁକୁତୁ କଲେ, ଏବଂ ତା' ବଦଳରେ ଅକାରଣରେ ଅନୁ ତାକୁ ଖିଲ ଖିଲ ହୋଇ ହସି ମାଡ଼ି ବସିଲି । ବି' ହାତିଆ କୁତୁକୁତୁ କଲି । ଚଶମା ଉତାରିବାକୁ ଦେଲି ନାହିଁ । ସେଇଠୁଁ ତାଙ୍କ ନାକ ସିଧା ଟିକିଏ ଗୁଡୁମ୍ ଗୁଡୁମ୍ କଲି । ଚନ୍ଦ୍ରଶେଖରବାବୁ ନିଜକୁ

କହିଲେ—ଦେଖେ କେମିତିକା ଫମ୍ପା ଆଓ୍ୱାଜ । ଏଥିରେ ହିଂସା କସି ନ କାଳେ ରହି ନ ପାରେ । ଲେଟ୍ ଦେମ୍ ଗୋ ଟୁ ହେଲ୍ !

ଯେଉଁମାନଙ୍କୁ ନର୍କ ମୁହଁରେ ଘୁଞ୍ଚାଇଦେଲେ ସେମାନଙ୍କ ନୂଆ ଖେଳ ପ୍ରତି ମଧ୍ୟ ସେ ଉଦାର ହେବାକୁ ଚେଷ୍ଟା କଲେ । ଇନ୍‌କିଲାବ୍ ଜିନ୍ଦାବାଦର ସ୍ଲୋଗାନ ଦେବା ଭଲ କଥା ନୁହେଁ । ପୁଣି ଖେଳର ନାଆଁ ପଞ୍ଜାବ-ପଞ୍ଜାବ, ନିହାତି ହାସ୍ୟାସ୍ପଦ, ଅଶୋଭନୀୟ । ଗୋଇନ୍ଦା ବିଭାଗର ଜଣେ ଅଧେ କମ୍‌ବୁଦ୍ଧି କର୍ମକର୍ତ୍ତା ଯଦି ଏ'ର ଖବର ପାଇଲେ ଆମକୁ ହଇରାଣ କରି-ପାରନ୍ତି । କହିବେ ଏଠି ଅମୁକ ଦଳ ପକ୍ଷରୁ ପିଲାମାନଙ୍କୁ ଟ୍ରେନିଂ ଦିଆ ହେଉଛି, ସଂତ୍ରାସବାଦର ପାଠ ପଢ଼ା ହେଉଛି । କିନ୍ତୁ ପ୍ରକୃତରେ ଅବସ୍ଥା ଏତେ ଖରାପ ନୁହେଁ । ଯେତେହେଲେ ଏମାନେ ଭଦ୍ରଘରର ପିଲା । ବିଶୁ ତ ଆମର ଆଡ଼ର ପିଲା, ଆମର ଜାତି । ବସ୍ତି ସେପାଖରେ ଘର, ସରକାରୀ କ୍ୱାଟରସ୍ । ବାପ ଆକାଉଣ୍ଟସ୍ ସର୍ଭିସ । ସାବନା ରଙ୍ଗ, ଚିକ୍‌କଣ ବଳଲା ପରି ଦେହ । ଆଉ କେତେ ବଡ ବଡ଼ ସଫା ଆଖି । କିନ୍ତୁ କାହାଣୀ ଗିଳିଗଲା ପରି ନୁହେଁ, ତମକୁ କ୍ଷମା ମାଗି ଗୋଟାଏ ସିରିୟସ୍ ପ୍ରଶ୍ନ ପଚାରିବ ବୋଲି ମନେ ହୁଏ । ଯେମିତିକି ଖାଲି ପାଠ ପଢ଼ାରେ ନୁହେଁ, ପ୍ରତି କାମରେ ସିରିୟସ୍ ହେବା କଥା । ଅଯଥାରେ କାହାକୁ ଅନେଇବା ଭୁଲ୍ । ସେ ମନ ଦେଇ ଖେଳୁଛି ନିଶ୍ଚୟ । କିନ୍ତୁ ଖେଳକୁ ଟପି ହିଂସା, ମାନେ ମିଛିମିଛିକା ଖେଳ, ସତସତିକା ହିଂସା ? ଅସମ୍ଭବ ! ଆମ ବିଶୁ ସେମିତିକା ପିଲା ନୁହେଁ । ହଁ ଆମ ବିଶୁ । ମୋର ଭାରି ଇଚ୍ଛା, ରାଜୁକୁ କହିଲାରୁ ସେ ହସି ଦେଇଛି ହେଲେ ଅମଙ୍ଗ ହୋଇ ନାହିଁ ଯେ ଅନୁ ପାଇଁ ବିଶୁଟି ମନ୍ଦ ହେବ ନାହିଁ । ଇଏ ପାଗଳୀ ଆକାରଣରେ ହସି ଉଠିଲା ବେଳେ ସେ ପ୍ରେମଭରା ସିରିୟସ କାହାଣୀରେ ଅନେଇ ଥିବ ତାକୁ, ତମ ହସର ମାନେ କଅଣ ପଚାରିଲା ପରି···ଆଉ ସେଇ ଲମ୍ବା କାଶ୍ମୀର ଟୋକା । କେଉଁଠି ଥିଲା ଏବେ ଆସି ମିଶିଛି ଏମାଙ୍କ ସାଙ୍ଗରେ, ସେଇ ଶିଖେଇଛି ଏଇ ଆଜବ୍ ଖେଳ । କିନ୍ତୁ ମନେ ହେଉଛି ସେ ଲିଡର ହୋଇ ରହିବାକୁ ଚାହେଁ । ଖାଲି ଅର୍ଡର ଦେଉଛି, ହାତ ହଲଉଛି, ହୁଇସିଲ ବଜଉଛି । ଗୁଳି କାହା ଦେହରେ ବାଜିଲା କି ନାହିଁ କିଏ ଜିତିଲା କିଏ ହାରିଲା ସେ ଆଡ଼କୁ ନଜର ନାହିଁ ।

ସେ କାହାଁକ ହଂସୀ ବାହାରେ ଯିବ ? ବାଙ୍ଗୀ ରହିଲି ନାକୁ, ପୁଲିସ ଅଫିସରର ପୁଅ । ଗେଡୁଟିଏ, ଗ୍ରେଟିଆ ଚଟକା ମୁହଁ, ରୁଗୁଡ଼ଆ । ଆଖି ନାକ ପାଟି ନେଂଚ ହୋଇ ଏକାଠି ଥିଲା ପରି ମନେ ହୁଏ । ଏକାଠି ହୋଇ ଗୋଟାଏ ଟାଣୁଆ ମୁଣ୍ଡ, ବାଟୁଳି, କୋଉ ଗାଲୁଆ ଜନ୍ତୁର ମୁଣ୍ଡ ପରି । ହୁଏତ ବୁଲେଟ୍ । ଧ୍ୟାତ୍, ବରଂ ତା'ର ଚେହେରା ସେମିତି ବୋଲି କହିବ ଯେ ଏଇ ବୁଲେଟ୍ ଖେଳ ତା'କୁ ସୁହେଇଛି ? କିନ୍ତୁ ଅନୁ କହୁଥିଲା ଥରେ ଡାଉଡ଼ୀ ମନ୍ତ୍ରୀ ଖେଳରେ ସେ ତା'ର ଗାଲକୁ ଧରି ଟାଣିଲା ଖୁବ୍ ଜୋରରେ । ବୋକା ସେହିଦିନ କାହିଁକି କହିଲା ନାହିଁ ମୋତେ ? ମୁଁ ଟୋକାର ମଜା ବାହାର କରି ଦେଇ ଥାଆନ୍ତି । ଅବଶ୍ୟ ପିଲା ପିଲାଙ୍କ ଭିତରେ ଅଳ୍ପବହୁତ ମାଡ଼ଗୋଳକୁ ମନା କରିଦେବ ନାହିଁ । ମୋ ନାତୁଣୀ ଦେହରେ ହାତ ଦିଅ ନାହିଁ, ଖବରଦାର, ବୋଲି ମୁଁ କହିପାରିବି ନାହିଁ । ଚନ୍ଦ୍ରଶେଖରବାବୁ ନିଜକୁ ଧୈର୍ଯ୍ୟ ଧରିବାକୁ ପରାମର୍ଶ ଦେଲେ । ସେଇଠଁ ସେ ଅନ୍ୟ ଦି' ଜଣ ପୁଅଙ୍କ କଥା ଭାବିବାକୁ ବସିଲେ ନାହିଁ । ଗୋଟିଏ ଗଞ୍ଜୁର ବୋକରୁବୁହା । ଆଉକ, ତା'ନା ଲାଲୁ କି କଅଣ, କୋଉ କଣ୍ଟ୍ରାକ୍ଟରର ପୁଅ, ସେ ତୁଚ୍ଛାଟାକୁ ଦୌଡୁଥାଏ । ସେଇଟା କଣ କରିବ ? ଝିଅମାନଙ୍କୁ ମଧ୍ୟ ହୁରୁଡ଼େଇ ଦେଲେ, ଯଦିଓ ସେ ଉଦ୍ଧଣ୍ଡୀ ମାନ୍ୟାଙ୍କୁ ଭଲଭାବରେ ଜାଣନ୍ତି । ଭାବିଲେ ଝିଅମାନେ କଳିହୁଡ଼ୀ, କାନ୍ଦୁରା ତଥା ହିଁସୁକୁଟିଆ ହୋଇପାରନ୍ତି, କିନ୍ତୁ ସଚ୍ଚା ନରେନ୍ଦ୍ରା ହଂସୀ, ଲଡ଼େଇର ରକ୍ତମୁଖା ହଂସୀ ତାଙ୍କ ଜାତକରେ ନାହିଁ । ସେଇଥିପାଇଁ ତ କବିଳୀ କାଳୀର କଳ୍ପନାକୁ ଏମିତି ଦୋରସ୍ତ କରାହୋଇଛି । ସ୍ୱଭାବକଅଁଳକୁ ବିକଟାଳରୂପେ ଦେଖେଇଲେ ସିନା ଅଦ୍ଭୁତର ଧାରଣା ଆସିବ !

ଏହିପରିଭାବରେ ଚନ୍ଦ୍ରଶେଖରବାବୁ ଖେଳଟାକୁ ନିହାତି ନାପସନ୍ଦ କଲେ ମଧ୍ୟ କୋମଳାଙ୍ଗୀ ନାତୁଣୀକୁ ପାଖରେ ବସେଇ ସେଇଟା ମିଛବାଦ ଛଡ଼ା ଆଉ କିଛି ହୋଇ ନ ପାରେ ବୋଲି କହିଦେଲେ । ଆପଣା ସନ୍ଧ୍ୟାବଲୋକନକୁ ବଜାୟ ରଖିଲେ ।

କିନ୍ତୁ ପାରିଲେ ନାହିଁ । ଯେଉଁଦିନ ଦେଖିଲେ ଯେ ପାଚିଲାକୁ ଲାଗି, ଗ୍ୟାରେଜ୍ ଓ ଇଟାଗଦା ମଝିରୁ ଗୋଟାଏ ମୁଣ୍ଡ ଅନେଇଛି ତାଙ୍କୁ ।

ନାକ ଅନେଇଛୁ, ପାଟି ଅନେଇଛୁ, ଆଖି ଅନେଇଛୁ ଏବଂ ସବୁଥିରୁ ଗରଳ ଝରୁଛି । ଘୃଣାର ହିଂସା, ମାରକ ହିଂସା, ଯାହାର ଉଦ୍ଦେଶ୍ୟ କେବଳ ମାରିବା ନୁହେଁ, ମାରକରି ଝୁଣିବା, ଶୋଷିବା, ଆଲୁଅ ଅନ୍ଧାର ହେବା-ଯାଏଁ, ଅନ୍ଧାର ପିଠା ହେବାଯାଏଁ ।

କରେ, ମୁଁ ତୋର କଣ କରିଛି ? ନା ମୋର ଝିଅଟା ତୋର କଣ ଅସୁବିଧା କରୁଛି ? ଚନ୍ଦ୍ରଶେଖରବାବୁ ଅନୁକୁ ଦୁଇ ହାତରେ ବେଢ଼େଇ ନେଲେ । ସତେକି ଗୁଳି ବାଜିଲେ ଅନୁର କିଛି ହେବ ନାହିଁ ।

ହେଲେ ହିଂସାର ଗୃହାଣୀରେ ପଲକ ପଡୁ ନ ଥିଲା । ନିଭୁ ଜେଜେ ନାତୁଣୀଙ୍କୁ ଏକାଠି କରି ଅନଉଥିଲା । ବୃହି ଥିଲା ଯେ ବୁଢ଼ାକୁ ଗୋଟାଏ ଭୂଷାରେ ଖତମ୍ କରି ଦିଅନ୍ତା ଓ ସାନକୁ ଓଟାରି ଆଣି ଚଣ୍ଡି ଚପି ଚପି ମାରି ଦିଅନ୍ତା, ଯେମିତିକି ସେ ଆଉ ମୋତେ ହସି ପାରନ୍ତା ନାହିଁ । ଏମାନେ ସମସ୍ତେ ସମାନ । ସଳା ହୋଇଛନ୍ତି, ମୋତେ ଏମିତି ଅବସ୍ଥା କରିବେ ବୋଲି···।

ଭାବିଥିଲି ଏଇ ନୂଆ ଖେଳରେ ସେମାନେ ଚିହ୍ନିବେ ମୋତେ । ଦେଖିବେ ମୁଁ କଅଣ କରିପାରେ । ବନ୍ଧୁକଟାକୁ ଥରେ ବୁଲେଇ ଦେଇ ଗୋଟି ଗୋଟି କରି ସମସ୍ତଙ୍କୁ ମାରି ଦେଇପାରେ । ଏଇ ଠିପି ଗୁଳି-ଗୁଡ଼ାକ ବେକାର, ସତସତିକା ଗୁଳି ହୋଇଥିଲେ—। ପ୍ରଥମ ଦିନରୁ ମୁଁ ମୋର କରାମତି ଦେଖେଇ ଦେଇଛି । ଗଞ୍ଜୁ ବି ଥରେ ଅଧେ ତାଳି ମାରିଥିଲା । କହିଲା ତୁ ସବୁଦିନେ ବଦ୍‌ମାସ୍ ହେବୁ ନ ହେଲେ ପୁଲିସ, ଲୋକ ଫୋକ ହୋଇ ରହିଲେ ଚଳିବ ନାହିଁ । ଭଲ କଥା । ମୁଁ ବଡେ-ଇଲି ମୁଁ ବଦ୍‌ମାସ ହେବି, ପ୍ରତିଦିନ ବଦ୍‌ମାସ ହେବି । ମୋତେ ମରିବି ନାହିଁ, ବଳକା ବଦମାସ ହୋଇ ଖସି ପଳେଇଯିବି, ଆଉ ତମ ଭିତରୁ ଜଣେ ଖୋଜିବ ମୋତେ । ଖୋଜି ପାଇଲାରୁ ସେ ମୋ ସାଙ୍ଗରେ ଯୁଦ୍ଧ କରିବ, ମୁଁ ତାକୁ ଦେବି ଥଣ୍ଡା କରି···।

କେଇଦିନ ବେଶ୍ ମଜା ହେଲା । ଥରେ ମାମୁ ଆସିଥିଲା । ମୁଁ ତା' ଚୁଟିକୁ ଧରି ଏମିତି ବୁଲେଇଲି ବୁଲେଇଲି ଯେ ସେ ଅମ୍ମୀ ଅମ୍ମୀ କହି ରଡ଼ି ଛାଡ଼ିଲା । ଇଡ଼ିଅଟ୍ ! ଅମ୍ମୀର ଝିଅ ହୋଇ ଘରେ ରହିଲୁ ନାହିଁ ?

ଯୁଦ୍ଧ ଖେଳବାକୁ କିଏ କହୁଥିଲା ? ମୋର ବି ଗୋଟାଏ ମାଆ ଥିଲା, ତାର ଫଟୋ ଅଛି ଆମ ଘରେ ···। ଆଉ ଥରେ ଏଇ ଅନୁ ଚୋଖା ଆସିଥିଲା, ସାହସ କମ୍ ନୁହେଁ । ଦାନ୍ତ ଦେଖଉଥିଲା । ମୁଁ ଠିକ୍ କରି-ଥିଲି ତା'ର କଅଁଳିଆ ଦେହକୁ ଦଳି ମକଚି ପେଣ୍ଡୁ ବନେଇ ଛାଡ଼ିଦେବି । କିନ୍ତୁ ମୁଁ ତା ଦେହରେ ହାତ ପକେଇଛି କି ନାହିଁ, ବିଶୁ କୋଉ ବୁଦା ଭିତରୁ ବାହାରିଲା । ମୁଁ କହିଲି ଗେଟ୍ ଆଉଟ୍, ତୋର ଏଠି ରହିବା କଥା ନୁହେଁ । ସେ ନ ଶୁଣିଲରୁ ମୁଁ ଗୋଟାଏ ବୋଲୁଅ ଫିଙ୍ଗିଲି ତା ଉପରକୁ । ଆସୁ, ମୁଁ ତାକୁ ଦେଇଥାନ୍ତି ସାବାଡ଼୍ କରି । ହେଲେ ଗଞ୍ଜୁ ପହୁଞ୍ଚିଗଲା, ହୁଇସିଲ ବଜେଇଲା । ସେଇ ଦିନଠୁ ଗଞ୍ଜୁ କି ବିଶୁ କେହି ଆସି ନାହାନ୍ତି ମୋ ପାଖକୁ । ଛେଳୁଆ କୋଉଠିକାର, ସାନମାନେ ଥରେ ଅଧେ ଦୂରରୁ ଉଙ୍କି ମାରି ପଳେଇଛନ୍ତି । ସତେକି ମୁଁ ଗୋଟାଏ··· ମୁଁ ଗୋଟାଏ ବଣଭାଲୁ, ରାକ୍ଷସ···।

ଆଜି ତିନଦିନ ହେଲାଣି କେହି ଆସୁ ନାହାନ୍ତି ମୋ ପାଖକୁ । ସାନ କି ବଡ଼ । ମୁଁ ବଳକା ବଦମାସ ହୋଇ ଲୁଚିଛି, ଛୁଡ଼ା ହୋଇଛି, ବସିଛି, ଏକଡ଼ ସେକଡ଼ ହେଇ ଅନେଇଛି, କାଳେ କିଏ ଚୁପକରି ଆସି ହାବୁଡ଼ିଯିବ । ହେଲେ କାହାରି ଦେଖାଦର୍ଶନ ନାହିଁ । ଖାଲି ସୂର୍ଯ୍ୟଟା ଥାଳି ମୁହଁ କରି ରହିଛି ମୋ ଆଡ଼କୁ, ଖସି ଖସି ଉବୁଯାଉଛି । ଛୁଗୁଲେଉଛି । ଯା'ବାପ ଘରକୁ ଯାଆ ଏଥର ।

ମୋତେ କେହି ମାରିବାକୁ ଆସୁ ନାହାନ୍ତି କାହିଁକି ?

ଶାଲା, ସ୍ୱେର୍, ବ୍ଲଡ଼ ବ୍ଲାଷ୍ଟାର୍ଡ··· ଜନ୍ମରୁ ଘରୁ ବାହାରୁ ଯେତେକ ଗାଳି ଶିଖିଥିଲି ସ୍ୱେବେଇଗଲି । ସଜୋରରେ । ଆଶା କଲି ଯେ ଦୂରରେ ଥିଲେ ମଧ୍ୟ ସେଇ ବୁଢ଼ା ଆଉ ତା ଗେହ୍ଲା ନାତୁଣୀ ଶୁଣିବେ । ଶୁଣିବେ, ଆସିବେ ମୋ ପାଖକୁ, ସେଇଠୁଁ···।

ମୁଁ ଏମିତି କିଛି ଗହନ ଜାଗାରେ ଲୁଚି ନାହିଁ । ଲୁଚିବାର ଜଣାଶୁଣା ଥାନ । ଏଠି, ନ ହେଲେ ବାଉଁଆଡ଼ କୁକୁଡ଼ା ଘର ପଛକୁ । ସେଠି ବି ଲୁଚିଥିଲି କାଲି, କିନ୍ତୁ କେହି ଆସିଲେ ନାହିଁ । ଖାଲି ସର୍ଭାଣ୍ଟ କ୍ୱାର୍ଟର୍ସ୍ର କଲ୍ଲୁକ ଅନେଇ ରହିବାକୁ ପଡ଼ିଲା । ଅପରିଚ୍ଛନିଆ କଲ୍ଲୁ,

ଯାହାକୁ ଆମ ଖେଳରେ ମିଶିବା ପାଇଁ ମନା କରା ହୋଇଛି । ସେ ମୋଟେ ଆଖି ଫେରାଇ ନେଉ ନ ଥାଏ, ସତେ କି ମୋର ଶୁଦ୍ଧତା ଦେଖିବାକୁ ମଜା ଲାଗୁଛି ତା'କୁ । ଏକା ଦଶା ଆମ ଦୁ'ଜଣଙ୍କର ।

ତା'କୁ ଅନେଇବ, ନ ହେଲେ ଏଇମାନଙ୍କୁ । ମଝିରେ ସୂର୍ଯ୍ୟ ଘଣ୍ଟା ଦେଖୁଥିବ । ଚିଡ଼ଉଥିବ ।

ଡ୍ୟାମ୍ ! ମାରିବ । ତାଙ୍କୁ ମାରିବ । ପ୍ରଥମେ ଯିଏ ଆସିବ ଛୋଟ ହେଉ ବଡ଼ ହେଉ, ତା'ର ଦଫା ନିକାଲି ଦେବ । ମୋତେ କଣ ବୋଲି ଭାବିଛ କି ? କ୍ରୋଧ ଓ ଅପମାନରେ ଜର୍ଜରିତ ହୋଇ ନିତ୍ରୁ ଭଙ୍ଗା ଇଟା ଖଣ୍ଡେ ଧରି ଘାସରେ ଛେଚିବାକୁ ଲାଗିଲା ଏବଂ ମଝିରେ ମଝିରେ ଦୁରବସ୍ଥିତ ଶତ୍ରୁମାନଙ୍କୁ ହିଂସ୍ର ଦୃଷ୍ଟିରେ ଚାହିଁଲା, ହିଂସାକୁ ଘୃଣାରେ ମାଳିସ କଲା, ଓଠ କୁଞ୍ଚେଇଲା ।

ଚନ୍ଦ୍ରଶେଖରବାବୁ ତା'ର ଭାବଭଙ୍ଗୀକୁ ଲକ୍ଷ୍ୟ କରୁଥିଲେ । ଦେଖୁ ଦେଖୁ ତାଙ୍କ ହାତ ଅଳ୍ପ ଦେହରୁ ଖସି ଆସିଲା । ରକ୍ତ ଚଞ୍ଚଳ ହୋଇ ଉଠିଲା । ପ୍ରାଣରକ୍ଷା କରିବାକୁ ପଡ଼ିବ । ଶତ୍ରୁ ମାଡ଼ି ଆସିବା ପୂର୍ବରୁ ତା' ଉପରକୁ ଝାଂପ ଦେବାକୁ ହେବ । ଯେମିତି ପାରେ ସେମିତି । ତା' ପରେ ଦେଖାଯିବ । ଅତୀତରେ ଯେମିତି ହେଉଥିଲା କେବେ, ପିଲାବେଳେ, ଟୋକାବେଳେ, ଜୀବନରକ୍ଷା ମରଣର କେତେ ଭଳି ଲୁଇକୁ ଯୁଝିବା ପାଇଁ ଲାଲ୍ ହୋଇ ଉଠୁଥିଲା । ବାପାଙ୍କ ଗୁହାଣୀ ! ଯେତେବେଳେ ଗେଲରେ ଦାଦାଙ୍କର ଫାଉଣ୍ଟେନ ପେନ୍ ଚୋରି କରି ନେଇଥିଲି, ମୋ ବ୍ୟାଗ୍‌ରେ ଅଛି ବୋଲି ଜଣା ପଡ଼ିଲା, ଆଉ ବାପା ମୋ ଆଡ଼କୁ କଟମଟ କରି ଚାହିଁଲେ । ସ୍କୁଲରେ ସାଙ୍ଗ ଟୋକା ମିଛଟାରେ ଧରା ପକେଇ ଦେଲା ଯେ ମୁଁ ପ୍ରଶ୍ନର ଉତ୍ତର ନିଜ ବୁଦ୍ଧିରୁ ଲେଖି ନାହିଁ, କପି କରିଛି, ଆଉ ମୋର ସବୁଠାରୁ ପ୍ରିୟ ଟିଚର ମୋତେ ହୀନ ଦୃଷ୍ଟିରେ ଚାହିଁଲେ । ଖେଳରେ ଖେଳରେ ନିଷିଦ୍ଧ ରମଣୀକୁ ଦେଇଥିବା ରୁମାଲ ଖଣ୍ଡିକ ମୋର ପ୍ରିୟତମା ରମା—ମାନେ ମୋ ସ୍ତ୍ରୀ ଆଖିରେ ପଡ଼ିଲା, ଆଉ ସେ ମୋତେ ଘୃଣା କଲା ପରି ଚାହିଁଲା, ସତେକି ମୁଁ ତା' ପ୍ରତି କି କାହା ପ୍ରତି ଅନ୍ୟାୟ କରିଛି ବୋଲି କହିଲେ ଯାଇଁ ସେ ଭଲ ହୋଇ ଉଠିବ । ପୁଣି ଯେତେ-

ବେଳେ ମାଆ ଆଖି ବୁଜିବା ଆଗରୁ ମୋତେ ଅପଥାରେ ଅନେଇ ରହିଲା । ଅନେକ ସମସ୍ତ । ସ୍ମରଣରେ ସେଇସବୁ ଘଟଣା ପରିବାରଭିତରେ ଆଜି ନ ହେଲେ ମଧ୍ୟ ଉକ୍ତ ଅସହମୀୟ କାହାଣୀ ନିଚ୍ଛୁର କାହାଣୀରେ ମିଶିଗଲା ପରି ମନେ ହେଲା । ଯାହାର ସାରାଂଶ ହେଉଛି ଯେ ମୁଁ ଚୋର ଅସଲ ରୂପ ଦେଖି ନେଇଛି । ଚୋର ମରିବା ଉଚିତ । ସେଇଠୁଁ ଜୀବଜ୍ୟୋତି ଉପରେ ଲିଭି ନ ଯାଇ ତେଜି ଉଠୁଛି, ଧୂମ ଫୁଲି ଉଠୁଛି, ଓଠ ଓଲଟି ଯାଉଛି, ନିଃଶ୍ୱାସରୁ ଲଗା ବାହାରୁଛି । କହୁଛି—ମିଛ, ମିଛ, ଇଏସବୁ ମିଛ ! ମୋର ଭୁଲ ନୁହେଁ, ମୋର ଦୋଷ ନାହିଁ । ଦରକାର ହେଲେ ମୁଁ ମିଛ କହିବ, କାନ୍ଦିବ, କି ଚୋଟେ ମାରିଦେବ ଏକାଥରକେ, କିନ୍ତୁ ନିଜକୁ ନିଜର ମାନମହତ ଇମେଜ୍‌କୁ ବଞ୍ଚେଇ ରଖିବ···।

ନିମେଷକ ପାଇଁ ଚନ୍ଦ୍ରଶେଖର ବାବୁଙ୍କର ମନେ ହେଲା ଯେ ଏଭଳି ଉଦ୍ଦୀପନାର ଉପଭୋଗ ତାଙ୍କୁ ମିଳି ନ ଥିଲା ଅନେକ ଦିନ ଯାଏଁ । ଯେମିତିକି ଇଏ ହିଂସା ନୁହେଁ, ଫଂଗୁ ଶାନ୍ତିର ଅପର ପାଖ । କହିବାକୁ ଗଲେ ଉଲ୍ଲାସ ।

ନିମେଷକ ପାଇଁ ଚନ୍ଦ୍ରଶେଖର ବାବୁ ବୁଢ଼ାପଣ ଭୁଲିଯାଇ ଥିଲେ । ପାଖରେ ଥିବା ଚେହ୍ଲା ନାତୁଣୀର ଅସ୍ତିତ୍ୱକୁ ମଧ୍ୟ ଖିଆଲ କରି ପାରି ନ ଥିଲେ । ଖାଲି ସେଇ ଚ୍ଛେଟିଆ ମୁଣ୍ଡର କାହାଣୀର ମୁକାବିଲା କରୁଥିଲେ, ରାଗୁଥିଲେ ଓ ଉପଭୋଗ କରୁଥିଲେ । ଆଡଡାପ୍ସୀ ହାକିମ, ଜଜ୍, ଦିଅଁଙ୍କ ଉପରେ ଚଢ଼ାଉ ।

ନିମେଷକ ପରେ ବେଲୁନ୍ ସିକୁଡ଼ି ହୋଇଗଲା । ଚନ୍ଦ୍ରଶେଖର ବାବୁ ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଲେ । କିନ୍ତୁ ସ୍ୱାଭାବିକତା ଆସିବା ପୂର୍ବରୁ ତାଙ୍କ ଦେହରୁ ଝାଳ ବୋହିଗଲା, ସତେକି ସେ ପ୍ରକୃତ ଲଢ଼େଇରେ ଭିଡ଼ି ଯାଇଥିଲେ, ହାରିଗଲେ । ପୁରାପୁରି ହାରିଗଲେ । ସେ ଅନୁର ଦେହକୁ ପୁଣି ଅଣ୍ଡାଳି ହୋଇ ଗୁଣ୍ଡରେ ଚୁପି ଧରିଲେ ଓ ପଚାରିଲେ ତାକୁ— ସେ ପିଲାଟା ଆମକୁ କାହିଁକି ଅନେଇଛି ସେମିତି ?

ଫାଜିଲ୍ ଅନୁ ଫେଁ କିନ୍ ହସି ଉଠିଲା—“ଜେଜେ, ତମେ ତାକୁ ଚିହ୍ନୁଛନା କଣ ? ସେ ପରା ଆମ ନାତୁ !”

ଦୁଃଖର ବିଷୟ ଚନ୍ଦ୍ରଶେଖର ବାବୁ ଅନୁ କଥାରେ ପଡ଼ି ତାଙ୍କୁ ନିଜର ବୋଲି ଭାବି ପାରିଲେ ନାହିଁ। ଯେପରି କି ସେ ଆମର ହେଲେ ମଧ୍ୟ ସହଜାତ ଶତ୍ରୁ। ତାଙ୍କ ପ୍ରବୀଣତା ଓ ଅଭିଜ୍ଞତା ଦୃଷ୍ଟିରୁ ଏହା ମଧ୍ୟ ଆଶା କରି ଯାଉଥିଲି ଯେ ସେ ନିତ୍ତୁର ହିଂସ୍ର ଓ ବିଷମ ପ୍ରକୃତିର ସମୀକ୍ଷା କରି ଥାଆନ୍ତେ। ଅନୁଠାରୁ ଅଧିକ ତଥ୍ୟ ସଂଗ୍ରହ କରି ଥାଆନ୍ତେ। ଏବଂ ଅଳ୍ପବହୁତ ତା'ର ପୁଲିସ ବାପ, ମାତୃହୀନତା ଅଥବା ଜନ୍ମଗତ ଜନ୍ତୁମୂଣ୍ଡିକୁ ଦାୟୀ କରି ଥାଆନ୍ତେ। କିନ୍ତୁ ତା' ହେଲି ନାହିଁ। ଅନୁକୁ "ଚୁପକର୍" କହିବା ଛଡ଼ା ସେ ଅସ୍ୱାଭାବିକ ତତ୍ପରତା ଦେଖେଇ ଉଠି ପଡ଼ି ଘର ଭିତରକୁ ମୁହେଁଇଲେ ଓ ପୁଅ ରାଜୁକୁ ଖୋଜିଲେ। ପୁଅ ବାହାରକୁ ଯାଇଛି। ବୋହୂ ଅଛି, କିନ୍ତୁ ତାକୁ କହିଲେ କିଛି ଲାଭ ନାହିଁ। ଏକେତ ସ୍ତ୍ରୀଲୋକ, ତା'ଛଡ଼ା ଅନୁର ମାଆ। କୋମଳ ଭାବରେ ଜୁଡ଼ୁବୁଡ଼ୁ। ନା, ଏଇ କଦର୍ଯ୍ୟ ହିଂସାର ଖେଳକୁ ଯେମିତି ହେଲେ ବନ୍ଦ କରିବାକୁ ହେବ। ଏବଂ ସେ ବଦମାସ୍ ପିଲାକୁ ନିକାଳିବାକୁ ହେବ। ସେ ଗୋଟାଏ ପଶୁ, ମଣିଷ ନୁହେଁ।

ସେଦିନ ରାଜଶେଖରବାବୁ କେଉଁ ପାର୍ଟିକୁ ଯାଇଥିଲେ, ଫେରୁ ଫେରୁ ଡେରି ହେଲା। ତେଣୁ ଯଥାସମୟରେ ଶୋଇ ପଡ଼ିଥିବା ବାପାଙ୍କ ଠାରୁ କୌଣସି ନିର୍ଦ୍ଦେଶ ପାଇବାର ଅବକାଶ ନ ଥିଲା। କିନ୍ତୁ ତା' ପରଦିନ ଅଫିସରୁ ଫେରିଲା ପରେ ସେ ବାପାଙ୍କ ପାଖରୁ କଦାପି ରକ୍ଷା ପାଇ ପାରି ନ ଥାଆନ୍ତେ, ଏବଂ ଏଥର ସେ କେବଳ ଟିକିଏ ହସିଦେଇ ଖସି ଯାଇ ପାରି ନ ଥାଆନ୍ତେ। ପିଲାଙ୍କ ଖେଳ ପିଲାଖେଳ ନୁହେଁ, ନିତ୍ତୁ ମଣିଷ ପିଲା ନୁହେଁ, ଏହି ମର୍ମରେ କିଛି ଗୋଟାଏ ପ୍ରତ୍ୟକ୍ଷ ପଦକ୍ଷେପ ବୋଧହୁଏ ନେବାକୁ ପଡ଼ିଥାଆନ୍ତା। କିନ୍ତୁ ବାପ ପୁଅଙ୍କର ଭେଟା ଭେଟି ହେବା ପୂର୍ବରୁ ଅନୁ କେଉଁଠି ଥିଲି ଧାଇଁସାଇଁ ହୋଇ ଜେଜେଙ୍କ ପାଖରେ ପହଞ୍ଚିଲା। ପରମ ଉତ୍ତେଜନା ସହ ଖଣ୍ଡି ଖଣ୍ଡି ଶବ୍ଦରେ କହିଲା,

"ଜେଜେ—ଜେଜେ—ଜାଣିଛ କଣ ହେଲା ? ନିତ୍ତୁ ବାରିଆଡ଼େ ଲୁଚିଥିଲା ଆଜି। ନିତ୍ତୁ ସେଇ ବାଟେ ଯାଉଥିଲା, ମନ୍ଦାର ଗଛ ଆଡ଼କୁ। ସେ ତ ଲୋକ ହୋଇ ମରି ଯାଉଛି କେବେଠୁଁ। କିନ୍ତୁ ନିତ୍ତୁ କଣ କଲା

ଜାଣ ? ତା'କୁ ଦୌଡ଼ି ଯାଇ ଧରି ପକେଇଲା । ଆଉ ତା'କୁ ଏମିତି ପିଟିଲା ପିଟିଲା ଯେ—। ନତୁ ନନକୁ ପୁଲିସ ବୋଲି ଭାବିଲା । କିନ୍ତୁ ବଦ୍‌ମାସ କଅଣ ଦୌଡ଼ିଯାଇ ପୁଲିସକୁ ଧରେ ? ଗଞ୍ଜୁ କହିଲା ଫାଉଲ୍, ଏକ୍‌ଦମ ଫାଉଲ ।

ଚନ୍ଦ୍ରଶେଖର ବାବୁ ଉଦ୍‌ଗ୍ରୀବ ହୋଇ ଶୁଣୁଥିଲେ । ଅନୁକୁ ଥମିଯିବାର ଦେଖି ପଚାରିଲେ, 'ସେଇଠୁଁ ? ସେଇଠୁଁ କଣ ହେଲା ?

'ହବ ଆଉ କଅଣ ? ଗଂଜୁ କହିଲା ଖେଳ ବନ୍ଦ। ନନ କାନ୍ଦି କାନ୍ଦି ପଳେଇଲା ତା' ଘରକୁ । ବିଶୁ ତା ସାଙ୍ଗରେ ଗଲା ତା' ବାପା-ମାଆଙ୍କୁ ବୁଝେଇବ ବୋଲି । ଆଉ ଗଂଜୁ ନତୁକୁ ମସ୍ତ ବିଧାଏ ମାରିଲା, ଟାଣି ଟାଣି ତା' ଘରକୁ ନେଇଗଲା । ବିଚରା ଆହୁରି ମାଡ଼ ଖାଇବ, ଅଙ୍କଲ୍ ତା'ପିଠିରୁ ଚୋପା ଛଡ଼େଇ ଦେବେ ।

ତଥାପି ଚନ୍ଦ୍ରଶେଖର ବାବୁଙ୍କ ମନରେ ତିଳେମାତ୍ର ଦୟାର ଉଦ୍ରେକ ହେଲା ନାହିଁ । ବରଂ ସେ ସ୍ୱସ୍ତି, ସ୍ୱସ୍ତି ଠାରୁ ବଳି ତୃପ୍ତିର ନିଃଶ୍ୱାସ ମାରିଲେ । କ୍ଷଣକ ପାଇଁ ହେଉ ପଛେ ନତୁ ଯୋଗୁଁ ଗତକାଲି ଯେଉଁ ବହୁସଦୁର୍ଲଭ ନିଆଁ, ମରଣୋନ୍ମୁଖ ଉଲ୍ଲାସର ଧାପେ ତାଙ୍କୁ ଚଢ଼େଇ କରି ପୋଡ଼ିଥିଲା, ତାର ସୁଖକୁ ମଧ୍ୟ ମନେ ପକେଇ ପାରିଲେ ନାହିଁ । ନତୁ ପ୍ରତି କୃତଜ୍ଞ ହେବା ଦୂରର କଥା ।

ଏହିପରି ଭାବରେ ପଞ୍ଜାବ୍-ପଞ୍ଜାବ ଖେଳର ଅବସାନ ହେଲା । ଅଠର ନମ୍ବର ଶାନ୍ତନୁ ବାଗର ଲନ୍‌ରେ ସ୍ୱଳ୍ପ କେତେଜଣଙ୍କୁ ନେଇ ଡାଉ୍‌ଜୀ-ମମ୍ମୀ ଆବିଷ୍କାର ଘରେଇ ଖେଳର ପୁନରୁଦ୍ଧାର କରାଗଲା । ନନ ତ ସହଜେ ସେଇଦିନଠାରୁ ଫେରିଲା ନାହିଁ । ନତୁ କଥା ଛାଡ଼ । ଗଞ୍ଜୁ ଓ ତାର ବୋଲକରା ହରିଶ ମଧ୍ୟ ଏଭଳି ଅସଭ୍ୟ ଅନାର୍ଯ୍ୟ ଦଳରେ ମିଶିବେ ନାହିଁ କହି ଭଲ ପଢ଼ିଆକୁ ଗଲେ । ଦୁଃଖର ବିଷୟ ଯେ ଅନୁର ସମବୟସୀ ସାତଆଠ ବର୍ଷିଆ ଅନ୍ୟ କେତେଜଣ ମଧ୍ୟ ଗୋଟି ଗୋଟି ହୋଇ ଖସିଲେ । ରହିଲେ କେବଳ ବିଶୁ, ମାୟା ଓ ଅନୁ ଯାହା କିଛି ଖେଳ ସମ୍ଭବ ତାଙ୍କର ଭିତରେ ହେଲା । ଚନ୍ଦ୍ରଶେଖର ବାବୁ ନିର୍ବିଘ୍ନରେ ସନ୍ଧ୍ୟା-ଶାନ୍ତିରେ ଶୀତଳେଇ ହେଲେ ।

କିନ୍ତୁ ତାଙ୍କ ସୁସୁପ୍ତିର ସ୍ୱର୍ଗରେ ପୁଣି ଚହଲ ପଡ଼ିବାକୁ ଥିଲା । ଅନଭିଜ୍ଞ ଅନୁ ଗୋଟାଏ ସୁଖବର ଦେବାର ଭଙ୍ଗୀରେ ତାଙ୍କୁ ଠେଲାଟାଏ ମାରି କହିଲା,

'ଜେଜେ ଶୁଣ, ଆଜି ଆମେ ଆଉ ଗୋଟାଏ ନୂଆଖେଳ ଖେଳିବୁ ବୋଲି ଠିକ୍‌କଲୁ । ଇଣ୍ଡିଆ—ପାକିସ୍ତାନ ।'

'ଏ ? !'

ଉରକୁଳା ଜେଜେଙ୍କୁ ବୋଧ ଦେଲା ପରି ଅନୁ ହସି ହସି କହିଲା ।

'ଆରେ, ଆମେ ଯୁଦ୍ଧ କରିବୁ ନାହିଁ ମ ! ଡାଡ୍‌ଡୀ-ମମ୍ମୀଙ୍କ ଭିତରୁ ଜଣେ ହେବ ଇଣ୍ଡିଆ, ଆଉ ଜଣେ ପାକିସ୍ତାନ, ଟିକିଏ, ଟିକିଏ ଲଢ଼େଇ ହେବ, ମିଚ୍ଛିମିଚ୍ଛିକା ।

'ନନ୍‌ସେନ୍‌ସ !!' ଚନ୍ଦ୍ରଶେଖର ବାବୁ ଏଇ ପଦଟିକୁ ବେଶ୍ ଜୋରରେ କହିଲେ କିନ୍ତୁ ତା'ର ବ୍ୟାଖ୍ୟା କରିପାରିଲେ ନାହିଁ । ବୁଝି ହେଲା ନାହିଁ ସେ ଏଭଳି ଯୁଦ୍ଧକୁ ଅଥବା ଖେଳକୁ ନନସେନ୍‌ସ ବୋଲି କହିଲେ । ଅବା ତାଙ୍କ ଅନୁ ଇଣ୍ଡିଆ-ପାକିସ୍ଥାନ ବନାମ ବାପୁ-ମାମ୍ମାଙ୍କ ଭିତରେ ଚପି ହୋଇ ଯାଇପାରେ ଏଇ ସମ୍ଭାବନାକୁ ବରଦାସ୍ତ କରି ପାରିଲେ ନାହିଁ । ସେ ଖାଲି ମନକୁ ମନ କହିଲେ ଯେ ଯୁଗ ଚୂଲିକୁ ଗଲାଣି ।



# ବନ୍ୟା ଓ ଝରଣା

ସବୁଜର ଗହଳ ଭିତରୁ ମନ୍ଦିରଟିଏ ମୁଣ୍ଡ ଟେକିଛି । ମନ୍ଦିର ଦେହରେ ଥିବା କୋରଡ଼ମାନଙ୍କରୁ ଅନାବନା ଗଛ ମାଡ଼ି ଯାଇଛି । ଚୂଡ଼ାରୁ ମଇଳା ପତାକାଟିଏ ଉହାଳି ଆସିଛି । ହେଲେ ବଳିଷ୍ଠ ନଡ଼ିଆ ଗଛର ପ୍ରଶସ୍ତ ସିଣସିଣ ପତ୍ରମାନ ଚୂଡ଼ାମଣିକୁ ପହରା ଦେଉଛନ୍ତି । ମନ୍ଦିରର ପଛକୁ ଏବଂ ଦୁଇ କଡ଼ରେ ବିଭକ୍ତ ସାହିର ଗାଆଁ । ନାଆଁ ଲକ୍ଷ୍ମୀପୁର । ନମୁନା ହିସାବରେ ସ୍କୁଲଘର କେଉଁଠାଟି ଦିଶି ଯାଉଛି, ବାକି ସବୁ ଗହନରେ ଅଛି । ନମୁନା ହିସାବରେ ଗୋଟାଏ ଅଢ଼େଇ ମହଲ୍ କୋଠା ଘର ମଧ୍ୟ ସୁଦୃଶ୍ୟ ହେଉଛି । ଯେପରିକି ଏହାଛଡ଼ା ଅନ୍ୟ କୋଠାଘର ଅଛି କି ନାହିଁ ଜାଣିବା ଅନାବଶ୍ୟକ । ହିଡ଼ରେ ହିଡ଼ରେ ଚଷାଭାଇ ସୂର୍ଯ୍ୟାସ୍ତ ଆଡ଼କୁ ମୁହଁ କରି ଚାଲିଛି । ମୁଣ୍ଡରେ ଟୋକେଇ, ପଛରେ ସାନ ଝିଅଟିଏ । ଦୃଶ୍ୟକୁ ପୂର୍ଣ୍ଣାଙ୍ଗ କରିବା ପାଇଁକି କଅଣ, ଗୋଟାଏ ମଡ଼ଆ ଗାଈ ଏତେବେଳ ଯାଏଁ ଗୁହାଳକୁ ଫେରିବାକୁ ନାହିଁ, ମାଠେଇ ମାଠେଇ ଘାସ ଚରୁଛି । ଆମେ ପୋଷା ପକ୍ଷୀମାନେ ମଧ୍ୟ ମହଜୁଦ୍ ଅଛୁ, ଏହି ଭାବରେ ଦ'ଟିକନଠା କୁକୁଡ଼ା ବାଉଁଶ ବଣରୁ ଫଡ଼ ଫଡ଼ ହୋଇ ଉଡ଼ି ଆସିଲେ । ସଂଜ ଧୂପର ଧୂଆଁ ଉଠୁଛି ଆକାଶକୁ । କ୍ୟାଲେଣ୍ଡରର ଛବି ପାଇଁ ଆଉ କ'ଣ ଦରକାର ? ଖାଲି ଛବି କାହିଁକି, ଚଳଚିତ୍ର ପାଇଁ ଗ୍ରାମୀଣ ନାୟକ-ନାୟିକାଙ୍କ ରଙ୍ଗଭୂମି ଦର୍ଶାଇବାକୁ ହେଲେ ଆଉ ଅଧିକା କଅଣ ଯୋଡ଼ିବାକୁ ହୁଅନ୍ତା ? ହୁଏତ ଗୋଟାଏ ଚଳନ୍ତା ରେଳ ଗାଡ଼ି । କିଂବା କୁଳୁକୁଳୁ ହୋଇ ବହି ଯାଉଥିବା ନଈ ଝରଣା, କିଂବା ସେଇ ଧରଣର କିଛି ।

ସେଇଠୁଁ ମହି ଭାଇନାକୁ ପୁଣି ମନେ ପକେଇଲି । ଯାହାର ନୂତନତମ କାର୍ଯ୍ୟକଳାପଟିକୁ ଟିକିଏ ପାଖରୁ ଜାଣିବା ଶୁଣିବା ପାଇଁ ମୁଁ ଏଠିକି ଆସିଛି ବୋଲି ବୋଧ ହେଲା । ତା'ର ସବ୍‌ଜାନ୍‌ତା ସାମାନ୍ୟ କଥନ-ମାନଙ୍କ ମଧ୍ୟରୁ ଏକତମ ରତ୍ନ ହେଉଛି—ଜାଣିଛୁ ନା ବନ୍ଧୁ ? ପୃଥିବୀର

ସତ୍ୱନାଶମାନେ ଦୁଇ ଶ୍ରେଣୀରେ ବିଭକ୍ତ, ବନ୍ୟା ଓ ଝରଣା। କିଏ ଜନମନକୁ ଭସେଇ ବୁଡ଼େଇ ଦିଏ, ଏବଂ କିଏ ତାକୁ ଶୀତଳେଇ ଶାନ୍ତ କରି ଦିଏ। ସେତେବେଳକୁ ତା'ର ସ୍ତ୍ରୀ ବଞ୍ଚିଥିଲା। ତା'କୁ ସେ କେଉଁ ଦୃଷ୍ଟିରେ ଦେଖୁଥିଲା? ଆଦର୍ଶବାଦୀ ମାଷ୍ଟରିଆ ଲୋକମାନେ ନିଜ ସ୍ତ୍ରୀ ପିଲାଙ୍କୁ ମଧ୍ୟ ନିର୍ଦ୍ଦିଷ୍ଟ ଠଣାରେ ଥିବା ଖଟୁଲିରେ ରଖନ୍ତି? ରଖି ପାରନ୍ତି?

ଯାହାହେଉ ତା' ସ୍ତ୍ରୀ ମଲାଣି। ଆଉ ଗୋଟାକୁ ବାହା ହୋଇ ନାହିଁ। ବାହା ହୋଇ ଥିଲାବେଳେ ଅଳ୍ପ ବହୁତ ରାଜନୀତି କରୁଥିଲା। ଏଇକ୍ଷଣି ସେଥିରେ ମଜ୍ଜି ଯାଇଛି। ତା'ର ଅନ୍ୟତମ ସାମାନ୍ୟ କଥନ ହେଉଛି—ପଲିଟିକ୍ସକୁ ରାଜନୀତି କହିବା ଭୁଲ୍। କହ ଲୋକନୀତି। ଲୋକମାନଙ୍କ ନୀତିରୀତି ମତିଗତିକୁ ବୁଝି ତାକୁ ସୁଧାରିବା ହେଉଛି ପଲିଟିକ୍ସର ମୂଳକଥା। ସମାଜ-ମଣିଷର ସ୍ୱଧର୍ମ। ମୁଁ ତା' ସାଙ୍ଗରେ ଯୁକ୍ତି କରିବାକୁ ପ୍ରସ୍ତୁତ ନ ଥିଲି। କାହିଁକନା ସେ ମହା ଯୁକ୍ତିଖୋର! ଦମ୍ଭରେ କୁହେ, କହୁ କହୁ ମୁହଁ ଲାଲ୍ ପଡ଼ିଯାଏ, ଆଉ ତୁମ ମୁଣ୍ଡ ଖରାପ କରିଦିଏ। ଏବଂ ତା' ଡିମା ଆଖିରୁ ବାହାରୁଥିବା ନିଆଁ ମୋଟେ ସୁବିଧାର ନୁହେଁ। ନ ହେଲେ ତା'କୁ ଚେତେଇ ଦେଇ ଥାଆନ୍ତି,— ଲୋକମାନଙ୍କ ପ୍ରତି ଏତେ ଦରଦ ଯଦି, ନିଘୋଡ଼ା ଲୋକସେବା କଲୁନାହିଁ? ରାମକୃଷ୍ଣ ମିଶନ୍ କି ଭୂଦାନରେ ମିଶିଲୁ ନାହିଁ? ଏଇ ସକ୍ରିୟ ରାଜନୀତି ଅଥବା ଲୋକନୀତି କାହିଁକି? କହିବାକୁ ଗଲେ ଆଜ ଏଇ ପ୍ରଶ୍ନ ଆହୁରି ଜରୁରୀ ହୋଇ ଉଠିଛି। କାରଣ ଆଗେ ସେ କୌଣସି ପାର୍ଟିରେ ମିଶି ନ ଥିଲା। ଏବେ ଗୋଟାଏ ଟାଣୁଆ ପାର୍ଟିରେ ଯୋଗ ଦେଇଛି। ପୁଣି ଯେଉଁଥିରେ ଯେତେକ ପେଟୁଆ, କଳାବଜାରି ମୁନାଫାଖୋର। ବୁଝି-ପାରୁଥିବେ ମୁଁ କାହା କଥା କହୁଛି। ଖାଲି ସେତିକି ନୁହେଁ। ମୁଁ ଶୁଣିବାକୁ ପାଇଲି ଯେ ସେ ଯେଉଁ ରେଟ୍‌ରେ ଭାଷଣ ଦେଉଛି, ଘର ଘର ବୁଲି ଭଲେଇ ହେଉଛି, ମନେ ହେବ ଯେ ନିର୍ବାଚନ ହାତ ପାହାନ୍ତାରେ, ଏବଂ ସେ ଯେତେ ଶୀଘ୍ର ପାରେ ଗୋଟାଏ ନେତା ହେବାକୁ ବସିଛି। ଏଇ ଅଞ୍ଚଳରେ—ଅନୁନ୍ନତ ବୋଲି କି କଅଣ-ମାସେ ହେଲା କାମ କରୁଛି। ମୁଁ ମୋ ସରକାରୀ ଧଂଦାରେ ଆସିଥିଲି ଇଆଡ଼େ; ବି.ଡ଼ି.ଓଙ୍କ ଠାରୁ

ଶୁଣିଲି ଯେ ଜଣେକ ମହେନ୍ଦ୍ର ବେହେରା ପାଖ ଗାଆଁ ଲକ୍ଷ୍ମୀପୁରରେ ଡେରା ପକେଇଛନ୍ତି କେତେଦିନ ହେଲା, ଓ ତାଙ୍କୁ ନାକେଦମ୍ କରି ସାରଲେଣି । ମହାଭାଇନା ଏଇଠି ଅଛୁ ! ଦେଖିବି ତା'କୁ ! କିନ୍ତୁ···ଦେଖିଲେ କ'ଣ କହିବି ? ମନେ ମନେ ଆହୁରି ସନ୍ତୁଳ ହେବି ନା ମାନ ନେବି ? ମୁଁ ମୋର ଭଲରେ ଅଛୁ ତୁ ତୋର ପଲିଟିକ୍ସ କରି ଭଲରେ ଥାଆ, ଏହି ପ୍ରକାର ନିର୍ବୋଧ ସ୍ୱୀକୃତିକୁ ବରି ନେବି ? ନା ଆହୁରି ଅଶାନ୍ତ ହୋଇ ଉଠିବି ? ଲାଭ କଅଣ ? ଏହି ଭାବରେ ଲାଭ କ୍ଷତି କିଛି ଠିକ୍ କରି ନ ପାରି ମୁଁ ଗୋଟିଏ ଶରତ ସଂଧ୍ୟାରେ ଇଂଦୁନଗର ଡାକବଙ୍ଗଳାରେ ଆସି ବସିଥିଲି, ଏବଂ ଲକ୍ଷ୍ମୀପୁର ଆଡ଼କୁ ଅନେଇ ରହିଥିଲି । ଭାବୁଥିଲି ଯେ ମହାଭାଇନା ଏଇ ମନୋରମ ଦୃଶ୍ୟରେ ଲାଗି ଯାଇଥିବ କେଉଁଠି···ସୁଖ କରୁଛୁ, କରୁଥାଉ, ମୋର ମୋଟେ ହିଂସା ହେଉ ନାହିଁ···

କିନ୍ତୁ ତୁ କୋଉ ହିସାବରେ ମୋଠୁଁ ବଡ଼ିଆ କାମ କରୁଛୁ ? କହୁନୁ କାହିଁକି ଯେ ତୁ ତୋର ଆଦର୍ଶ, ଯାହାବା କିଛି ଥିଲା, ତାର ମୁଣ୍ଡ ମୋଡ଼ି ସାରିଲୁଣି ? ନାଃ, ମୁଁ ଯିବି ତୋ ପାଖକୁ, ଦିଧାସଳଖ ପଚାରିବି ।

ଅନ୍ତତଃ ତୋର ସେଇ ବନ୍ୟା ଯନ୍ତ୍ରଣା ଉକ୍ତି ମନେ ପକେଇ ଦେବି । ପଚାରିବି ଯେ ଯେଉଁଠି ଖୁଲିଗଲା, ସେ କେଉଁ ଶ୍ରେଣୀର ଜୀବ ? ପୁଣି କାହାକୁ ଖୋଜୁଛୁ ଏଇକ୍ଷଣି ? ଏଇ ପଲିଟିକ୍ସ ବାଟେ ? ଆରେ ମୂର୍ଖ କାମିନୀ କାଂଚନରେ ସତ୍ୟ ଅସତ୍ୟ ବୋଲି କିଛି ନାହିଁ, ସବୁ ସମାନ । ଭାବିଲି ତା'କୁ ଯାଇ ମନେଇବି, ଯେ ମୁଁ ତୋ ପାଇଁ ଗୋଟିଏ କନିଆଁ ଠିକ୍ କରି ଦେବି । ସେଇଠୁଁ ଏମିତି ଗୋଟିଏ ଠିକ୍ କରି ଦେବି ଯେ···

ଧୀରେ ଧୀରେ ଅଂଧାର ହୋଇଗଲା । ଲକ୍ଷ୍ମୀପୁର ଉପକଣ୍ଠର ଆଖି ଦୁରୁଟିଆ ଛବିରେ କଳା ଲେପି ହୋଇଗଲା । ମୁଁ ଡାକବଙ୍ଗଳା ଭିତରକୁ ଫେରିଗଲି । କାଲିଜଣେ ଦେଖିବାକୁ ହେବ, ଲୋକବାକ ଆସିବେ, ସରକାରୀ କାମର ଦାୟିତ୍ୱ ( ବ୍ୟାଖ୍ୟା କରି ଲାଭ ନାହିଁ ଯେ ମୋର କାମ ଗୁରୁତ୍ୱପୂର୍ଣ୍ଣ, ତାର ଉପରେ ଦେଶର "ପଲିସି" ଗଢ଼ା ହୁଏ )

ତେବେ ଲଜ୍ଜାର ସହିତ ମାନିବାକୁ ପଡ଼ୁଛି ଯେ ହୁଏତ ସେଇ ଦିନ ରାତିରେ ମୁଁ ଡାକବଙ୍ଗଳାରୁ ଖସି ପଳେଇ ଥାଆନ୍ତି, ରାସ୍ତା କାଦୁଅ, ଦୁର୍ଗନ୍ଧ ପୋଖରୀବନ୍ଧ ଇତ୍ୟାଦିକୁ ଠପି ହିଡ଼ରେ ଚାଲି ଚାଲି ଯାଇ··· ଯେହେତୁ ମୋର ଆବେଗ ଓ କ୍ରୋଧ ବାରମ୍ବାର ପ୍ରବଳ ହୋଇ ଉଠିଥିଲା । ମୁଁ ଗଲିନାହିଁ, ତାର କାରଣ ମୋତେ ଭୟ ଲାଗିଲା ।

ଏକୁଟିଆ ଅନ୍ଧାରରେ ଗଲେ କେତେବେଳେ କୋଉ କଥା, ପୋଖରୀ ଦାଡରୁ ଖସିଯିବି, ଖସିଗଲେ ଘୁଅ ଗୋବରରେ ନାଥୁକନା ପଡ଼ିବି, ଉଈ ହୁଂକା ଭିତରୁ ସାପ ବାହାରିବ, ଇତ୍ୟାଦି ଜାନ୍ତବ ଭୟ ନ ଥିଲା ନୁହେଁ । ତଥାପି ଯାଇ ପାରି ଥାଆନ୍ତି । ଗମନକୁ ଆଡ଼ଭେଞ୍ଚର ବୋଲି ମଣି ଥାଆନ୍ତି । ଗଲି ନାହିଁ ତାର କାରଣ ହେଉଛି ଯେ ମୋର ଗୋଟାଏ ଅଦ୍ଭୁତ ଖିଆଲ ହେଲା । ସତେକି ଅଂଧାର ହେଲାରୁ ଛବିରେ ସତସତିକା କଳା ଲେପି ହୋଇ ଯାଇଛି, ଆଉ ତାର ଉହାଡ଼ରେ ଅପର ପ୍ରାଣୀମାନେ ଜାଗି ଉଠିଛନ୍ତି । ଯେମିତିକି ଇଂଦ୍ରନଗର ହେଉଛି ମୋ ଦିନର ସହର, ଏବଂ ଲକ୍ଷ୍ମୀପୁର ହେଉଛି ମୋ ରାତିର ଗାଆଁ । ବୁଝିଲେ ନା ମୁଁ କଅଣ କହୁଛି ?

ନା, ଆପଣ ବୁଝିବେ ନାହିଁ । ଆପଣ ହୁଏତ ଗାଆଁ ଗହଳରେ ବଢ଼ିଛନ୍ତି, ଲଢ଼ିଛନ୍ତି, ସେଠିକା ପାଣି ପବନକୁ ସାଥୀ କରି ନିର୍ଭୟ ହୋଇ ପାରିଛନ୍ତି । ମୋ ପରି ଗାଆଁଛଡ଼ା, କହି ପାରନ୍ତି ଲକ୍ଷ୍ମୀଛଡ଼ା, ହୋଇ ନାହାନ୍ତି । ମୋ ରିପୋର୍ଟରେ ତଥା ସରକାରଙ୍କ ଇସ୍ତାହାରରେ ଆମ ପଲ୍ଲୀ ଅଞ୍ଚଳର ପ୍ରଭୁତ ଉନ୍ନତି ହୋଇଛି, ରାତି କଟି ଯାଇଛି ବୋଲି ଜଣା ପଡେ, କିନ୍ତୁ ମୋର ଅବଚେତନକୁ କେଉଁ ବିଗତ ସ୍ମୃତି, ଅଧା ସ୍ମୃତି ଅଧା କଳ୍ପନା, ତଥାପି ମାଡ଼ି ବସିଛି । ସନ୍ତସନ୍ତିଆ ମାଟି ପିଣ୍ଡାରେ ବଳିଆ ମାଆ ପିସୀ ବସି ରହିଛନ୍ତି, ହାଁ କରି ଅନେଇଛନ୍ତି ଉପରକୁ, ଆଉ ବଡ଼ ବଡ଼ ହେଉଛନ୍ତି, କାହିଁକିନା ଗଳ୍ପସନ ହଇଜାରେ ସେ ନଅଁଶି ହୋଇ ଯାଇଛନ୍ତି (ତା' ପାଖକୁ ଯିବୁ ନାହିଁଟି !)···ଠାକୁର ଘରେ ଘନ ଜେଜେ ଖୁଁ ଖୁଁ ହୋଇ କାଶି ଚାଲିଛନ୍ତି, ଆଳତି ଘଣ୍ଟି ସାଙ୍ଗକୁ ତାଙ୍କ ଖୁଁ ଖୁଁରେ ମୁଣ୍ଡ କଣ ହୋଇ ଯାଉଛି (ବୁଢ଼ା ମୋତେ ପାଖକୁ ଡାକୁଛନ୍ତି )···ନରବୋଉ

ଖୁଡ଼ୀଙ୍କର ଅଭିଆଡ଼ ଝିଅ ଗଳାରେ ଦଉଡ଼ି ଦେଇ ମରିଗଲା ( ସେମାନେ ଫୁସ୍‌ଫୁସ୍ ହେଉଛନ୍ତି । ମୁଁ ଗଲାରୁ ମୋତେ ଚଡ଼ ଦେଉଛନ୍ତି)···ଗୋଟାଏ କୋଉ ମୂଲିଆ ନିର୍ଘାତିଆ ମାଡ଼ ଖାଉଛି, କଳା ଭୂଷୁଣ୍ଡା ମୁହଁରେ ଲୁହ ଆଉ ଲାଳ ( ମୋ ଆଡକୁ ଅନେଇଛି କାହିଁକି ସେମିତି ? )···ଦୁ'ଟା ମାଇକିନିଆ ଅସଭ୍ୟ ଭାଷାରେ ଗାଳି ଦିଆ ଦେଇ ହେଉଛନ୍ତି ( ମୁଁ ହସି ପକେଇଲାରୁ ବାପା ମୋ କାନ ଧରି ଚୁପୁଡ଼ାଏ ମାରିଲେ )···ଆଉ ସେଇ ସର୍ବବ୍ୟାପୀ ମାଟିମଟାଳିର ଗନ୍ଧ । ଧାନ ଉଷୁଆଁ ବାଂଫ, ପଚୁପଚିର, ଲିପା ଗୋବର, ଆଇଁଷିଣିଆ କାଦୁଅ, ଓଦା ଗାମୁଛା, ତେଲଚିକିଟା ମୁଚୁଳା, ସବୁଠି ଯେମିତି ସେଇ ଉତ୍କଟ ଅଶ୍ଳୀଳ ଅନ୍ତରଙ୍ଗତା । ମୁଁ ଭୁଲି ଯାଇଛି, ଭୁଲିଯିବାକୁ ଚାହେଁ, କାହିଁକନା ହେବୁ ପାଇଲି ଦିନୁ ମୁଁ ସହରରେ ଅଛି । ହେଲେ ଭୂତଗୁଡ଼ାକ ଛପି କରି ଅଛନ୍ତି, ଅକାଳେ ସକାଳେ ମୋ ରକ୍ତରେ ଜରି ଯାଆନ୍ତି । ସେଇ ଭୟ ମୋର ବାଟ ଓଗାଳିଲା । ମୋର ମନେ ହେଲା ଯେ ମୋ ଡାକ ବଂଗଳାରୁ ମହାଭାଇନାର କୋଉ ଗଳିଆକୁ ଯିବା, ମୋର ସତ୍‌କର୍ତ୍ତବ୍ୟରୁ ତା'ର ମିଛ ଆଦର୍ଶକୁ ଦେଖିବାକୁ ଯିବା, ମୋ ସହରରୁ ତା'ର ମଫସଲକୁ ଯିବାର ଅର୍ଥ ଆଲୁଅରୁ ଅଂଧାରକୁ ସେଜୁ ଡାଙ୍କିବା । ନାଃ, ମୋର ଯିବା ଦରକାର ନାହିଁ ।

କିନ୍ତୁ ଏକା ମାଘରେ ଶୀତ ଯାଏ ନାହିଁ । ଶୁଣି ଖୁସି ହେବେ ଯେ ବର୍ଷେ ନ ଯାଉଣୁ ମୁଁ ମୋର ଭୟ ଓ ଶ୍ରଥ ଦୂର କରି ତା' ସାଙ୍ଗରେ ମୁହାଁମୁହିଁ ହୋଇ ପାରିଲି । ଋନବେଳ ହେଉ ପଛେ, ସେଇ ଲକ୍ଷ୍ମୀପୁର ଗାଆଁରେ । ଏଇଆକୁ ସୁଯୋଗ କହନ୍ତି ।

ମୋର ନିର୍ଭୟ ହୋଇ ଉଠିବାର ଦୁଇଟି ପ୍ରଧାନ କାରଣ ଥିଲା । ପ୍ରଥମ କଥା ସେ ଏବକୁ କେବଳ ପାର୍ଟିର ଜଣେ କର୍ମୀ ହୋଇ ନାହିଁ । ନିର୍ବାଚନ ଋତୁ ଆସି ଗଲାଣି । ତେଣୁ ସେ ସ୍ୱତନ୍ତ୍ରମତ ଭୋଟ ମାଗୁଛି । ସ୍ୱାଭାବିକତଃ ତା' ସାଙ୍ଗକୁ ପାଣ୍ଠି ଯୋଗାଡ଼ କରୁଛି । ନିର୍ବାଚନ ପାଇଁ ପାଣ୍ଠି ଯୋଗାଡ଼ କରିବାର ଅର୍ଥ ବୁଝି ପାରୁଥିବେ । ପୁଣି ସେ ଯେଉଁ ପାର୍ଟିରେ ଅଛି ନା···ଛୁଉନ୍ତୁ ! ଅତଏବ ତା'ର ଅଣଆଦର୍ଶପଣ ଏମିତି ପଦାରେ ପଡି ଯାଇଛି, ଜଳଜଳ ହୋଇ ଦିଶୁଛି ଯେ ତା'ର ଚିମା ଆଖିର

ତେଜ କି ନାଲି ମୁହଁର ତାଣ ମୋର କିଛି କରି ପାରିବ ନାହିଁ । ଦୁଃଖସ୍ତ କଥା ହେଲା ମୋତେ ଖବର ହୋଇଛି ତା'କୁ ଗୋଟିଏ ସଂଗିନୀ ଜୁଟି ଯାଇଛି । ସହକର୍ମିଣୀ । ଏ ମୃତଦାରକୁ ସେ ବିଧବା । ଖାସା ଯୋଡ଼ି । ଦୁହେଁ ଗାଆଁକୁ ଗାଆଁ ବୁଲି ଏକାଠି ବସିଉଠି ଶୋଇ ଭୋଟ ମାଗୁଛନ୍ତି ଓ ଅର୍ଥ ସଂଗ୍ରହ କରୁଛନ୍ତି । ହେଲେ ଏବେ ତାଙ୍କୁ ଏକାଠି ଶୋଇବାର କେହି ଦେଖି ନାହିଁ । କିନ୍ତୁ ସେତିକି ଅନୁମାନ କରିନେବା ଭୁଲ୍ ବୋଲି ଆପଣ କଦାପି କହି ପାରିବେ ନାହିଁ । ଲୋକମାନେ ହେଉ ବା ଯେଉଁ ମାନେ ହେଉ, ତଦ୍ଦ୍ୱାରା ତା'ର ସେକ୍ସ କଣ ମରି ଯାଇଛି ? ନା ଆଉକି ଏମିତି କେଉଁ ଦେଖା ଯେ ତା' ସାମନାରେ ସେକ୍ସ ଶୁଖି ଯାଉଛି ? ତେଣୁ···ମୁଁ ଥରେ ବିଜନରେ ତା'ର ଶିବିରରେ ଯାଇ ପହଞ୍ଚିବି ଓ ତା'କୁ ପଦେ ଅଧେ ଶୁଣେଇବି ବୋଲି ଠିକ୍ କଲି । ସଙ୍ଗିନୀ ଜଣକ ତା ପାଖରେ ଥିଲେ ଆହୁରି ଉତ୍ତମ ।

ମୋର ଅନେକ ଦିନର ଅରମାନ ମେଣ୍ଟେଇ ନେବି । ଦେଖେଇ ଦେବି । ଦୁନିଆକୁ, ଅନ୍ତତଃ ନିଜକୁ । ଯେ ମୋର ରାଜସେବା ତା'ର ତଥାକଥିତ ଲୋକମାନ ଠାରୁ ଯଥେଷ୍ଟ ଊର୍ଦ୍ଧ୍ୱରେ । ତା' ଛଡ଼ା ଆପଣ ଜାଣିଥିବେ ବୋଲି ଆଶା କରୁଛି ଯେ ମୁଁ ଅଳ୍ପ ବହୁତ ଲେଖାଲେଖି କରେ । ମୂଲ୍ୟାୟନରେ ତା'ର ଭାଉ ଯୋଡ଼ିବାକୁ ପଡ଼ିବ—ନୁହେଁ କି ?

ନିର୍ବାଚନ ପାଖେଇ ଆସିଲା ବେଳକୁ ମୋର ଗସ୍ତକ୍ରମ ମଧ୍ୟ ବଢ଼ି ଯାଇଥାଏ । ତେଣୁ ମୋତେ ସୁବିଧା ମିଳିଗଲା । ଏବଂ ଭଗବାନଙ୍କ କୃପାରୁ ସେଇ ଲକ୍ଷ୍ମୀପୁର ଗାଆଁରେ ଭେଟା ଭେଟି ହେବାର ଥିଲା ।

ସେ ଗାଆଁ ମଝିରେ ଗୋଟିଏ ସ୍କୁଲଆ ଘରେ ଅଛି ବୋଲି ଶୁଣିଲି । ଭଲ । ସିଏ ବି' ଗୋଟାଏ ଭେକ, ନ ହେଲେ ଇମେଜରେ ଆଂଚ ଲାଗିବ । କିନ୍ତୁ ସେଠି ଆଉକି ଅଛି ନା ? ଅଛି ? ସାବାସ ! ବଖୁରି-କରେ ଇଏ ଅଛି, ବଖୁରିକରେ ସିଏ ଅଛି, ଅନ୍ୟ ବଖୁରିରେ ଆଉ କିଏ ଅଛି ବୋଲି ବଖାଣିବା ଅନାବଶ୍ୟକ । ସେଠି ପହଞ୍ଚିଲା ବେଳକୁ ମୋର ମୁଖମଣ୍ଡଳ ବେଶ୍ ଉଦ୍‌ଭାସିତ ହୋଇ ଉଠିଥିଲା ବୋଲି ମୋର ଧାରଣା ।

ମୋତେ ଦେଖି ତାର ମୁହଁ ଝାଉଁଳ ଗଲା ବୋଲି କହୁ ନାହିଁ । କିନ୍ତୁ ତା' ପାଖରେ ଯେଉଁ ନାରୀମୂର୍ତ୍ତି ଜଣକ ବସିଥିଲେ, ତାଙ୍କ ମୁହଁର ଉଜ୍ଜ୍ୱଳତା ଏଭଳି ଉଦ୍ଧତ ଦିଶୁଥିଲା, ମୋ ସାଙ୍ଗରେ ମୁକାବିଲା କଲାପରି, ଯେ ମହା ଭାଇନାର ଚେହେରା ସତରେ ନିରକ୍ତିଆ ମନେ ହେଲା । ମୋତେ ଦେଖିଲାକ୍ଷଣି ନାରୀଜଣକ ବେଶ୍ ଉଚ୍ଚ ସ୍ୱରରେ ଆସନ୍ତୁ ଆସନ୍ତୁ ବୋଲି ଡାକ ଛାଡ଼ିଲେ । ସତେକି ସେ ମୋ ପିଲାଦିନର ସାଙ୍ଗ । ଅଗତ୍ୟା ମୋତେ ଏତେଦିନ ପରେ ଦେଖିବାକୁ ପାଇବା ସତ୍ତ୍ୱେ ମହାଭାଇନା ଦୁର୍ବଳ ହସଟିଏ ଛଡ଼ା କଂଚନ୍ଦ୍ରାଏ, ଉଚ୍ଛ୍ୱାସ ଦେଖାଇ ପାରିଲା ନାହିଁ ।

ତାଙ୍କର ନାଆଁ ନମ୍ରା ଦେଈ । ଶ୍ୟାମଳ ବର୍ଣ୍ଣ, ମଧ୍ୟମ ଗଠନ, ବଡ଼ ମୁହଁ । ସଜା ହେଲାପରି ଦି' ଧାଡ଼ି ଦାନ୍ତକୁ ନେଇ ବାହାରିତ ପାଟି, ସତେକି ଜନ୍ମଗତ ଓଠ ଉଚ୍ଛୁଳା ହସରସର ଠେଲା ସମ୍ଭାଳି ନ ପାରି ଚିରି ହୋଇଯାଇଛି । ଚଉଡ଼ା ଆଖିର ଚାହାଣୀ ମୋଟେ ଶାନ୍ତ ନୁହେଁ, କିନ୍ତୁ ଚଙ୍ଗଚଙ୍ଗ ବୋଲି କହି ହେବ ନାହିଁ । ଯେଉଁ ଚାହାଣୀ ସମକ୍ଷଣରେ ସମସ୍ତଙ୍କୁ ଦେଖି ଖୁସି ହେଲା ପରି ମନେ ହୁଏ, ତାର ଚଞ୍ଚଳତାକୁ ଠଉରେଇବ କିଏ ? ତରଳ ବୋଲି କହି ପାରନ୍ତି । କିନ୍ତୁ ଢଳଢଳ ବୋଲି କହିଲେ ବିପଦ । କାହିଁକିନା ସେଥିରେ ଖାରୁନ୍ତାର ଲକ୍ଷଣ ନାହିଁ । ହୁଏତ ପ୍ରବାହର ଧମକ···ବୃଷ୍ଟି ପାରୁଛନ୍ତି ? ମୋଟ ଉପରେ ତାଙ୍କ ବ୍ୟକ୍ତିତ୍ୱ ମୋ ଉପରେ ଅଜାଡ଼ି ହୋଇଗଲା ପରି ମନେ ହେଲା । ଆତ୍ମ-ରକ୍ଷାର ପ୍ରବୃତ୍ତିରେ ମୁଁ ନିଜକୁ ଆଣ୍ଡି ଧରିବାକୁ ଚେଷ୍ଟା କଲି । ଏବଂ ମନେ ମନେ ତାଙ୍କୁ ଛୁଗୁଲେଇଲି । ଏଇ ଚେହେରା ଆଉ ରଙ୍ଗଢଙ୍ଗ ଦେଖାଇ ଆପଣ ନେତ୍ରୀ ହେବାକୁ ଚାହାନ୍ତି ? ପାରିବେ ନାହିଁ । ମୁଁ ଲେଖି ଦେଉଛି ।

ଏହାପରେ ମୁଁ ଯେତେ ସମୟ ସେଠି ରହିଲି, ଦହିଁଙ୍କ ସାଙ୍ଗରେ କଥାବାର୍ତ୍ତା କଲି, ଏବଂ ଭିଡ଼ ଜମେଇ ଆସୁଥିବା—ଯାଉଥିବା ହରେକ କିସମର ଟାଉଟରିଆ, ଖୋସାମଦିଆ, ବାହାପିଆ ଗରାଖ ଅର୍ଥାତ ଆଗାମୀ ଭୋଟରମାନଙ୍କ ସାଙ୍ଗରେ ତାଙ୍କର କାରବାର ଲକ୍ଷ୍ୟ କଲି, ସେଥିରୁ ମୋର ଧାରଣା ସୁଦୃଢ଼ ହେଲା ଯେ ସେ ବର୍ତ୍ତମାନର କର୍ମୀ ହୋଇ ପାରନ୍ତି

କିନ୍ତୁ ଭବିଷ୍ୟତରେ ମନ୍ତ୍ରୀ ହୋଇ ପାରିବେ ନାହିଁ । ଧରନ୍ତୁ ଏମିତିକା କଥା, ତା' ସାଙ୍ଗକୁ ହସର ହାବୁକା :

—ଆଜ୍ଞା, ଆପଣଙ୍କ ଦୁର୍ଦ୍ଦଶା କଥା କାହିଁକି କହୁଛନ୍ତି, ମୁଁ ପରା ନିଜେ ଆପଣଙ୍କ ଘରେ ଯାଇଁ ଆପଣଙ୍କ ଗାଈବାଛୁରୀଙ୍କୁ ଦେଖି ଆସିଛି ?

—ଆଃ, ଏଇ ସାମାନ୍ୟ ଅନୁରୋଧକୁ ନେଇ ଝାଳନାଳ ହେଉଛନ୍ତି କାହିଁକି ? ମୁଁ କମ-ସେ-କମ୍ ଛଅଥର କମିସନର୍ ସାହେବଙ୍କ ବେଡ୍‌ରୁମ୍‌ରେ ବସି ଲୁଡ଼ୋ ଖେଳିଛି ତାଙ୍କ ସାଙ୍ଗରେ । ସେ ଶୁଣିବେ ନାହିଁ ମୋ କଥା ?

—ସାର୍, ଆପଣଙ୍କ ପ୍ରଭାବ କିଏ ନ ଜାଣେ ? ଏଇ ଭଦ୍ରଲୋକ (ମୋ ଆଡ଼କୁ ହାତ ଦେଖେଇ) କେଉଁଥିପାଇଁ ଏଠିକି ଟାଣି ହୋଇ ଆସିଛନ୍ତି ବୁଝିପାରୁ ନାହାନ୍ତି ?

ଇତ୍ୟାଦି । ସତ କହିଲେ କି ମିଛ କହିଲେ, ମଧୁରିଆ ଭୋଟେ ଦେଲେ କି ସଖୀ ଭାବରେ ରସିକତା କଲେ ଠକିରେଇବା ଆଗରୁ ଅପର ବ୍ୟକ୍ତି କ'ଣ ପଛକୁ ଖଣ୍ଡେ ବାଟ ଛୁଆଡ଼ ହୋଇ ପଡ଼ୁ ନ ଥିବ ? ଏବଂ ଭାବୁ ନ ଥିବ ଯେ ଇଏ ସହଜ ଜନ୍ତୁ ନୁହନ୍ତି ? ଯୁଆଙ୍କୁ ଭୋଟ୍ ଦେଇ ଦେଲେ ଯାଏ, କିନ୍ତୁ ଘରେ ପୂରେଇବା ନୁହେଁ, ଯାଆନ୍ତୁ ପଛେ ସେ କମିସନର୍ ସାହେବଙ୍କ ବେଡ୍‌ରୁମ୍‌କୁ ?

ଏଭଳି ଜଣେ ଭଦ୍ର ମହିଳା, ଯାହାଙ୍କ ଠାରେ ଦେଖା ପଣର ସ୍ଥୈର୍ଯ୍ୟ ଗାମ୍ଭୀର୍ଯ୍ୟ ଇତ୍ୟାଦି ନାହିଁ, ସୌଷ୍ଠବ ମଧ୍ୟ ନାହିଁ (ଚେହେରା ତ ଯାହା, ସେଥିରେ ପୁଣି ଖୋଲା ବାହୁରେ ଥିବା ଗାଡ଼ୁଆ ବସନ୍ତଟୀକାର ଦାଗକୁ ଆଉଁସିବା ଦରକାର ?), ଖାଲି ଗୋଟାଏ ଅହେତୁକ ଆନନ୍ଦର ଚପଳତା, ଯେମିତିକି ରାଜନୀତି ଅଥବା ନିର୍ବାଚନ ବିଶିଷ୍ଟ ମଜାଖେଳ ଛଡ଼ା ଆଉ କିଛି ହୋଇ ନ ପାରେ, ତାଙ୍କୁ ନେତ୍ରୀର ସମ୍ମାନ ଦେବ କିଏ ?

କିନ୍ତୁ ଆମ ମହା ଭାଇନା ଯୁଆଙ୍କ ସାଙ୍ଗରେ ଯୋଡ଼ ହୋଇ ରହିଛି କାହିଁକି ? ଆଦର୍ଶ ଫାଦର୍ଶ କଥା ଛାଡ଼, ପ୍ରଶ୍ନ ହେଉଛି କେଉଁ ପ୍ରକାର ଫାଇଦା ଉଠେଇବ ବୋଲି ଭାବୁଛି ? ରାଜନୈତିକ ଲାଭ ନା ବେଡ୍‌ରୁମ୍‌ର

ବୋନସ୍ ? ହେଲେ ମହା ଗଇନା ସଙ୍ଗରେ ନମା ଦେଈଙ୍କ ଯୁଗଳ ଦୃଶ୍ୟ କଳ୍ପନା କରି ହେଲା ନାହିଁ, ନିତାନ୍ତ ହାସ୍ୟାସ୍ପଦ ମନେ ହେଲା ।

ନିଜକୁ କହିଲି—ବୋକା ! ଏ କ୍ଷେତ୍ରରେ ବୈଷମ୍ୟ ହେଉଛି ଆକର୍ଷଣର ମୂଳମନ୍ତ୍ର । ଏମାନେ ତୁମ ଆମ ପରି ସାଧାରଣ ମଣିଷ ନୁହନ୍ତି, ଯେଉଁମାନେ ଖାଲି ସଂସାର କରି 'ସୁଖରେ' ଥାଆନ୍ତି । ଏମାନେ କର୍ମୀ, ସୃଜନଶୀଳ, ମାନେ କବି-ଚିତ୍ରକର ଗୋଷ୍ଠୀର ଲୋକ, ଯେଉଁମାନଙ୍କ ଚେତନା ସଦାବେଳେ ପଞ୍ଚମରେ ଥାଏ, ଚିହ୍ନିଚ ରଙ୍ଗରେ ଶୋଭୁଥାଏ । ତେଣୁ ଗାଢ଼ ଲୋହିତ ଗାଢ଼ ପୀତ ପାଖକୁ ଟାଣି ହୋଇ ଯାଏ, ସେଇଠୁଁ ଏକ ଅପୂର୍ବ ମିଳନ, ଅପରୂପ ରଙ୍ଗ, ଉଲ୍ଲାସ । ତୁ ସେଥିରୁ କଣ ବୁଝିବୁ ? ତୁ ହେଉଛୁ ସାଧାରଣ ସ୍ୱାମୀ, ମାମୁଲି ବ୍ୟୁରୋକ୍ରାଟ, ତୁଚ୍ଛ ଗଦ୍ୟ ଲେଖକ··· କହିବା ବାହୁଲ୍ୟ ମୁଁ କୁହୁଳିବାକୁ ଲାଗିଲି ।

ଅପେକ୍ଷା କଲି । ଏଇକ୍ଷଣି ନୁହେଁ, କିନ୍ତୁ ଫେରିବା ପୂର୍ବରୁ ନିଶ୍ଚୟ ପଦେ ହାଣି ଦେଇ ଯିବି, ଛାଡ଼ିବି ନାହିଁ ।

ଲକ୍ଷ୍ୟ କଲି । ଉଭୟଙ୍କ କାରବାର । ମହା ଗଇନା ଅଧିକାଂଶ ସମୟ କାଗଜରେ କଣ ସବୁ ଟାଂପି ବସିଥାଏ । ଯେମିତିକି ସେ ପ୍ରତ୍ୟେକ ମଣିଷ, ଘଟଣା ଓ ସମ୍ବାଦକୁ ଟିପି ରଖୁଛି, ଭବିଷ୍ୟତକୁ କାମରେ ଲାଗିବ । "ଟେଲ୍ ଅଫ୍ ଦି' ଟ୍ରପିକିକ୍ସ୍"ର ନାୟିକା ପରି, ଯେ ତା'ର ଉଲ୍‌ବୁଣା ସ୍କିର୍ ମାନଙ୍କରେ ଟିପୁଥାଏ, ମନେ ରଖୁଥାଏ, ବିପ୍ଳବ ଆସିଲା ପରେ କାହା ପ୍ରତି କିଭଳି ବ୍ୟବସ୍ଥା କରିବାକୁ ପଡ଼ିବ । ନମା ଦେଈ ହୋ' ହୋ' ହୋଇ ହସିଲାବେଳେ ସେ କଦବା କ୍ୱଚିତ୍ ମୁରୁକି ହସା ଦେଉଥାଏ, କଲମ ବନ୍ଦ କରି ଜନତାକୁ ଟିକିଏ ଅନାଇ ଦେଇ ପୁଣି ଲେଖି ବସୁଥାଏ ।

ଯଥାସମୟରେ ପାଣି ସଂଗ୍ରହ ବିଷୟରେ ଆଲୋଚନା ହେଲା । ଗ୍ରାମବାସୀମାନେ ବାରମ୍ବାର ଆଶ୍ୱାସନା ଦେଲେ ଯେ ସେଥିପାଇଁ ଚିନ୍ତାର କାରଣ ନାହିଁ । କିନ୍ତୁ ମହାଗଇନା ଟିପାଖାତାର ପୃଷ୍ଠା ଓଲଟାଇ କହିଲା, —ନା, ଏତିକିରେ ଚଳିବ ନାହିଁ । ଦେଶର ବିବିଧ ବହୁଳ ସମସ୍ୟା ଦୂର କରିବାକୁ ହେଲେ, ଅର୍ଥାତ ଆମ ଦଳର ଯୋଗ୍ୟ ଲୋକମାନଙ୍କୁ ଭୋଟରେ ଜିତେଇବାକୁ ହେଲେ ଆହୁରି ଦରକାର । ବର୍ତ୍ତମାନ ନଗଦ

ଟଙ୍କା ସମର୍ଥନ ତାଙ୍କ ହସିଲା ଚିପା ଓଠ ଓ ନାକଫୁଲା ସାଙ୍ଗରେ ଖାପ୍ ଖାଇଲା ନାହିଁ । ସତେକ ପାର୍ଶ୍ୱ ସଂଗ୍ରହର ସକଳ ଭେଦ ତାଙ୍କୁ ଜଣା ଅଛି, କିନ୍ତୁ ସଭା ମଝିରେ ପ୍ରକାଶ କରି ହେବ ନାହିଁ ।

କଥା ପଡୁ ପଡୁ ଜଣେ ମଳମୁଣ୍ଡିଆ ହଠାତ୍ ଉଦ୍‌ଗାରିଲା—"ଆଜ୍ଞା, ଆମେ ତ ଦେଉଛୁ, ଦେବୁ । କିନ୍ତୁ ବଡ଼ ଲୋକମାନେ କେତେ ଦେଇଛନ୍ତି କହିଲେ ଦେଖି ? ଆମ ଭାଗୁ ମହାନ୍ତି କେତେ ଦେଇଛନ୍ତି ? କହୁ ନାହାନ୍ତି ?"

ମୋର ବିମୂଢ଼ତା ଦେଖି ପାରି ନମା ଦେଈ ଗୃହାଣୀରେ ଦୂରକୁ ଉର୍ଦ୍ଧ୍ୱକୁ ଇଶାରା କଲେ । ସର୍ବୋପରି ମୁଣ୍ଡ ଟେକିବା ସେଇ ଅଟେଳ ମହଲା କୋଠା । ବୁଝିଲି । କିନ୍ତୁ ଏଣେ ସଭାସ୍ଥଳରେ କାହିଁକି ହାସ୍ୟରୋଳ ଉଠିଲା ବୁଝି ହେଲା ନାହିଁ ।

ବିଚଳିତ ନ ହୋଇ ମହାଭାଇନା ଉତ୍ତର ଦେଲ,—'ଭାଗୁବାବୁ ଆମ ହିସାବରୁ ବାଦ ପଡ଼ିବେ ନାହିଁ । ବିଶ୍ୱାସ କରନ୍ତୁ । ହୁଏତ ସେ ଟଙ୍କା ରୋଜଗାର କରିବାରେ ଯେମିତି ଅଭ୍ୟସ୍ତ, ଟଙ୍କା ଖର୍ଚ୍ଚ କରିବାରେ ସେତେଟା ନୁହେଁ (ପୁଣି ହାସ୍ୟରୋଳ), କିନ୍ତୁ ଆମେ ଆଶା ଛାଡ଼ି ଦେଇ ନାହୁଁ । ସେ ମଧ୍ୟ ଦେବେ । ସଂଦେହ ନାହିଁ ।"

"କେତେ ଦେବେ ? ଦଶ ପଚିଶ ଦେଲେ ଚଳିବ ନାହିଁ । ଅନ୍ତତ-ପକ୍ଷେ ଲକ୍ଷେ ଦେବାକୁ ପଡ଼ିବ", ପ୍ରଶ୍ନକର୍ତ୍ତା ପାଟି କରି ଉଠିଲା ।

"ଲକ୍ଷେ ନୁହେଁ, ପାଞ୍ଚ ଲକ୍ଷ !" ପଛରୁ ଆଉ ଜଣେ । "ଯେ ଦୁଃଖୀରଙ୍କିମାନଙ୍କୁ ବେଠି ଖଟେଇ ତାଙ୍କ ଛଅମାଣ ନୁହେଁ, ମାତ୍ର ଆଠ ଗୁଣ୍ଠ ଛଡ଼େଇ ନେଇ ତିନ ମହଲା କୋଠା ତୋଳିଛି ଏବଂ ସରକାରଙ୍କ ସାନପୁଅ ହୋଇଛି, ତାକୁ ଆପଣ ଶାସ୍ତି ଦେଇ ପାରିବେ ନାହିଁ । କିନ୍ତୁ ସେ ଅନ୍ତତଃ ଏଇ ଗୃହା ଭାବରେ କିଛି ଦେଉ ଆମମାନଙ୍କୁ, ପାର୍ଟିକୁ, ଜନତାକୁ..."

ସ୍ୱାଙ୍କ ଭିତରେ ଜଣେ ଉଗ୍ରବାଦୀ ମଧ୍ୟ ଅଛି ତା' ହେଲେ ? ମୋର ସରକାରୀ କାମ ସଂକ୍ରାନ୍ତରେ ମୁଁ ତାକୁ ଭଲ ଭାବରେ ଚିହ୍ନି ରଖିବି

ବୋଲି ସ୍ଥିର କଲି । ଲୋକଟା ଫକୀରମୋହନଙ୍କୁ ପଢ଼ିଛି । ଏବଂ ପଢ଼ିଛି ବୋଲି ଆମକୁ ଜଣାଇ ଦେବାକୁ ଚାହିଁଲା । ତେଣୁ ତା'ର ଉଗ୍ରବାଦକୁ କାବୁ କରିବାରେ ବିଶେଷ କଷ୍ଟ ହେବ ନାହିଁ ବୋଧହୁଏ । ଏହି ମର୍ମରେ ଭାବୁ ଭାବୁ ମୁଁ ଅନ୍ୟମନସ୍କ ହୋଇଗଲି । ଓଗାଳ—ଉତାର କେମିତି ଭାବରେ ଛିଣ୍ଡି ଗଲା, ଆଳାପ ଆଲୋଚନା ସହଜ ଅବସ୍ଥାକୁ ଫେରି ଆସିଲା, ଖିଆଲ କରି ପାରିଲି ନାହିଁ ।

ଲୋକମାନେ ଖଲାସ ହୋଇଗଲା ପରେ, ଏବଂ ମଧ୍ୟାହ୍ନ ବେଳକୁ କେବଳ ଆମେ ତିନିଜଣ ଗୋଡ଼ ଲମ୍ବେଇ ଶୀତ ଦିନିଆ ଉଷୁମକୁ ପିଠି ଦେଖେଇ ହାଇ ମାରିଲା ବେଳେ (ମାନେ ମୁଁ ହାଇ ମାରୁଥିଲି, ମହାଭାଇନା ବୋଧହୁଏ ଆଙ୍ଗୁଳି ଫୁଟଉଥିଲା, ଆଉ ନନ୍ଦଦେଈ ଟେବୁଲ୍ ଉପରକୁ ଗୋଡ଼ ଉଠେଇ ଥିଲେ) ମହାଭାଇନା ବ୍ୟାପାରଟା ବିଶଦ ଭାବରେ ବୁଝେଇ ବାକୁ ଚେଷ୍ଟା କଲା । କହିଲା,

"ଏଇ ଭଗୁ ମହାନ୍ତିଙ୍କ ନାଆଁ ଶୁଣିଥିବୁ ନିଶ୍ଚୟ । ବିସ୍ତିର ବଡଲୋକ । ହୁଏତ ଶୁଣି ନ ଥିବୁ, କାହିଁକିନା ସେ ରାଜନୀତି ଫାଜନୀତିର ଧାରି ଧାରନ୍ତି ନାହିଁ । କହିବାକୁ ଗଲେ ସମାଜ, ସଂସ୍କୃତି ଇତ୍ୟାଦି କେଉଁଥିରେ ନ ଥାଆନ୍ତି । ଖଣ୍ଡମଣ୍ଡଳରେ ନାଆଁ ଡାକ ଯେ ସେ କୃପଣ । ନିଶାପଣାର ପାଖ ମାଡ଼ନ୍ତି ନାହିଁ । ଖାଲି ଗୋଟାଏ ସଉକ୍ । ବୁଢ଼ା ଦିନରାତି ପାନ ଚୋବଉଥାଏ—

ଅପ୍ରତ୍ୟାଶିତ ଭାବରେ ନନ୍ଦଦେଈ ଯୋଗ ଦେଲେ, "ଅଡ଼ିନାରି ପାନ ନୁହେଁ । ବଢ଼ିଆ ବାସ୍ନା ପାନ, କେତକୀ ଖଇର, ପାଣ୍ଡିଆ ସୁବୁଦ୍ଧି ଗୁଣ୍ଡି । ମୁଁ ତାଙ୍କ ପାନ ଖାଇଛି । ପ୍ରଶଂସା କଲାରୁ ଆହୁରି ନିଅନ୍ତୁ ବୋଲି ବଳେଇଛନ୍ତି । ମୋଟେ କାର୍ପଣ୍ୟ କରି ନାହାନ୍ତି ।"

ନନ୍ଦ ଦେଈଙ୍କର ମାର୍କାମରା ରସିକତା । ହୁଏତ ବ୍ୟଙ୍ଗୋକ୍ତି । ଚିଡ଼ ମାଡ଼ିଲା । କିନ୍ତୁ ତାଙ୍କର ଆହୁରି କିଛି କହିବାକୁ ଥିଲା । ଉତ୍ସାହ ସହକାରେ ବଖାଣି ବସିଲେ ।

"ଆହୁରି ଗୋଟାଏ ସଉକ୍ । ପିଲା ପାଳିବା । ବୋଧହୁଏ ସେଇଥି-ପାଇଁ ଯୋଡ଼ାଏ କି ତିନୋଟା ବାହା ହୋଇଛନ୍ତି, ଯେମିତିକି ଅନ୍ତତଃ ଦଶ

ବାରଟା ପିଲା ହେବେ । ଥୋକେ ବଡ଼ ହୋଇ ଭିନେ ହୋଇଗଲେ ବି' ଘରେ ସବୁବେଳେ କେଇ ଜଣ ଗୁଡ଼ୁରୁ ଗୁଡ଼ୁରୁ ହେଉଥିବେ । ଯାହାହେଉ ସେଇ ସୁଯୋଗ ନେଇ ମୁଁ କ'ଣ କଲି ଜାଣନ୍ତି ? (ନମା ଦେଈ ଟେବୁଲ୍‌ରୁ ଗୋଡ଼ ଖସେଇ ଆଣିଲେ । ମନେ ହେଲା ସେ ଗୋଟାଏ ବଡ଼ ଗପ ଶୁଣେଇବାକୁ ଚାହାନ୍ତି) ମୁଁ ତାଙ୍କ ପାଖରେ ଆଉ ଟୋକିଏ ସାନ ଝିଅ ଜୁଟେଇ ଦେଲି । ତାଙ୍କ ଘରେ ଅବଶ୍ୟ ଚାକରବାକର ଅଭାବ ନାହିଁ, ତାଙ୍କ ଭିତରେ ସାନ ପିଲାଙ୍କ ସଂଖ୍ୟା କମ୍ ନୁହେଁ । ତଥାପି ମୁଁ ତାଙ୍କୁ ଏଇ ଝିଅଟିକୁ ନେବା ପାଇଁ ରାଜି କରେଇଲି···"

"ଓ, ସେଇ ପେମି କଥା କହୁଛନ୍ତି ?, ମହୀ ଭାଇନା ଈଷତ୍ ହସ ହସି ବୋର ହୋଇ ଯିବାର ସୂଚନା ଦେଲା । କିନ୍ତୁ ନମା ଦେଈ ରହି ଯିବାକୁ ପ୍ରସ୍ତୁତ ନ ଥିଲେ କହି ଚାଲିଲେ—

"ତା'ର ମଧ୍ୟ ଗୁଡ଼ାଏ ଭାଇ ଭଉଣୀ । କିନ୍ତୁ ତାଙ୍କର ବାଉଁଶ ଘର । ସେଥିରେ ଅବଶ୍ୟ, ବିଶେଷ କିଛି ଯାଏ ଆସେ ନାହିଁ, ବରଂ ଗରିବ ଘରେ ପିଲାମାନେ ବେଶି ଖେଳକୁଦ କରନ୍ତି । କିନ୍ତୁ ଯା' ଭାଗ୍ୟରେ ସେତକ ହେଲା ନାହିଁ । କାରଣ ପିଲାମାନଙ୍କୁ ଚବିଶଘଣ୍ଟା ମାଡ଼ ଗାଳି ଖାଇ ଯେତେକ ଘର ବାହାର କାମ କରିବାକୁ ହୁଏ । ବଣର କାଠ କାଟି ଆଣିବା, ଛେଳି ଜଗିବା, ବାସନ ମାଜିବା; ପୋଖରୀରୁ ପାଣି ଆଣିବା, ଇତ୍ୟାଦି । ଯେହେତୁ ବାପର ସମସ୍ତ ନାହିଁ, ସେ ଅଧେ ଦିନ ମାତାଲ ହୋଇ ଶୋଇ ରୁହେ, ଅଧେ ଦିନ ଜୁଆ ଖେଳେ । ମାଆର ସମୟ ନାହିଁ କାହିଁକନା ତା'କୁ ମଦ ରାନ୍ଧିବାକୁ ପଡ଼େ । ସଞ୍ଜ ହେଲେ ଗରାଖମାନଙ୍କୁ ମଦ ପରିଷିବାକୁ ହୁଏ, ତା' ସାଙ୍ଗକୁ ବୁଟ ଭଜା । ବାଜାରେ ମାଡ଼ ଖାଇ ପିଠି ଦରଜ ହୋଇଥିଲେ ବି' ନାକରୁ ଲାଳ ସିଙ୍ଘାଣି ବୋହୁଥିଲେ ବି' ପେମିକୁ ସାଜ ସୁଜ ହୋଇ ମାଲ ପରିଷିବାରେ ସାହାଯ୍ୟ କରିବାକୁ ପଡ଼େ । କାରଣ ସେ ବଡ଼ ଝିଅ । ବୟସ ବାର । ମୁଁ ତାଙ୍କ ବାପ ମାଆଙ୍କୁ ବୁଝେଇଲି, କହିଲି ଅନ୍ତତଃ ପେମିକୁ ଖଲାସ କରି ଦିଅ, ତମ କଥା ପରେ ବୁଝିବା । ଶେଷକୁ ଭାଗୁ ମହାନ୍ତି ପଛରେ ପଡ଼ିଲା—

(ସ୍ୱର ଉଚ୍ଚେଇ) "ଜାଣନ୍ତି ଆଜ୍ଞା, ପିଲଟା ପିଲ ପରି ହସୁ ନ ଥିଲା, ଖେଳୁ ନ ଥିଲା, ଦ'ଛଅଟା ବର୍ଷ ଭିତରେ ବୁଢ଼ାଟା ବଡ଼ ହୋଇ ଯାଇ ଥାଆନ୍ତା, ସେଣିକି ଆଉ କିଛି କରିବାର ନ ଥାଆନ୍ତା, ତା'ର ପିଲାବେଳ ଆଉ ଫେରି ଆସି ନ ଥାଆନ୍ତା। ମୁଁ ଆଉ ବରଦାସ୍ତ କରି ପାରିଲି ନାହିଁ···

(ହଁ ନମ୍ମାଦେଈ, ମୁଁ ବୁଝିପାରୁଛି। ଆପଣଙ୍କ ପରି ଉଚ୍ଛଳ ନ ହେଲେ ମଧ୍ୟ ସେହିଭଳି ହୋଇ ପାରିବାର ଅବକାଶ ନ ଥିବ, ଇଚ୍ଛାଟିକି ମରିଯିବ, ତାହା ଆପଣ କେମିତି ସହ୍ୟ କରି ପାରନ୍ତେ ?)

"ମୁଁ ବୁଢ଼ାଙ୍କ ପଛରେ ଲାଗିଲି। କଣ୍ଠଳ ନା ଗୁଡ଼ାଳ ! ଏଇକ୍ଷଣି ସେ ଉଆସରେ ପିଲଙ୍କ ଗହଣରେ ଅଛି, ଖେଳୁଛି, ସାଙ୍ଗମାନଙ୍କ ସାଥିରେ ଖୁମ୍ପାଖୁମ୍ପି ଅଟ୍ଟହାସକରି ହେଉଛି, କାମ ବୋଲି କିଛି ନାହିଁ। ଅସଲ ଫୁଲେଇଟିଏ ହେଲାଣି···ନାଇଁ ଆଜ୍ଞା, ଝିଗୁ ମାହାନ୍ତି ଲୋକଟା ମନ୍ଦ ନୁହେଁ।"

ଏଇଠି ମହାପ୍ରଭଇନା ତା'ର ପ୍ରାଧାନ୍ୟ ଦେଖାଇଲା। କହିଲା, "ନମ୍ମା ଦେଈ, ସେ ଭଲ ମନ୍ଦରୁ କଣ ମିଳିବ ଆମକୁ ? ଅସଲ କଥା ହେଲା ତାଙ୍କ ଠାରୁ ଟଙ୍କା କାଢ଼ିବାକୁ ପଡ଼ିବ, ପାଞ୍ଚଲକ୍ଷ ନହେଲେ ମଧ୍ୟ କିଛି ମୋଟା ରକମର। ତା'ର ଦାୟିତ୍ୱ ଆପଣଙ୍କ ଉପରେ।"

ନମ୍ମା ଦେଈ ଟୀକା ଦାଗ ଆଉଁସିବା ଛାଡ଼ିଦେଇ ତାଙ୍କ ରାଜନୈତିକ ଝୁଲିମୁଣି ଭିତରୁ ଗୋଟିଏ ପାନଡ଼ବା କାଢ଼ିଲେ। ଚନ୍ଦ୍ରଧରୁ ପାନ ବାହାରିଲା ନାହିଁ, ଲଜେନସ୍। ଆମ ଦୁଇଜଣଙ୍କ ହାତରେ ଗୋଟିଏ ଗୋଟିଏ ଧରେଇ ଦେଇ ନିଜେ ଗୋଟିଏ ପାଟିରେ ପକେଇଲେ। ସେଇଠୁଁ ଉଦାରପ୍ରସନ୍ନ ମୁଦ୍ରାରେ କହିଲେ, "ମୁ କଣ କେବେ ହେଲେ ମନା କରିଛି ?"

ଏବଂ କିଛି ସମୟ ପରେ ଆମକୁ ଚମତ୍କୃତ କଲାପରି କହିଲେ, "ଫର୍ ୟୋର୍ ଇନ୍‌ଫର୍‌ମେସନ, ମୁଁ ଆଜି ଯାଉଛି ତାଙ୍କ ଘରକୁ। ଆଗରୁ କଥା ହୋଇଛି। (ମୋ ଆଡ଼କୁ ଅନେଇ) ବୋଧହୁଏ ସେଇ ଟୋକା ମୋତେ ଡାକି ନେବାକୁ ଆସିବ। ଆପଣ ଦେଖିବେ ତାକୁ"।

ସତକୁ ସତ ସେ ଆସି ପହଞ୍ଚିଲା ଘୁଇ ଲେଉଟିଲା ବେଳକୁ । କିନ୍ତୁ ସେ ଗରବ ଘର ଅଥବା ବାଉର ଘର ଦଶ ବାର ବର୍ଷର ଝିଅଙ୍କଠାରୁ କିଛି ଭିନ୍ନ ଲାଗିଲା ନାହିଁ । ଏଇ ବୟସର ପାନଝିଅମାନଙ୍କୁ ଅପେକ୍ଷାକୃତ ଭଲ ପାଇବା ସ୍ୱାଭାବିକ, କିନ୍ତୁ ସ୍ନାଙ୍କୁ ଦେଖି ସ୍ନେହର ଭଣ୍ଡ ଉଛୁଳି ଆସିବ ଏଭଳି କୌଣସି କାରଣ ଦେଖିଲି ନାହିଁ । ଦେହରେ ପଲେ ବୋଲି ମାଉଁସ ନାହିଁ । ମିଞ୍ଜି ମିଞ୍ଜି ଆଖି । ନାକରେ ପାଣି ସିଙ୍ଘାଣି ନ ଥିଲେ ମଧ୍ୟ ସଦାସର୍ବଦା ସୁଁ ସୁଁ ହେଉଛି, ନିଶ୍ଚୟ ବଦଭ୍ୟାସ । ନଳୀ ହାତରେ ପିନ୍ଧିଥିବା ଚୁଡ଼ି ଦି'ପଟକୁ ଥାଇ ଥାଇ ଝଣଝଣ କରୁଛି, ଇଏ ବି' ଗୋଟାଏ ବଦଭ୍ୟାସ । ହୁଏତ ନର୍ଭସନେସ୍ । ପାଟିରୁ କ୍ଷୀଣ ଅଥଚ ଚେଁଚେଁଇଆଁ କଣ୍ଠରେ ପଦୁଟିଏ କଥା ବାହାରିଲା, "ଦେଈ ନାହାନ୍ତି ?"

କିନ୍ତୁ ଦେଈଙ୍କର ଆବିର୍ଭାବ ହେଲାରୁ ତା'ର ସେଇ ଚେହେରା ମୁହୂର୍ତ୍ତକରେ ଏମିତି ବଦଳି ଯିବ ବୋଲି ଭାବି ନ ଥିଲି । ସୁଁ ସୁଁ ର ହିମ ବୋଧହୁଏ ବଢ଼ିଗଲା । ଉତ୍ତେଜନା ହେଲେ ଓଠରେ ମଧୁର ହସଟିକି କୋଉଠି ଲୁଚି ରହିଥିଲା ଏତେବେଳଯାଏଁ ? "ଦେଈ ଆପଣଙ୍କୁ ଡାକୁଛନ୍ତି, ବାବୁ ଡାକୁଛନ୍ତି ଆପଣଙ୍କୁ, ବାବୁ କହିଲେ ଯାଆ ସାଙ୍ଗରେ ନେଇ ଆସିବୁ, କହିଲେ···ନିମନ୍ତ୍ରଣର ସାନ କଥାଟାକୁ ସେ ଏମିତି ଲମ୍ବେଇ କହିଲା ଯେ ମନେ ହେବ ତାକୁ ଗୋଟାଏ ବିରାଟ କାମ କରିବାକୁ ଦିଆ ହୋଇଛି, ତା'ର ସମ୍ପଦକୁ ଚଟ୍‌କିନି ସାରି ଦେଇ ହେବ ନାହିଁ ।

ନମା ଦେଈ ତା'ର କହରା ନୁଖୁରା ମୁଣ୍ଡ ବାଳରେ ହାତ ବୁଲେଇ ଆଣି କହିଲେ, "କାଲେ ତୁ ମୁଣ୍ଡ କୁଣ୍ଡେଇ ନାହୁଁ କାହିଁକି ? ବାବୁ ମନା କଲେ ?···ରହ ଲୋ ଝିଅ, ତୋ ବାହାଘର ବେଳକୁ ତୋତେ ଏମିତି ସଜେଇ ଦେବି ଯେ ବର ତୋତେ ବାହା ନହେଉଣୁ ଟେକି ନେଇ ପଳେଇବ ।" କହି ଏଭଳି ଉଚ୍ଚ ସ୍ୱରରେ ହସିଲେ ଯେ ଆମେ ତାଙ୍କ ସାଙ୍ଗରେ ଅଳ୍ପ ବହୁତ ହସିବାକୁ ବାଧ୍ୟ ହେଲୁ ।

ଯେମି ଲାଜେଇ ଗଲା । ଭାବିଲି ତାର ସଲଜ ବଦନକୁ ହୁଏତ ସୁନ୍ଦର ବୋଲି କହି ହେବ ।

ନମା ଦେଈ ପ୍ରସ୍ଥାନ କଲାପରେ ପ୍ରାୟ ସଞ୍ଜ ବୁଡ଼ିଲା ବେଳକୁ ମୁଁ ମହୀ ଭାଇନା ପାଖରୁ ବିଦାୟ ନେଲି । ସେ ମୋତେ ପାଗ୍ରେଟି ଦେବା

ଯାଇଁ ଗାଆଁ ମୁଣ୍ଡ ଯାଏଁ ଆସିଲି, ଯେଉଁଠି ସେଇ ଛୁଣ୍ଡା ଚାଳପକା ମନ୍ଦିର ସଣ୍ଗରେ ମୋତେ ଅନେଇ ରହିଥିଲି, ନ ଚିହ୍ନି ପାରିଲି ପର। ସତେକି ମୁଁ ବିଦେଶୀ। ଆଳବରର ଘଣ୍ଟା ସୁଚ୍ଛ ହୋଇ ଯାଇଥିଲି, କିନ୍ତୁ ମୋତେ ଦେଖି ଅଟକି ଗଲି ଗଲି ମନେ ହେଲା।

ହଁ, ମୁଁ ବିଦେଶୀ। ମୁଁ ତୁମ ପଲ୍ଲୀଗ୍ରାମ ଧାର ଧାରେ ନାହିଁ। ମୁଁ ତୁମର ଖଳା, ଅମାର, ବେଙ୍ଗଳା ବେଉଷଣ, ଅଥବା ତୁମର ସନ୍ତସନ୍ତୁଆ ଧର୍ମର ମର୍ଯ୍ୟାଦା ବୁଝେ ନାହିଁ। ମୁଁ କ୍ଷମା ମାଗୁ ନାହିଁ। ଖାଲି ଆମ ବନ୍ଧୁ ମହାଭାଇନା ଆଉ ତାଙ୍କ ବନ୍ଧବା ତମକୁ ନେଇ କୋଉ ସ୍ୱର୍ଗରେ ପହଞ୍ଚେଇବେ ଦେଖିବାକୁ ବାକି ରହିଲା। ମୁଁ ଯାହା ଦେଖିବାକୁ ଆସିଥିଲି, ଦେଖିନେଲି। ବୁଝି ନେଲି। ଏଥର ମୁଁ ମୋର ପ୍ରଶ୍ନ ପଚାରିବି।

ସେଇଠୁଁ ବନ୍ଧୁ ବିଦାୟ ପୂର୍ବରୁ ଏବଂ ସାହସର ସହ ମୁଁ ମୋର ପ୍ରଶ୍ନ ଛାଡ଼ି ଦେଲି।

"ମହା ଭାଇନା, ଗୋଟାଏ କଥା ପଚାରିବି, କିଛି ମନେ କରିବୁ ନାହିଁ। ଏଇ ଯୋଉ କାମ କରୁଛୁ ଏଇଠି, ଏଇ ମାଗଣା ପଣ, ଆମକୁ ଭୋଟ୍ ଦିଅ ଟଙ୍କା ଦିଅ, ଆମେ ତମକୁ ଉଦ୍ଧାର କରିବୁ, ଏଇ ହେଉଛି ତୋର ଆଦର୍ଶ ? ନା ସେଇ ଅଜବ୍ ଭଦ୍ରମହିଳାଙ୍କ କଥାରେ ପଡ଼ି (ପାଲରେ ପଡ଼ିଛୁ ବୋଲି କହିଲି ନାହିଁ) ଏଇ ଧଂଦାରେ ମାତିଛୁ ?"

ତା'ର ନୀରବତାରେ ମୁଁ ସାମାନ୍ୟ ଶଂକ ଗଲି। କିଏ ଜାଣେ, ହୋଇପାରେ ବନ୍ଧୁର ସ୍ୱଭାବ ବଦଳି ଯାଇଛି ଏହା ଭିତରେ। ହୁଏତ ସେ କେବଳ ଉତ୍ତେଜିତ ହୋଇ ଉଠିବ ନାହିଁ, ସତସତିକା ରାଗି ଯିବ ମୋ ଉପରେ। ମୁଁ ତା' ଆଡ଼କୁ ସିଧା ସଳଖ ଅନେଇବାର ପ୍ରଯତ୍ନ କଲି ନାହିଁ।

କିନ୍ତୁ ମୋର ଆଶଙ୍କାର କାରଣ ନ ଥିଲା। ସେ ଧୀର କଣ୍ଠରେ ବୁଝେଇ ବସେଇ ଆରମ୍ଭ କଲା। ଯେମିତିକି ମୂଢ଼ମାନବକୁ ବୁଝେଇବାକୁ ବସିଛି। କହିଲା,—

"ବନ୍ଧୁ, ଦେଶ ବାନ୍ଧୁଛି । ରୋଗରେ, ଶୋକରେ, ମଣିଷ ଭଲ ମଣିଷ ନ ହୋଇ ପାରିବାର ଦୁଃଖରେ । ମୁଁ ବି' ଦିନେ ଭାବୁଥିଲି ତୋରି ପରି, ଯେ କେବଳ ସେବା କଲେ, ଲୁହ ପୋଛି ଦେଲେ ଯଥେଷ୍ଟ । କିନ୍ତୁ ଏବେ ଦେଖୁଛି ସେଥିରେ ଚଳିବ ନାହିଁ । ନାୟମ୍ ଆତ୍ମା ବଳହୀନେନ ଲଭ୍ୟ । କ୍ଷମତା ହାସଲ କରିବାକୁ ହେବ, ତା'ହେଲେ ଯାଇଁ ସେମାନଙ୍କୁ ଉଠେଇ ହେବ । କ୍ଷମତା ଖଟେଇବାକୁ ହେବ, ତା'ହେଲେ ଯାଇଁ ବୃଦ୍ଧ ଅନ୍ଧାର ଗୁଡ଼ୁଗୁଡ଼ିକୁ ନିକାଲିବା ସମ୍ଭବ । ନଚେତ୍ ଅବସ୍ଥା ସୁଧୁରିବ ନାହିଁ । ତେଣୁ ଯେ କୌଣସି ମତେ···ଜନ୍ କେନେଡ଼ି କଣ କହିଥିଲେ ମନେ ନାହିଁ ? ଯେ ମୁଁ ପ୍ରେସିଡେଣ୍ଟ୍ ହେବାକୁ ଚାହେଁ, କାହିଁକିନା ମୋର ନିଜ ଉପରେ ବିଶ୍ୱାସ ଅଛି ଯେ କେବଳ ମୁଇଁ ପ୍ରେସିଡେଣ୍ଟ ହେଲେ ଦେଶର ମଙ୍ଗଳ ହେବ । ସ୍ୱା'ଙ୍କୁ ସ୍ୱାର୍ଥ କୁହ, ଆକାଂକ୍ଷା କୁହ, ଯାଏ ଆସେ ନାହିଁ । ଆମର ଦରକାର ଭୋଟ୍, ମୋ ପାଇଁ ମୋ ପାର୍ଟି ପାଇଁ । ଆଜି ମୋଠୁଁ ଲେଖିନେ ଯେ ଆମେ ଜିତିବୁ । ଅଲ୍‌ବତ୍ ଜିତିବୁ ।"

ଅହରହ ମରୁଥିବା ହାରୁଥିବା ପୃଥିବୀରେ, ପୁଣି ଆମର କାଂଗାଳ ଦେଶରେ ଜଣେ କହୁଛି ଯେ ସେ ଅଲ୍‌ବତ୍ ଜିତିବ । ପୁଣି କିଏ କହୁଛି ନା ଆମର ଏଇ ମହୀଭାଇନା, ପିଲା ଦିନର ସାଙ୍ଗ, ଗାଆଁ କିନିଆଁ । ମୁଁ ମୋ ପ୍ରଶ୍ନର ଉଦ୍ଦେଶ୍ୟ ଭୁଲିଗଲି । ଏବଂ ତା'ର ବିସ୍ମୟକର ଦମ୍ଭର ଚେହେରା ଦେଖିବା ପାଇଁ ଆତୁର ହେଲି । କିନ୍ତୁ ମୁଁ ତଥାପି ତା' ମୁହଁକୁ ଅନେଇଲି ନାହିଁ । କାଳେ ତା'ର ଦମ୍ଭ କିଣା କି କୁବୁଜା ଦିଶିବ । ମୋର ନବଜାଗ୍ରତ ଶ୍ରଦ୍ଧା, ଓ ତା ସାଙ୍ଗକୁ ଅଳ୍ପ ବହୁତ ଗର୍ବ ନଷ୍ଟ ହୋଇଯିବ । ମହୀ ଭାଇନା କହି ଚାଲିଲା—

"ସୌଭାଗ୍ୟ ଯେ ମୁଁ ନମି ଦେଈଙ୍କ ପରି ଜଣେ ସହକର୍ମିଣୀ ପାଇଛି । ଅଦ୍‌ଭୁତ ନାରୀ । ଜୀବନ ଯାକ ତାଙ୍କୁ କେହି ଦବେଇ ପାରି ନାହିଁ । ଥରେ କହିଲେ, ମୁଁ ମରଣକୁ ଜିତି ପାରିଲି ନାହିଁ ସିନା, ମୋହନ ବାବୁ ମୋ ଆଗରୁ ଚାଲିଗଲେ—ମୋହନ ବାବୁ ତାଙ୍କ ସ୍ୱାମୀଙ୍କ ନାଆଁ-କିନ୍ତୁ ଅନ୍ୟ ଯେ କୌଣସି ଦୁର୍ଗତିକୁ ମୁଁ ନାଶ କରି ପାରିବି । କେବଳ ମନ ପୂରେଇ ଚାହିଁଲେ ହେଲା । ତୁ କ'ଣ ଭାବୁଛୁ ସେ ଖାଲି

ଭେଟ ବ୍ୟପାରରେ ମିଶିଛନ୍ତି ମୋ ସାଙ୍ଗରେ ? ତା' ନୁହେଁ । ନିଶା ନିବାରଣ, ପରିବାର ନିୟୋଜନ, ଯୌତୁକ ପ୍ରଥାର ଉଚ୍ଛେଦନ, ଇତ୍ୟାଦି ଯାବତୀୟ ଗଠନମୂଳକ କାମରେ ମଧ୍ୟ ସେ ଲାଗିପଡ଼ିଛନ୍ତି । କିନ୍ତୁ ନିଜ ହିସାବରେ । ( ହଠାତ୍ ହସ ) ଜାଣିଛୁ ? ନିଶା ନିବାରଣ ପାଇଁ ସେ କେମିତିକା ପ୍ରଚାର ଚଳେଇଛନ୍ତି ? କହୁଛନ୍ତି ନିଶାର ପ୍ରଭାବରେ ପୁରୁଷର ମର୍ଦ୍ଦପଣିଆ, ୟୁ ନୋ ହ୍ଵାଟ ଆଇ ମିନ୍, କ୍ଷୟ ହୋଇଯାଏ । ଆଉ କୁଆଡ଼େ ଟୋକାମାନେ ଅଳ୍ପ ବୟସରେ ବୁଢ଼ା ହୋଇ ଯାଆନ୍ତି । କହ ନା ତାଙ୍କ କଥା । ଯାହାକୁ କହନ୍ତି, ଡାଇନାମିକ୍—

ମୁଁ ଲେଖି ଦେଉଛି ସେ ଭଗୁ ମାହାନ୍ତି ଠାରୁ ଆଣିବେ ପୂଜାଏ, ଛାଡ଼ିବେ ନାହିଁ । କେମିତି ଆଣିବେ ସେଇ ଜାଣନ୍ତି (ପୁଣି ହସ । ଦିନ ଭିତରେ ଏଇ ପ୍ରଥମ ଥର ତାକୁ ଏମିତି ଖୋଲା ହସ ହସିବାର ଦେଖିଲି)। ବନ୍ଧୁ, ଆମେ ଜିତିବା ରେ ଜିତିବା ! ଆସିବୁ ସେତେବେଳକୁ, ସେଲିବ୍ରେଟ୍ କରିବା ।"

ଆମେ ଜିତିବା ରେ ଜିତିବା ! ସେ ବିଦାୟ ନେଇ ସାରିଲା ପରେ ମଧ୍ୟ ତା'ର ସେଇ ପାଂଚଜନ୍ୟ ମୋ କାନରେ ଧ୍ଵନିତ ହେଲା । ଏବଂ ମୋ ଦେହ ମନରେ ମଧ୍ୟ ଶକ୍ତି ସଂଚରିଲା । ଘନେଇ ଆସୁଥିବା ଅନ୍ଧାର ଭିତରେ ଲକ୍ଷ୍ମୀପୁରର ପଲ୍ଲୀରୂପ ଟିରି ଅନ୍ଧାରିଆ ଅଶ୍ଳୀଳତା ବୋଲି ମନେ ହେଲା, ଯାହାକୁ ନ ଜାଣିଛୁ ବୋଲି ମୋର ଦୁଃଖ ନାହିଁ । ମୁଁ ଓ ମୋର ବନ୍ଧୁ, ଓ ତାର ଅନ୍ୟାନ୍ୟ ସାଥୀ, ଆମେ ସଭ୍ୟ ନାଗରିକମାନେ ଏଠିକି ଆସିଛୁ, ୟା'ର ଅଂଧାର ଗୁଡ଼ୁ ଗୁଡ଼ିମାନଙ୍କୁ ନିପାତ କରିବା ପାଇଁ । ମୁଁ ଗ୍ଵାଳିଆ ହେଲେ ଯାଏ ଆସେ ନାହିଁ, ମୁଁ ବି ଶତ୍ରୁଘ୍ନ । ଏଇ ଅତିକାୟ ଛଣଗଦା, ସର୍ବାଂଗକୁ ଘାରିଥିବା ପାପ ପରି ଏଇ ଦଳୁଆ ପୋଖରୀ, ଗ୍ରାମ ପ୍ରାଂଗକୁ ଚାପିଧରିଥିବା ଧର୍ମପରି ଏଇ ମନ୍ଦିର, ଅବଚେତନର ଦୁର୍ଗନ୍ଧରେ ଭରା ଏଇ ମଫସଲକୁ ଜିଣିବାକୁ ଆସିଛୁ ଆମେ । ଜିଣିବୁ ଓ ହାଣିବୁ । ନିଶା, ପଶା, ବେଠି, ମୂର୍ଖତା, ମ୍ୟାଲେରିଆ ଇତ୍ୟାଦି ଇତ୍ୟାଦିକୁ ନାଶ କରିବୁ ।

ଏହି ମର୍ମରେ ଉଲ୍ଲସିଲା ବେଳେ ପେମିର ଚେହେରା ମଧ୍ୟ ଆଖି ଆଗରେ ନାଚିଗଲା । ମୋର ଦୃଢ଼ ଧାରଣା ହେଲା ଯେ ଏଇ ବିଜୟ

ପର୍ବରେ ତା'ର ମଧ୍ୟ କିଛି ଗୋଟାଏ ଫାଇଦା ହେବ, ହୁଏତ ସେ ସମାଜର ଅବଢ଼ିଆ, ଶୁର୍ଣ୍ଣୀଘରେ କଷଣରୁ ବର୍ତ୍ତିଯିବ ସବୁଦିନ ପାଇଁ। କୁନୁମୁନିଆ ବୋହୂଟିଏ ହେବ। ଅଯଥାରେ ସୁଁ ସୁଁ ହେବନି ଆଉ।

ପୃଥିବୀର ବିଶାଳତମ ଗଣତଂତ୍ରରେ ଭୋଟପାଲିର ଯେଉଁ ଆହ୍ଲାଦ ତା'କୁ କିଏ ଆଡ଼େଇ ଦେଇ ପାରିବ ? ନିୟମ ଅନୁଯାୟୀ ମୋର ପାଟି ଫିଟିବ ନାହିଁ ସିନା, ଭିତରିଆ ଅନୁଭୂତି ଯିବ କୁଆଡ଼େ ? ତା' ଛଡ଼ା ମୋ ସାନ ପୁଅ ପାଣ୍ଡବ ପାର୍ଟିର ପତାକାଟିଏ କେଉଁଠୁ ଆଣି ହଲଉଛି ମୋ ଆଖି ସାମନାରେ, ଏଣେ କୌରବ ପାର୍ଟିର ସ୍ଲୋଗାନ ଗାଉଛି, ଏଇ ବୈଚିତ୍ର୍ୟକୁ ମୁଁ କେମିତି ତୁଚ୍ଛ ମଣିବ ? ନା ମୋ ସ୍ତ୍ରୀଙ୍କର ଧଳା-କଳା ବିସ୍ମୟକୁ ହୁରୁଡେଇ ଦେଇ ପାରିବ ? ସବୁ ପାର୍ଟି ମୋଠ୍ ଉପରେ ସମାନ ହୋଇ ପାରନ୍ତି କିନ୍ତୁ ଏଇ ଲଢ଼େଇ ଖଣ୍ଡିକ ନ ଥିଲେ ଆମେ ବଞ୍ଚିବୁ କେମିତି ? ମୁଦ୍ରାସ୍ଫୀତି ଉପରେ ପ୍ରବନ୍ଧ ପଢ଼ିଲେ କୋଉ ଅଧିକା ପେଟ ପୂରିବ ?

ତେଣୁ ମୁଁ ମଧ୍ୟ ଆନଂଦ କଲି। ନିରପେକ୍ଷ ନୁହେଁ, ସାପେକ୍ଷ। ମନେ ମନେ ମୁଁ ବି' ମୋ ଗଂଜା କୁକୁଡ଼ାକୁ ଉସକେଇଲି। ନ ହେଲେ ମଜା ଆସିବ କେଉଁଠୁ ? ତା ଛଡ଼ା ଲକ୍ଷ୍ମୀପୁରର ସେଇ ଉତ୍ତର ଦାୟିତ୍ୱ ସନ୍ଧ୍ୟା ପରେ ମୁଁ କଣ ସତରେ ମହାଭାଇନା—ନମି ଦେଈଙ୍କ ପାର୍ଟିରେ ମିଶିଯାଇ ନାହିଁ ?

ମଝିରେ ଥରେ ନମି ଦେଈଙ୍କ ସାଙ୍ଗରେ ଦେଖା ହୋଇଥିଲି। ମିନିଟକ ପାଇଁ। ମୋ ସହରରେ, ମାନେ ରାଜଧାନୀରେ। ଉପର ବେଳା ସେ କେଉଁ ନିର୍ବାଚନ ସଭାରୁ ଫେରୁଥିଲେ ଓ ମୁଁ ଛୁଟି ହେବାର କିଛି ସମୟ ପୂର୍ବରୁ ଘରକୁ ଧାଉଁଥିଲି, ଟେଲିଭିଜନ୍‌ରେ ବିଶେଷ ପ୍ରୋଗ୍ରାମ ଦେଖିବ ବୋଲି। ତାଙ୍କର ସ୍ୱାଭାବିକ ଉଜ୍ଜଳତା ଏମିତି ଫୁଟି ଫାଟି ପଡୁଥିଲା ଯେ ମୋ ଗ୍ଲାନି ମଧ୍ୟ କୁଣ୍ଠେ ମୋଟ ହୋଇଗଲା। ମୁଁ ଜନତାକୁ ସାମାନ୍ୟ ଆଡ଼୍ଆଳ କରି ତାଙ୍କ ଆଡକୁ ବିଜୟର "ଭି" ଚିହ୍ନ ଦେଖାଇଲି। ସେ ବୁଝିଲେ, ଖୁସିଟାଏ ହେଲେ ଓ କହିଲେ—"ସିଓର୍। ଜାଣନ୍ତି ପେମିର ବାହାଦର ହୋଇଗଲା।"

ଏଁ ? ଜାତୀୟ ନିର୍ବାଚନ ସାଂଗରେ ଏମିତି ବାହାଘରର କଥା ଆସିଲା କେଉଁଠୁ ? ଉନ୍ମାଦରେ ଭଦ୍ରମହିଳାଙ୍କର ମୁଣ୍ଡ ବିଗିଡ଼ ଯାଇଛି ନା କଅଣ ?

କାବା ହୋଇ ଯିବାର ସ୍ୱଳ୍ପ ମିରବତା ଭିତରେ ସେ ଉଭେଇ ଗଲେଣି । ହେଲେ ତାଙ୍କ ଉଡ଼ନ୍ତା ଅଂଚଳର ଧ୍ୱନି ମୋତେ କହି କହି ଗଲା ଯେ ପାଣ୍ଡବ ପାର୍ଟି ଜିତୁ କି କୌରବ ପାର୍ଟି ଜିତୁ , ନମି ଦେଈଙ୍କର ବିଜୟ କେହି ରୋଧି ପାରିବେ ନାହିଁ । ଅସମ୍ଭବ ।

ଦୁଇ ତିନି ମାସ ପରେ । ପୃଥିବୀ ଶାନ୍ତ ହୋଇ ଯାଇଛି । ଖଣ୍ଡିଆ ଆଲ୍‌କାତରା ବୋଳା ନିର୍ବାଚନ ପୋଷ୍ଟର ମାନଙ୍କ ଉପରେ ରଂଗିନ୍ ରେଖା-ଅମିତାଭ ବଚନଙ୍କ ପୋଷ୍ଟର ମରା ହେଲଣି । ନୂଆ ମଂତ୍ରୀମଣ୍ଡଳ ମଧ୍ୟ ଗଢ଼ା ସରିଲଣି ।

କହିବା ବାହୁଲ୍ୟ ଯେ "ଆମ" ପାର୍ଟି ଜିତିଛି । ବିପୁଳ ଭୋଟ ବ୍ୟବଧାନରେ ଅପର ପାର୍ଟିମାନଙ୍କୁ ଚିତ୍‌ପଟାଙ୍ଗ କରି ଦେଇଛି । ମୁଁ ମହାଭାଇନା ସାଂଗରେ ଦେଖା କରିବା ପାଇଁ ହଜାରେ ଚେଷ୍ଟା କରି ଫେଲ ମାରିଲଣି । ସେ ଏଇଠି ଅଛି, ସ୍ୱଭାବତଃ ପ୍ରାନ୍ତର ରାଜଧାନୀ ତା'ର ହେଡ୍‌କ୍ୱାର୍ଟର୍ସ ହୋଇଛି ଏଇକ୍ଷଣି । ମଝିରେ ଶୁଣା ଯାଉଥିଲା ଯେ ସେ ବି' ଜଣେ ମନ୍ତ୍ରୀ ହେବ । କୌଣସି କାରଣରୁ ମନ୍ତ୍ରୀପଦ ମିଳିଲା ନାହିଁ, କିନ୍ତୁ ତା'କୁ ପାର୍ଟିର ଗୋଟାଏ ଉଚ୍ଚ ଆସନ ଦିଆ ଯାଇଛି । ମୋ ଜାଣି ବାରେ ତା' ଉପରେ ଏକ ବିଶେଷ ଦାୟିତ୍ୱ ଲଦି ଦିଆ ହୋଇଛି । ନିଯୁକ୍ତି, ନିୟୋଜନ, ସଂଗଠନ, ବା ସେମିତି କିଛି ଓଜନିଆ କାର୍ଯ୍ୟ, ଯାହା ଫଳରେ ତା'ର ମରିବାକୁ ଫୁରୁସତ ନାହିଁ । ଦିନଯାକ ଲୋକ ବେଢ଼ି ରହିଛନ୍ତି । ଫୋନ ସଦାବେଳେ ଏନଗେଜ୍‌ଡ୍ । ମନ୍ତ୍ରୀମାନଙ୍କର କାର ମଧ୍ୟ ଘଣ୍ଟା ଘଣ୍ଟା ଧରି ତା' ଅଫିସ ସାମନାରେ ପଡ଼ି ରହିଥିବାର ଦେଖାଯାଏ । କିନ୍ତୁ ସେ ଯାହା ପାରେ ତା' ହେଉ, ସେ ପରା ମୋ ପିଲା ଦିନର ସାଙ୍ଗ ? ମୁଁ କଣ ସହଜରେ ଆଡେଇ ହୋଇଯିବି ? ମୋର ତା'ଠୁ କିଛି ମାଗିବାର ନାହିଁ । ଖାଲି ବଧେଇ, କରମର୍ଦ୍ଦନ ସେଲି- ପ୍ରେସନ୍ ଦେଖାଯିବ ପରେ ।

ଶେଷକୁ ମୁଁ ମୋ ଦେଖିଲି କାମ କଲି । ରାଜଧାନୀର ଏକ ମନୋରମ ଶୈତ ସକାଳରେ ମାଡ଼ି ଆସିଥିବା ବୁଗେନ୍‌ଭେଲିଆ ଗଛର ଡାଳ ତଥା ସନ୍ଦେହୀ କେତେଜଣ ସଶବ—ପାର୍ଶ୍ୱଚରମାନଙ୍କର "କିଏ ?" "କୁଆଡେ ?" ଇତ୍ୟାଦିର ଅବରୋଧ ନ ମାନି ମୁଁ ମହେନ୍ଦ୍ର ବେହେରାଙ୍କ କାମରେ ଯାଇ ପହୁଂଚିଲି । ଭିଡ଼ ଲାଗିବା ପୂର୍ବରୁ ତା'ର ମୂଲ୍ୟବାନ ସମୟକୁ ମୁଠେଇ ଧରିବାକୁ ଚାହିଁଲି ।

ମୋର ନିରାଶ ହେବାର କାରଣ ନଥିଲା । ସେ ଚଉକିରୁ ଉଠି ପଡ଼ି ମୋ ସାଙ୍ଗରେ ହାତ ମିଳେଇଲେ । ସେ ମଧ୍ୟ ଚଉଡ଼ା ହସଟିଏ ଦେଲେ । ବସ୍, ବସ୍, କଣ ଖବର, ଇତ୍ୟାଦି କୁଶଳ ସମ୍ଭାଷଣରେ ମୋତେ ପୋତି ପକେଇଲେ ।

ସେଇ ମଣିଷ ଭାଇନା । ନିର୍ବାଚନର ଦଉଡ଼ମଉଡ଼ରେ ହୁଏତ ତା' ଚେହେରା ସାମାନ୍ୟ ଛୁଗୁଡ଼ିଆ, ସିଝିଗଲା ପରି ଦେଖା ଯାଉଛି । କିନ୍ତୁ ତା'ର ଢିମା ଆଖିର ଜ୍ୱଳନରେ ଏକ ଅପୂର୍ବ ଶୁଭ୍ରତାର ଆଭାସ ଦେଖି-ବାକୁ ମିଳୁଛି । ସତେକି ତା'ର ଆଦର୍ଶର କ୍ରୋଧଗୁଣ ବଦଳ ସମତୁଲ ହୋଇ ଗଲାଣି । ଆପଣା ଭିତରେ କଷ୍ଟ ପାଇବାର ପ୍ରବଣତା ଭୁଲି-ଗଲାଣି । ମୁ ତା'ର ନୂତନତମ ରୂପକୁ ପିଇଗଲି । ଭାବିଲି ଏଇଆକୁ ପ୍ରଭୁତ୍ୱ କୁହନ୍ତି । ଯାହା ମୋ ନୌକରଶାହୀ ଜୀବନରେ କେବେ ହେଲେ ଆସି ପାରିବ ନାହିଁ । କିନ୍ତୁ ମୋର ଦୁଃଖ ନାହିଁ । ମୁଁ ମଧ୍ୟ ତା'ର ଜରିଆରେ ପାଉଛି—ସେଇ ଦେବଭୋଗ୍ୟ ଲଡ଼ୁର କାଣିଚାଏ ।

ଏଇ ଆମ ଧନର ସହର । ସମଚେତନାର ସହର । ରାତି-ଅନ୍ଧାରର ଗାଁ ଗହଳ ସାଂଗରେ କିଛି ସମ୍ପର୍କ ନାହିଁ ଆମର । ସେ ଖାଲି ଗୋଟାଏ ନିମିତ୍ତ ହୋଇଥିଲା, ଘୃଣ୍ୟ କୁତ୍ସିତ ମଦଘଡ଼ା, କାମ ସରିଲେ···

ମଧୁର ଆଳାପ ଆଲୋଚନା ଭିତରେ ମୁଁ ଏକ୍ସପର ଭାବରେ ଆମ ଦୁ' ଜଣିଆ ପଣକୁ ଉପଭୋଗ କଲି । ହେଲେ ଭାବନାର ସମରେ ମଦଘଡ଼ା କୁଆଡୁ ଆସି ପହୁଂଚିଲାରୁ ମୋର ପେମି କଥା ମନେ ପଡ଼ିଲା । ଏବଂ ନଷ୍ଟ ଦେଲି । ସେଇଠୁ ମୁଁ କଥା ମଝିରେ ପଚାରି ବସିଲି—

"ଆଚ୍ଛା, ନର୍ମଦେଶ୍ଙ୍କର ଖବର କଅଣ ?"

ଏଇ ସହଜ ପ୍ରଶ୍ନରେ ତା'ର ଏଭଳି ଭାବାନ୍ତର ଆସିବ ବୋଲି ମୋର ଧାରଣା ନ ଥିଲା । ତା'ର ଭ୍ରୂହାଣୀର ଶୁଭ୍ରାଗ୍ନି ପୁଣି ନାଲି ପଡ଼ି ଆସିଲା ପରି ମନେ ହେଲା । ଏବଂ ମୁଁ ତା'କୁ କଷ୍ଟ ଦେଲି, କିଛି ଗୋଟାଏ ଭୁଲ୍ କରି ପକେଇଲି ବୋଲି ମୋର ଆଶଂକା ହେଲା । ନିଜକୁ ସଂଯତ କଲା ପରି ମୁହୂର୍ତ୍ତେ ଅପେକ୍ଷା କରି ସେ କହିଲା,

"ନର୍ମା ଦେଶ୍ ? ଦ୍ୟାଟ୍ ଓମାନ୍ ? ସେ ଆଜି ଆମ ପାର୍ଟିରେ ନାହାନ୍ତି । ଚଡ଼ା ଖାଇଛନ୍ତି ।"

ମୋର ଆଶ୍ଚର୍ଯ୍ୟ ହେବାର କଥା । ଆଶ୍ଚର୍ଯ୍ୟ ହେଲି ମଧ୍ୟ । କିନ୍ତୁ ନର୍ମା ଦେଶ୍ଙ୍କ ପରି ଜଣେ ନିଦା ଅଥଚ ଉଦ୍ଧତା ମହିଳା ଚଡ଼ା ଖାଇବେ କେମିତି, ଏଇ କଳ୍ପନାରେ ମୁଁ ଫିକ୍କିନି ହସି ପକେଇଲି । ମୋର ଚପଳତା ମହିଳାଇନାକୁ ମୋଟେ ଭଲ ଲାଗି ନଥିବ । କିଂତୁ ଅବସ୍ଥା ସୁଧାରିବା ପାଇଁ ବାଟ ନ ଥିଲା ମୋର । ସେ କହି ଚାଲିଲା,

"ଚଡ଼ା ଖାଇବେ ନାହିଁ ତ ଆଉ କଅଣ ହେବ ? ମୁଇଁ ତା'ର ବ୍ୟବସ୍ଥା କରି ଦେଇଛି । କରିବାକୁ ବାଧ୍ୟ ହେଲି ।"

ମୋର କିଛି ଉଚିତ୍ ପ୍ରତିକ୍ରିୟା ଦେଖାଇବାକୁ ପଡ଼ିବ । ତେଣୁ ମୁଁ ଯୋଗ ଦେଲି,

"ନିଶ୍ଚୟ । କୌଣସି ବ୍ୟକ୍ତି ପାର୍ଟିଠାରୁ ଦେଶଠାରୁ ବଡ଼ହୋଇ ନ ପାରେ ।"

ସେ ମୋ କଥାର ବଳ ପାଇଲା କି ନାହିଁ ଜାଣେ ନା, ଗାଡେଇ କରି କହିଲା,

"ସେଇଆ ।"

"କଣ ହେଲା ? ପାଣ୍ଠି ଯୋଗାଡ଼ କରି ପାରିଲେ ନାହିଁ ? ଭଗୁ ମହାନ୍ତି ଖସିଗଲେ ହାତରୁ ?"

"ଧ୍ୟାତ୍ ! ମହିଳାଇନା ଶଢ଼ ଉଠିଲା ପରି ହେଲା, "ଖାଲି ଭଗୁ ମହାନ୍ତି ନୁହେଁ, ତାଙ୍କରି ପରି ଆହୁରି କେତେ ସଜ୍ଜନ ଦୁର୍ଜନ ମହାଜନଙ୍କ ଠାରୁ ଟଙ୍କା ହାସଲ କରି ଆଣିଛନ୍ତି ସେ । ଗୁଡ଼ାଏ ଟଙ୍କା । କେମିତି

ଆଣିଲେ ଭଗବାନ୍ ଜାଣନ୍ତି । କିନ୍ତୁ ତାକୁ କଣ କଲେ ଜାଣିଛୁ ? ଜାଣିଛୁ ?? ରାଣୀ ମା' ତାକୁ ଉଡ଼େଇ ଦେଲେ । ରାଇଜଯାକର ଯେମି, ତେମି, ଶୁକୁଟା, ଗଂଧିଆମାନଙ୍କୁ ବାଣ୍ଟି ଦେଲେ । କାହାର ବାହାଘର, କାହାର କାମଳ, କାହାର ବିବ୍ର ସିଲଟ...''

''ଯେମି ? ସେଇ ଯେଉଁ ଯେମି—?''

''ହଁ, ସେଇ । ଆମ ସମାଜ ସେବିକା ତାକୁ ବଡ଼ ନ ହେଉଣୁ ବାହା କରି ପକେଇଲେ । ଆଇନ୍ ମାନିଲେ ନାହିଁ । କହିଲେ, ଆଇନ୍କୁ ମାନି ସେ କଣ ସଡ଼ିବ ତା' ବାପଘରେ ନା ଘରୁ ମହାନ୍ତଙ୍କ ଘରେ ଯେତେକ ଟୋକାମାନଙ୍କର ଶିକାର ହୋଇ ରହିବ ? ତଥାପି ମୁଁ ଚୁପ୍ ରହିଲି । ଅନୁମାନ କଲି ଯେ ଭଲ ଘରେ ଦେବାକୁ ଯାଇ ସେ ତା'କୁ କିଛି ଗହଣା ଗାଣ୍ଠିର ଯୌତୁକ ବି କଣେଇ ଦେଲେ । ସେଇ ପାଣ୍ଠି ଟଙ୍କା, ସଂଦେହ ନାହିଁ । ସେଥିକରେ ସନ୍ଦେହ ନାହିଁ । ଦିନେ କଣ ହେଲା ନା ଟୋକା ଧଳା ଶାଢ଼ୀ ଖଣ୍ଡିଏ ପିନ୍ଧି ପହଂଚିଲା ଆମ ପାଖରେ । ପହଂଚି ସେ' କନ କାନ୍ଦ ଉଠିଲା । କଣ ନା ବାହାଘର ମାସେ ନ ଯାଉଣୁ ତା' ସ୍ୱାମୀ ଝାଡ଼ାବାନ୍ତିରେ ମରିଗଲା । ସେ ରାଣ୍ଡ ହୋଇ ଯାଇଛି—

ଧଳାଶାଢ଼ୀ ପିଂଧା ଶୁକୁଟୀ ଝିଅର ଚେହେରା ଦିଶିଗଲା ମୋତେ । ତା'ର ସୁଁ ସୁଁ ପଣକୁ ଆଉ କେହି ରକ୍ଷା କରି ପାରିବେ ନାହିଁ । ପୁଣି ହାତରେ ଚୁଡ଼ି ନ ଥିବ ଯେ ଝଣଝଣ କରିବ !

''ଏଥିକରେ ଆମ ନମା ଦେଈ ମାତଂଗିନୀ ପରି ତେଜି ଉଠିଲେ, କହିଲେ, ଅସମ୍ଭବ । ଆମ ଯେମିର କିଛି ହେବ ନାହିଁ । ତୁ ହସିବୁ ଖେଳିବୁ ଲୋ ଝିଅ, ମୁଇଁ ତା'ର ଉପାୟ କରିବି । ସେ ଯେମିକୁ କୁଣ୍ଢେଇ ଧରି ନେଇଗଲେ ମୋ ଆଗରୁ ।

''ଏହାପରେ ମୁଁ ଯାହା ଶୁଣିଲି ତୁ ବିଶ୍ୱାସ କରିବୁ ନାହିଁ । ସେ ସେଇ ଟୋକାକୁ ପୁଣି ଥରେ ବାହା ଦେଲେ । ପୁଳାଏ ଟଙ୍କା ନେଇ ତା'ର ଶୁଣୀମାତାଲ ବାପ ମାଅଙ୍କୁ ମଙ୍ଗେଇଲେ । ପୁଳାଏ ଟଙ୍କା ଦେଇ କୋଉ ନୂଆ ବର ଯୋଗାଡ଼ କରି ଦେଲେ । ମୁହଁକୁ ଟିକିଏ ଲାଜ ନାହିଁ, ମୋତେ ଆସି ତା' ବାହାଘର ହେଲା ବୋଲି ନିମନ୍ତ୍ରଣ ଦେଲେ ।

"ପାଣ୍ଠିର ହିସାବ ନ ମିଳିବାରୁ ମୁଁ ତାଙ୍କୁ ପ୍ରଶ୍ନ କଲି । ଆଜି ସେ ଠୋ' ଠୋ' ହୋଇ ହସିଲେ । କହିଲେ, ଆପଣଙ୍କୁ ମଧ୍ୟ ହିସାବ ଦେବାକୁ ହେବ ? ଦେଶକୁ କେମିତି ଉଦ୍ଧାର କରିବାକୁ ହେବ, ତା'ର ବାଟ ଆପଣ ପାଇ ନାହାନ୍ତି ଆଜିଯାଏଁ ?"

ମୋର ହିପକ୍ରିଟ ବୁଦ୍ଧିକୁ କ୍ଷମା କରିବେ । ତା'ର ବକ୍ତବ୍ୟ ଶେଷର ସ୍ତବ୍ଧତାକୁ ସମ୍ମାନ ଦେଲି ପରି ମୁଁ କହି ପକେଇଲି,

"ମହାଶୟ ଭାଇନା, ତୋର ମନେ ଅଛି ନା ? ତୁ ଥରେ କହିଥିଲୁ ଯେ ପୃଥିବୀର ସତ୍‌ନାରୀ ଦୁଇ ଶ୍ରେଣୀରେ ବିଭକ୍ତ—"

ମୋର ବାକ୍ୟ ନ ସରୁଣୁ ସେ ଝାଂପ ଦେଲି ମୋ ଉପରକୁ । କହିଲି,

"ବନ୍ଧୁ, ତୋର ସେଇ ବଦ୍‌ଗୁଣ ଗଲି ନାହିଁ ଆଜି ଯାଏ ? କଥା କଥାରେ ନାରୀ, ମାଇକିନିଆ, ସେକ୍‌ସ ? ଆଜିକାଲି ବି ସେମିତିକା ଗପ ଲେଖୁଛୁ ?"

ଏହିଭଳି ଅପମାନ କେହି ଦେଇ ନ ଥିଲି । ସମାଲୋଚକମାନଙ୍କ କଥା ଭିନ୍ନ, କିନ୍ତୁ ଏଇ ମହାଶୟଇନା, ଯେ ସାହିତ୍ୟର ଧାର ଧାରେ ନାହିଁ··· କଣ କହିବ ବୋଲି ମୋର କାନମୁଣ୍ଡା ପାଚି ଲାଲ ହୋଇଗଲି । ତାରି ପୁରୁଣା ଗୁଣକୁ ନକଲ କଲି ପରି । କିନ୍ତୁ ମୁଁ ଓଠ ମେଲେଇ ରହି-ଗଲି । ଆଗକୁ ବଢ଼ିବାର ନୁହେଁ । ମୋର ବନ୍ଧୁ କାଲି ସକାଳେ ମନ୍ତ୍ରୀ ହେବ । ମୋତେ ମାଡ଼ ମାରିଲି କ୍ଷତି ନାହିଁ, କିନ୍ତୁ ମୋର ସାହି-ତ୍ୟକୁ ଦଖଲ କରି ବସିଲେ ମୁଁ ଯିବି କୁଆଡ଼େ ? ମୋର ଆଉ ରହିଲି କଣ ?

ତା' ଛଡ଼ା ସେ ଭୁଲ୍ କହି ନାହିଁ । ସବୁର ଉପରେ ପ୍ରଭୁଙ୍କ ॥ ଜନଗଣମନ ବିଧାତାର ସ୍ତୁତି । ନାରୀ, ମାଇକିନିଆ, ସେକ୍‌ସ, ବନ୍ୟା-ଝଡ଼ଣା ଇତ୍ୟାଦି ଇତ୍ୟାଦିର ଶେଷ କଥା । ପ୍ରାପ୍ତି ଓ ପରମ ।

ସେ ମୁହଁ ତଳକୁ କରି କାଗଜ ଖୁସ୍‌ଖୁସ୍ କଲି । ମୁଁ ବୁଝିଲି ସେ କହୁଛି ଯେ ଆପଣ ଯାଇ ପାରନ୍ତି ଏଥର । ମୋର କାମ ଅଛି ।



# ଆପଣା ସୁନା

ଧୂମ୍‌ମ୍‌-ଧଡ଼ ଧଡ଼ ଧଡ ଧଡ଼-ଉଁ ଉଁ-ଫସ୍ ! ଉଡ଼ାଜାହାଜ ଏଭଳି ଗୋଟାଏ ଶବ୍ଦ କରି ଭୂଇଁରେ ଲାଗିବ ବୋଲି ଭାବି ନ ଥିଲି । ମୋର ଦୀର୍ଘଜୀବନର ଉଡ଼ିବା ଅଭିଜ୍ଞତାରେ ପହୁଂଚିବାର ଏମିତିକା ଅଶ୍ଳୀଳ ଶ୍ଳେଷକଥା ମୋ କାନ ଶୁଣି ନ ଥିଲା ଆଜି ଯାଏଁ । ସହଯାତ୍ରୀ ମାନଙ୍କ ମୁହାଣୀରେ ମୁଁ ଭୟର ଲକ୍ଷଣ ଦେଖି ପାରିଥିଲି । ମୋ ମନରେ ମଧ୍ୟ ଭୟ ଆସି ନ ଥିଲା ବୋଲି କହୁ ନାହିଁ । କିନ୍ତୁ ଭୟ ଠାରୁ ବଳି ଅଶ୍ଳୀଳତା ମୋ ଧାତୁରେ ଗଲା ନାହିଁ । ହେଲା ଏବେ ଉଡ଼ାଜାହାଜ ହଠାତ୍ ବେମାର ହୋଇ ପଡ଼ିଲା, ସେଇଥିପାଇଁ ଓହ୍ଲେଇଲା ବେଳକୁ ଟଳଟଳ ହେଲା, ଡେଣା ଦି'ଟାକୁ ସଂଭାଳି ପାରିଲା ନାହିଁ । କିନ୍ତୁ ସମାପ୍ତିକୁ ଛୁଇଁଲା ବେଳେ ଅନ୍ତତଃ ସେଇ ମୁହୂର୍ତ୍ତରେ, ନିଜକୁ ସଂଯତ କରି ପାରିଲା ନାହିଁ ? ଅଶ୍ଳୀଳତାର ଗାଳି ଶୁଣେଇଲା ଆମକୁ ? ଶବ୍ଦଟି ଗାଳି ନୁହେଁ, ସଂହଣାର ପରିପ୍ରକାଶ, ନିବେଦନ ବୋଲି ପାଠ ପଢାନ୍ତୁ ନାହିଁ ମୋତେ । ମୋର ବିଶ୍ୱାସ ଯେ ହଜାରେ ଦୁଃଖକଷ୍ଟ ଥିଲେ ମଧ୍ୟ ଜୀବନର କେତୋଟି ମୁହୂର୍ତ୍ତ ଅଛି (ଯେ କୌଣସି ମୃତ୍ୟୁ ଯେ କୌଣସି ସମାପ୍ତି ତା'ର ଅନ୍ତର୍ଭୁକ୍ତ) ଯାହାକୁ ସୁନ୍ଦର କରି ନ ପାରିଲେ ମଣିଷ ଜୀବନ ବୃଥା । ନା, ମୋତେ ତର୍କରେ ପୂରାନ୍ତୁ ନାହିଁ । ଇଏ କଣ ରାଜନୀତି ହୋଇଛି ? ଇଏ ମୋର ଜୀବନ ଦର୍ଶନ ।

ତେଣୁ ପାଇଲଟ୍ ଭଲ୍ଲା ତଥା ସ୍ୱନାମଧନ୍ୟ ଇଣ୍ଡିଆନ୍ ଏଆର୍ ଲାଇନ୍‌ସକୁ ଛିଃ ଛିଃ କରି ମୁଁ ଉଡ଼ାଜାହାଜରୁ ଓହ୍ଲେଇଲି । ମୋ ସାଙ୍ଗରେ ବସିଥିବା ଭଦ୍ରଲୋକ ଜଣକ, ସେ ବି କଣ ଛିଃ ଛିଃ କହିଲେ ? ନହେଲେ ଏମିତି ମୁଣ୍ଡ ହଲେଇବାର ଅର୍ଥ କଅଣ ? ସେ ମଧ୍ୟ ମୋର ପରି ଅଶ୍ଳୀଳତା ବିରୋଧୀ ଏବଂ ସୁଂଦର ଜୀବନର ପୂଜାରୀ ହୋଇଥିବେ, ଏଭଳି ଧାରଣା ମୋର ମନକୁ ଆସିଲା ନାହିଁ । କାରଣ ସମସ୍ତେ ହୁଏତ ସୁନ୍ଦରକୁ ଭଲ ପାଆନ୍ତି, କିନ୍ତୁ ମୁଁ କାହାରିକୁ ଦେଖି ନାହିଁ ଯେ ମୋ ପରି

ତା'ଙ୍କୁ ଏତେ ଅଧିକ ସମ୍ମାନ ଦେଇ ପାରୁଛୁ, ତା'ଙ୍କୁ ନେଇ ଏତ୍ପ୍ରକାର ବିଶିଷ୍ଟ ଦାବୀ କରି ଆସିଛୁ ।

ସୌନ୍ଦର୍ଯ୍ୟ ବୋଧ ସାମାନ୍ୟ ସୌଖୀନତା ନୁହେଁ । ଅବା ଶାଳୀନତା ନୁହେଁ । କହିବାକୁ ଗଲେ ଏଇ ଦୁଇ ଦିଗରେ ମୋର ଯଥେଷ୍ଟ ତ୍ରୁଟି ଅଛି ବୋଲି ମୋର ସ୍ତ୍ରୀ ଅଭିଯୋଗ କରି ଆସିଛନ୍ତି । ମୋ ପାଇଁ ସୁନ୍ଦରତା ହେଉଛି ସ୍ୱଚ୍ଛତା-ସୌଖୀନତା ଶାଳୀନତାର ଉଦ୍ଦେଶ୍ୟ ଓ ପରିଣାମ । ଯାହାର ଲକ୍ଷଣ ଏକ ବିଶେଷ ମୌନତା । ଗଭୀର ଅନୁଭବର ମୌନତା । ଟିକିଏ ମୁହୂର୍ତ୍ତରେ ତାକୁ ହରାଇ ବସିଲେ ଜାଣି ରଖ ଯେ ସୃଷ୍ଟିର ନିମନ୍ତ୍ରଣ, ଓଢ଼ଣୀର ଉନ୍ମୋଚନ ମାଟି ହୋଇଗଲା । ତେଣୁ ମୁଁ ମାନୁଛି ଯେ ଉଡ଼ାଜାହାଜ ବେମାର ହୋଇଥିବା ଯୋଗୁଁ ସହଜ ଗତିରେ ଗଡ଼ି ଆସି ପାରିଲା ନାହିଁ, କିନ୍ତୁ ଗୋଟାଏ ପ୍ରଚଣ୍ଡ ଗର୍ଜନ କରିଥିଲେ ବି ମୋ ମନକୁ ପାଇଥାଆନ୍ତା । କାରଣ ଗର୍ଜନର ଅପର ପାଖ ସ୍ତବ୍ଧତା । ଏରୋପ୍ଲେନ ଜଳି ଉଠି ଧ୍ୱଂସ ହୋଇଥିଲେ ମଧ୍ୟ ବୁଝିଥାଆନ୍ତି, ଯଦିଓ ମୁଁ ସେଥିରେ ଖତମ୍ ହୋଇ ଯାଇ ଥାଆନ୍ତି । କାରଣ ଧ୍ୱଂସ ପଛରେ ଶିବ ବିରାଜମାନ । କିନ୍ତୁ ଏମିତି ଗୋଟାଏ ଧୁମ୍‌ଧୁମ୍-ଧଡ଼ ଧଡ଼ ଧଡ଼ ଧଡ଼···ହାୟ ।

ଭଦ୍ରଲୋକଜଣକ ମଧ୍ୟ ଏପରି ଅତ୍ୟୁଚ୍ଚ ମନୋଭାବର ଅଧିକାରୀ ହୋଇ ପାରିଥିବେ ? ଅସମ୍ଭବ ।

ଯାହାହେଉ ଆମକୁ ଶୀଘ୍ର ଜଣାଇ ଦିଆଗଲା ଯେ ଉଡ଼ାଜାହାଜ ଜଖମ୍ ହୋଇ ପଡ଼ିଛି, ତେଣୁ ଆମକୁ କିଛି ସମୟ ପାଇଁ ଏଇ ବାଗ୍‌ଡୋଗ୍ରା ଏୟାର୍‌ପୋର୍ଟର ହାଓ୍ୱା ଖାଇବାକୁ ପଡ଼ିବ । ସେଇଠୁଁ "ମୁଁ କହୁ ନ ଥିଲି ?" ର ବାହାଦୁରୀରେ ଯାତ୍ରୀଗୃହ ପଡ଼ିଲା ଉଠିଲା । କିଏ କହିଲା ମୁଁ ନିଜେ ଦେଖିଛି ଗୋଟାଏ ଅସ୍ୱାଭାବିକ କଳାଁର ଧୂଆଁ ଇଂଜିନ୍ ଭିତରୁ ବାହାରୁ ଥିଲା । କିଏ କହିଲା ମୁଁ ନିଜେ ଶୁଂଘିଛି ଗୋଟାଏ ବିଚିତ୍ର ଗନ୍ଧ । ଜଣେ ବିଜ୍ଞତାର ଭଙ୍ଗୀରେ ବୁଝାଇବାକୁ ଚାହିଁଲା ଯେ ତା' ନୁହେଁ, ଗୋଟାଏ ପାଖ ଟାୟାର୍ ଫାଟି ଯାଇଛି, ତେଣୁ ପାଇଲଟ୍ ଉଡ଼ାଜାହାଜକୁ ଅଣେଇ କରି ଓହ୍ଲାଇବାକୁ ଚାହିଁଲା, ସେ ହେତୁ ତେଣା ଟଳମଳ ହେଲା,

ଶେଷକୁ ଉଡ଼ାଜାହାଜ ଏମିତ ନାଥୁକନ···ଇତ୍ୟାଦ । ବାହାଦୁଖର ଅନ୍ୟ ଏବଂ ଅସଲ ଦଗ ହେଲ ଯେ ଦୁର୍ଘଟଣାକୁ ସାମାନ୍ୟ ବୋଲ ଭାବ ନାହିଁ, ଆମେ ମରୁ ମରୁ ବଂଚ ଗଲୁ । ମୁଁ ମଧ ତାଙ୍କର ଭତରୁ ଜଣେ ବୋଲଇବାର ସୌଭାଗ୍ୟକୁ ସ୍ୱୀକାର କଲ । ଭାବଲ ଗୌହାଟୀକୁ ଫେର-ଗଲେ ସ୍ତ୍ରୀଙ୍କ ଆଗରେ ମୋର ଏଇ ମହାର୍ଘ ଅନୁଭୂତକୁ ଦମ୍ଭର ସହତ ବର୍ଣ୍ଣନା କର ହେବ, କେହ କହବ ନାହିଁ ଯେ ମୁଁ ଆଡ଼୍‌ଭେଂଚର୍‌ର ଉପଯୁକ୍ତ ନୁହେଁ । କନ୍ତୁ ମୋ ମନ ମାନଲ ନାହିଁ । ସେଇ ଧଡ-ଧଡ ଧଡ ମୋ ଚେତନାରେ ଧ୍ୱନତ ହେବାକୁ ଲାଗିଲ । ମୋର ମନେ ହେଲ ଯେ ଏବଂବଧ ଆଡ଼୍‌ଭେଂଚର୍ କଦାକାର, ଭେଜାଲ୍ , ଯାହାକୁ ନେଇ କେଉଁ ଦେଉଳ କ ସମାଧି ଗଢ଼ି ହେବ ନାହିଁ ।

ଯଥାକ୍ରମେ ମୁଁ ମଧ ସେମାନଙ୍କ ପର ବୋର୍ ହୋଇ ହାଇ ମାର-ବାକୁ ଲାଗିଲ । ଉଡ଼ାଜାହାଜ ଶୀଘ୍ର ସୁସ୍ଥ ହୋଇ ଉଠିବ ବୋଲ ମନେ ହେଉ ନାହିଁ । ଘଟଣା ପୁରୁଣା ହୋଇଗଲଣି । ସହଯାତ୍ରୀମାନେ ଥାର୍ଡକ୍ଲାସ୍ ପାସେଂଜର୍‌ଙ୍କ ପର ଦେଖା ଗଲେଣି । ରଡ଼ ଗୁଡ଼ୁଥିବା ପିଲାକୁ ଜଣେକା ମାଆ ଦ'ହାତଆ ପିଟୁଛ, ସତେକ ସେ ଅନ୍ତତଃ ଏଇ କାମଟା ଉତ୍ତମରୂପେ କର ପାରବ । ପିଲାର ବାପା ସିଗାରେଟ୍ ଫୁଙ୍କି ସାରଲ ପରେ ତା'ର ଜୋତାତଳେ ପକେଇ ଦଳୁଛ । ଦଳୁଛ ତ ଦଳୁଛ । ସାପ ମୁଣ୍ଡକୁ ଛେଚୁ କଲ ପର ।

ମୋର ସ୍ୱଭାବ ଭଲ, ଏଣୁ ଭାବରେ ମୁଁ ଯାତ୍ରୀଗୃହର ସ୍ୱଚ୍ଛକାନ୍ତକୁ ତଥା ପ୍ରଶସ୍ତ ଖୋଲ ଝରକା ବାଟେ ପ୍ରକୃତକୁ ଅନଉଥିଲ । ହେଲେ ସବୁ ମାମୁଲ ଓ ଘସରା ଲାଗୁଥିଲ । ଟୁରଷ୍ଟ ଡପାର୍ଟମେଣ୍ଟର ପୋଷ୍ଟର୍‌ଠାରୁ ଆରମ୍ଭ କର ପଡ଼ଆର ନୈସର୍ଗିକ ଗାଈ ପର୍ଯ୍ୟନ୍ତ । କନ୍ତୁ ଅନଉ ଅନଉ ମୁଁ ଆବିଷ୍କାର କଲ ଯେ ଏଇ ଯେଉଁ ହମାଳୟର ପୋଷ୍ଟର, ଇଏ କେବଳ ଛବ ନୁହେଁ । ଯାହାକୁ ମୁଁ ଦେଖିଛ । ଠିକ୍ ଏଇ ଶୃଙ୍ଗ, ଏଇ ଧଳା ଗୋଳଗୋଳକା, ଧଳାରେ ନେଳ ଛିଟା···ଆରେ ଦେଖିବ ନାହିଁ କେମିତ ମ ? ଇଏ ପରା କାଞ୍ଚନଜଙ୍ଘା ? ଦାର୍ଜିଲିଙ୍ଗର କାଞ୍ଚନଜଙ୍ଘା ? ମନେ ନାହିଁ ?

ମନେ ଅଛି । ହ'ଦିନ ପାଇଁ ଦାର୍ଜିଲିଙ୍ଗ୍‌ରେ ଥିଲି ବେଳେ ଦେଖିଛି । ଦୂରରୁ ଦେଖିଲେ ମଧ୍ୟ ଦେଖିଛି, ସ୍ମୃତିରେ ଚିପି ରଖିଛି । ମେଘର ଅବଗୁଣ୍ଠନରେ ମିନିଟକରୁ ବେଶି ହେଲା ନାହିଁ, ତଥାପି ଦେଖିଛି । ସେଇଠି ମୋ ରୁମ୍‌ମେଟ୍ ଲାଲ୍ ସାହେବ ନଜର ଅଳସୁଆମି ହେତୁ ଛଅ-ଦିନରେ ଥରେ ହେଲେ ତା'ର ଦେଖା ପାଇଲେ ନାହିଁ । ଦୁଃଖର ସହିତ ସ୍ଥିର କଲେ ସେ ଘରେ ଯାଇଁ ମିଛ କହିବେ । ବିଚରା !

ବର୍ତ୍ତମାନର ପରିସ୍ଥିତିରେ ଏମିତି ଗୋଟିଏ ଦେଖିଛି-ପାଇଛିର ଅନୁଭବ ଆସିଲା କ୍ଷଣି ତା'କୁ ମୁଠେଇ ଧରିବା କଥା । ଓଠରେ ସ୍ମିତ-ହାସଟିଏ ଫୁଟି ଉଠିବା ମଧ୍ୟ ସ୍ୱାଭାବିକ ।

କିନ୍ତୁ ଇଏ କଅଣ ? ପାଖରେ ବସିଥିବା ଭଦ୍ରଲୋକଙ୍କ ଉପରେ ଆଖି ପଡ଼ିଲାରୁ ଦେଖିଲି ଯେ ସେ ମଧ୍ୟ ମୃଦୁ ମୃଦୁ ହସୁଛନ୍ତି । ମୋ ଠାରୁ ଅଧିକ । ପୁଣି ଦେଖିଲି ଓ ଚକିତ ହେଲି ଯେ ଇଏ ସେଇ । ମାନେ ସେଇଜଣକ ଯେ ଉଡ଼ାଜାହାଜରୁ ଓହ୍ଲେଇଲା ବେଳେ ସ୍ୱଗତ ମୁଣ୍ଡ ହଲଉ ଥିଲେ । ମୋ ପାଖରେ ପହଂଚିଲେଣି କେତେବେଳୁ । କଥା କଅଣ ? ଭଦ୍ରଲୋକ କଣ ମୋତେ ନକଲ କରିବାକୁ ଚାହାନ୍ତି ?

ମୁଁ ଅନେଇଲି ତାଙ୍କ ଆଡ଼କୁ । ପ୍ରଥମେ ଚେହେରା । ସଂସାରର ଯେ କୌଣସି ଲୋକ ସହିତ ମୁକାବିଲା କରିବାକୁ ଥିଲେ ମୂଳରୁ ତା'ର ଚେହେରା ଜଣେଇ ଦେବ ଯେ ସେ ତୁମର ପ୍ରଭୁସ୍ଥାନୀୟ ନା ଭୃତ୍ୟସ୍ଥାନୀୟ (ସମାନ-ସମାନ ବୋଲି କିଛି ନାହିଁ ଦୁନିଆରେ) । ପୋଷାକ ପରିଧାନ ଦୈର୍ଘ୍ୟ ପ୍ରସ୍ଥ ନାକର ଉଠାଣି ଚିବୁକର ଗଢାଣିରେ ବିଶେଷ କିଛି ଯାଏ ଆସେ ନାହିଁ । ଏବଂ ହୁଏତ ପରିସ୍ଥିତି ଅନୁଯାୟୀ ସେ ତୁମର ହାକିମ ହୋଇପାରେ କି ଚାକର । କିନ୍ତୁ ଅସଲ ହେଉଛି ତା'ର ବ୍ୟକ୍ତିତ୍ୱ-ବିଜୁଳି ଯାହାର ଗୁଣ କପାଳର କୁଞ୍ଚନ, ଓଠର ସ୍ଫୁରଣ, ଆଖିଡୋଳାର ଦୋଳନ, ଆଖିପତାର କଂପନ ତଥା ଅନ୍ୟାନ୍ୟ ଅଂଗପ୍ରତ୍ୟଂଗର ଭାଷାରୁ ଜଣା ପଡ଼ି ଯାଏ । ସମସ୍ତେ ଅବଶ୍ୟ ବୁଝିବେ ନାହିଁ, କିନ୍ତୁ ମୋର ସେଦିଗରେ ଅଭିଜ୍ଞତା ଅଛି, ତାଛଡ଼ା ମୁଁ ବିହେଭିଅରିଆଲ୍ ସାଇକୋଲଜି, ବ୍ୟବହାର ଗତ ମନସ୍ତତ୍ତ୍ୱ ନେଇ ଅନେକ କିଛି ପଢ଼ିଛି କି ନା—

ମୁଁ ପ୍ରଥମ ଦେଖାରୁ ଧରି ନେଲି ଯେ ସେ ଉଚ୍ଚାଭିଳାଷୀ। କାହିଁକି କେମିତି ବୋଲି ପଚାରନ୍ତୁ ନାହିଁ। ତେବେ ତା'ର ଗୋଲ୍ ଗୋଲ୍ ଆଖିର ଆକୃତି, ଏବଂ ଓଠରେ ସରି ଲାଗିଯାଇଥିବା ପରି ହସ, ଯାହାକୁ ସେ ସହଜେ ପୋଛିବାକୁ ଚାହେଁ ନାହିଁ, ଏଇ ଦୁଇଟି ଲକ୍ଷଣ ବୋଧହୁଏ ମୋର ସିଦ୍ଧାନ୍ତକୁ ସୁଗମ କରିଦେଲା। ମୋର ମନେ ହେଲା ଯେ ସେ ଅଧିକାଂଶ ହେବାକୁ ନାରାଜ, ବରଂ ଅର୍ପିତ, ସେବିତ, ଚହୁଁ ଅଧିକୃତ ହେବାକୁ ଚାହେଁ। ସେ ହାକିମ୍ ଭୂମି ପାଖରେ, ପ୍ରଶ୍ନ ହେଉଛି କେଉଁ ଭାବରେ ଭୂମିକୁ ଖୁସ୍ (ଅଥବା ବୋର୍) କରି ପାରିବ। ଲଣ୍ଠାଏଟିଏ ଯାଇଲେ ହେଲା।

ନା, ନକଲ୍ କରିବାର ସାହସ ନାହିଁ ସ୍ୱା'ର। ତେଣୁ ଉଦାରତା ପଦଂକ ଲଣ୍ଠାଏଟିଏ ଦେଲି। ପଚାରିଲି, "ଆପଣ ଦିଲ୍ଲୀ ଯିବେ? ନା ପାଟଣା?"

ଆମେ ଦୁହେଁ ଦିଲ୍ଲୀ ଯିବୁ, ଏଇ ସମଦଶାପନ୍ନତାର ମୂଳଦୁଆ ଉପରେ କେତେ ଉଚ୍ଚର କୋଠା ବାଢ଼େଇ ହୋଇ ଥାଆନ୍ତା କେଜାଣି, କିନ୍ତୁ ମୋର ମନେ ହେଲା ସେ ଇଟା ଉପରେ ଇଟା ଝଞ୍ଜିବାକୁ ଚାହେଁ ନାହିଁ। ଏକାଥରକେ କୁଦା ମାରି ଛାତ ପକେଇବାକୁ, ମାନେ ମୋର ବନ୍ଧୁତା ହାସଲ କରିବାକୁ ଚାହେଁ। ନ ହେଲେ ଏମିତି ଗୋଟାଏ ମନ୍ତବ୍ୟ ଛାଡ଼ି ଦେଇ ନ ଥାଆନ୍ତା, ଯଦ୍ଦ୍ୱାରା ମୁଁ ତା' କଥାରେ ଲାଖିଯିବି, ପ୍ରଶ୍ନ ପଚାରିବି, ଏବଂ କ୍ରମଶଃ ତା' ଠେଇଁ ବାନ୍ଧି ହୋଇଯିବି। କହିଲା—

"ପ୍ଲେନ୍ ରହିଯିବ ଏଇଠି। ରାତିଟା ଶିଲିଗୁଡ଼ିରେ କଟେଇବାକୁ ହେବ।"

ମୁଁ "ଏଁ?" ବୋଲି ପାଟି ଖୋଲିବା ପୂର୍ବରୁ ସେ ପୁଣି ଗୋଟାଏ ଘୋଷଣା କଲା।

"ମୁଁ ଜାଣିଥିଲି ଏମିତି ହେବ। ଉପାୟ ନାହିଁ।"

ସେଇଠୁ ପୁଣି ସେଇ 'ହେଲା ନାହିଁ'ର ମୁଣ୍ଡହଲା। ତା' ସାଙ୍ଗକୁ ହସ ଖଣ୍ଡେ, ନାସ୍ତିବାଦକୁ ଆନନ୍ଦର ସହ ଗହେଇଲା ପରି। ସଚେତନ ପରିସ୍ଥିତି ଦୁଃଖଦ ହେଲେ ମଧ୍ୟ ସେଥିରେ ଗୋଟାଏ ମଜା କଥା ରହିଛି। ରହସ୍ୟ। ତା'କୁ ମାଲୁମ୍ ଥିଲା। ତେଣୁ ଦୁଃଖରେ ମଧ୍ୟ ହସ ଅନିବାର୍ଯ୍ୟ।

ଖର ପଡ଼ୁଛି, ବର୍ଷା ହେଉଛି, ବାଲୁଆ ନାନା ବାଧା ହେଉଛି ! ଏଥର ସ୍ପଷ୍ଟ ଜଣାଗଲା ଯେ ସେ ମୋତେ ନକଲ କରୁନାହିଁ, ଏଇ ବିଚିତ୍ର ବ୍ୟବହାର ତା'ର ନିଜସ୍ୱ । କିନ୍ତୁ ମୁଁ କ'ଣଟା କରିବି ତା' ବୈଚିତ୍ର୍ୟକୁ ନେଇ ?

ତା'କୁ ଜେରା କରିବାର ସୁବିଧା ମିଳିଲା ନାହିଁ । ସେ ମୋତେ ରେସ୍ତୋରାଁ ଘରେ କ'ଣ ଖାଇବାକୁ ଡାକିଲା । ମୁଁ ମନା କରି ପାରିଲି ନାହିଁ । କ'ଣ ସାଙ୍ଗକୁ କଟ୍‌ଲେଟ୍ ମଗେଇଲା, କହିଲା ଏଠିକା କଟ୍‌ଲେଟ୍‌ର ସ୍ପେଶାଲ ସୁଆଦ, ସେ ଅନେକଥର ଖାଇଛି । କହିଲା ସିକମ୍‌ର କଟ୍‌ଲେଟ୍ ଭଳି, କଡ଼ା ବାସ୍ନା । ମୁଁ ତା' କଥାର ମର୍ମ ବୁଝିଲି ନାହିଁ । କିନ୍ତୁ ଲାଖିଗଲି ତା' ପାଖରେ । ବେଳେ ବେଳେ ମୋର ଏମିତି ବି ମନେ ହେଲା ଯେ ହୋଇପାରେ ସେ ଭୃତ୍ୟ ସ୍ଥାନୀୟ, କିନ୍ତୁ ଜବରଦସ୍ତ ଭୃତ୍ୟ, ତା'ଠୁଁ ରକ୍ଷା ପାଇବା ସହଜ ନୁହେଁ ।

ଶେଷକୁ ପ୍ଲେନ୍ ଜନିତ ବିପତ୍ତିକୁ ଭୁଲିଯିବାକୁ ପଡ଼ିଲା । କାରଣ ସେ କଥା କହି ଚାଲିଛି । ପ୍ରୌଢ଼ିଆ ଗେଧେକା ମଣିଷଟିଏ, ଗୋଲ୍ ଗୋଲ୍ ଆଖି, ମୁଣ୍ଡରେ ଚୂନ ଚୂନ ବାଳ, ନାକ ତଳେ ରୁଚି ପ୍ରମାଣେ ନିଟ, ଉଁଚ ନାକ, ମାଚ, କପାଳ, ଭାଷାମିଶା ହସ, ହସ ମିଶା ଭାଷା··· ଭୃତ୍ୟବରକୁ ଶିକାର ଜୁଟି ଯାଇଛି, ସେ ମୋତେ ଆବୁରି ବସିଛି, ଆଙ୍କୁଡ଼ି ଧରିଛି···ହଉ ହଉ ସେଇଆ ହେଉ, ମୋର ବଳ ନାହିଁ ଯୁଝିବି ତା' ସାଙ୍ଗରେ···ମୁଁ ଶୁଣିଗଲି । ଅଧା-ଆମୋଦର ଆଗ୍ରହ କରି ଶୁଣିଗଲି ।

ବୁଝିଲି ଯେ ସେ ସିକମ୍‌ରୁ ଆସୁଛି । ଭାରତ ସରକାରଙ୍କ ତରଫରୁ ଅଛି ସେଇଠି । ପୋଲିସ୍ ବିଭାଗ ନୁହେଁ, କିନ୍ତୁ ସେମିତି କିଛି । ସି. ଆଇ. ଡ଼ି ? ସି. ବି. ଆଇ ? ଯାହା ବୁଝୁଛ ବୁଝ । ତେବେ ଭାବିଲି ଯେ ତା'ପରି ହାସ୍ୟାସ୍ପଦ (ତଥା ବିରକ୍ତିକର) ଲୋକଟି କଦାପି କର୍ତ୍ତୃପକ୍ଷ ହୋଇ ନଥିବ । କିରାଣୀ ହୁଏତ ସାନ ଅଫିସର୍, ଆଜ୍ଞାବହ । ଏକୁଟିଆ ଥାଏ, ସ୍ତ୍ରୀ ପିଲାଙ୍କୁ ଆଣିବାର ସୁବିଧା ନାହିଁ । ସ୍ତ୍ରୀ ଦିଲ୍ଲୀରେ ଅଲ୍-ଇଣ୍ଡିଆ ରେଡ଼ିଓରେ କାମ କରନ୍ତି, ଅର୍ମିତା ଗୁପ୍ତ । କହିଲା, ଆପଣ ତାଙ୍କ ନାଆଁ ଶୁଣିଥିବେ ନିଶ୍ଚୟ, ତାଙ୍କ ବେତାର ନାଟିକା ପ୍ରସିଦ୍ଧ, ରାମ୍‌ଲୀଳା ରାମ୍‌କାହାଣୀ, ସଫେଦ୍ କୌୟା, ରାତ୍‌ଭର୍ ଧୂପ··· ହେଁ ହେଁ, କୋଉଠୁ

ଆଇଡ଼ଆମାନ ତାଙ୍କ ଆଣନ୍ତି ଭଗବାନଙ୍କୁ ଜଣା ! ···କେଜାଣି କେତେ ପୁରସ୍କାର ମିଳଚ୍ଛି ତାଙ୍କୁ, ଥରେ ନିଜେ ପ୍ରେସିଡେଣ୍ଟ ପୁରସ୍କାର ବଢ଼େଇ ଦେଇଛନ୍ତି ତାଙ୍କ ହାତକୁ । ଆଜ୍ଞା, ସେଇ ସୁଯୋଗରେ ମୁଁ ବି ପ୍ରେସିଡେଣ୍ଟଙ୍କ ସାଙ୍ଗରେ ପଦେ କଥାଭାଷା ହୋଇ ପାରିଲି ।

କହୁଲି, ମା'ଆ ଯେମିତି ଝିଅ ସେମିତି । ନା, ଆହୁରି ଅଧିକ ! ସେଇଠୁଁ ତା'ର ମାର୍କାମରା 'ନୋହୁଲି !'ର ମୁଣ୍ଡହଲା ପୁଣି ଦେଖା ଦେଲା । କିନ୍ତୁ ମୁଁ ଏଥର, ଅର୍ଥାତ୍ କାହାଣୀ ଶେଷରେ, ତା'ର ତାତ୍ପର୍ଯ୍ୟ ବୁଝିଲି । ପରାଜୟରେ ଆନନ୍ଦ କେଉଁଠୁ ଆସିଲା, ଖବରବର୍ଷାର ଚମତ୍କାରରେ ବଲୁଆ ନନା କେମିତି ବାହା ହୋଇ ପଡ଼ିଲା ତା'ର ଭେଦ ପାଇଲି । ଶୁଣନ୍ତୁ ମନ ଦେଇ । କହୁଲି—ମୋ ଝିଅ ନାଆଁ ପ୍ରଣୀତା ତା' ମା'ଆ ନିଜେ ବାଛି ଦେଇଛି ତା' ନାଆଁ । ମୁଁ ବାପ ବୋଲି କହୁ ନାହିଁ, କିନ୍ତୁ ଝିଅଟା ଯେମିତି ସୁନ୍ଦରୀ, ସେମିତି ଚତୁରୀ । ଗୁଣବନ୍ତୀ । କିନ୍ତୁ ଭାରି ଦୁଷ୍ଟ । ମୋଟେ କଥା ମାନିବ ନାହିଁ । ମୋତେ ହଇରାଣ କରିବ । ଚିଡ଼େଇବ । ଏବେ ଆଉ ପିଲା ହୋଇ ନାହିଁ ଯେ ମୋର ଚଷମା ଲୁଚେଇ ଦେବ, କାଗଜ ଚିରିଦେବ । ତଥାପି କ'ଣ କେମିତି କମିଆଁ କରେ କେଜାଣି । ମୁଁ ତା' ପାଇଁ କିଛି ପ୍ଲାନ କରିବାକୁ ଗଲେ ଝିଅ ତା'କୁ ଭଣ୍ଡୁର କରିଦେବ । ଶେଷକୁ ତାରି କଥା ରହିବ । କିଛି ନା କିଛି ଗୋଟାଏ ହେବ, ମୋର ପେଟ ବଥେଇବ, ଅସ୍ୱାଭାବିକ ବର୍ଷା ହେବ, ଟ୍ୟାକ୍ସି ମିଳିବ ନାହିଁ, ଇତ୍ୟାଦି । ନିଘଣ୍ଟ ବିଗିଡ଼ି ଯିବ—ବୁଝିଲେ ନା ? ଫଳରେ ସେ ମିରାଣ୍ଡା ହାଉସ୍‌ରେ ନାଆଁ ଲେଖେଇ ପାରିବ ନାହିଁ, ତା'ର ଇଚ୍ଛା ଅନୁଯାୟୀ ଗାର୍ଗୀରେହିଁ ବି.ଏ. ପଢ଼ିବ, ପାର୍ଟିକୁ ଯାଇ ହେବ ନାହିଁ, ତା' ସାଙ୍ଗରେ ବସି ଟି, ଭି, ଦେଖିବାକୁ ପଡ଼ିବ, ମାର୍କେଟରେ ପଛବାଟ ଦେଇ ଯିବା ଛଡ଼ା ଅନ୍ୟ ଉପାୟ ନାହିଁ, ସେଇ ବାଟେ ତା'ର ପ୍ରିୟ ଏବଂ ଅଖାଦ୍ୟ ଭେଲ୍‌ପୁରୀକୁ ସମ୍ମାନ ଦେଖେଇବାକୁ ହେବ···ଆଜ୍ଞା, ବୁଝନ୍ତୁ ନାହିଁ ତା' କଥା ! କିନ୍ତୁ ଆଉ ଯାହା ହେଲା ନ ହେଲା, ତୁ ଜିତିଲୁ ମୁଁ ହାରିଲି ବେଶ୍, ତା' ବୋଲି ତୁ ନିଜ ବାହାଘରକୁ ନେଇ ଖେଳିବୁ ମୋ ସାଙ୍ଗରେ ? ପାଜି ଟୋକୀ ! ( ଗୋଲ୍ ଗୋଲ୍ ଆଖିର କୃତ୍ରିମ ରାଗ ଓ ମୁଚୁକୁନ୍ଦ ହସ ) ଆଜ୍ଞା ଆପଣ ବିଶ୍ୱାସ କରିବେ ନାହିଁ, ମୁଁ

ଯେତେଥର ତା’ ବାହାଘର ବିଷୟରେ ମସୁଧା କରିବାକୁ ଯାଇଛୁ, କିଛି ନା କିଛି ହୋଇଛି ଏମିତି । କାହିଁକିନା ସେ ଥରେ ଫାଜିଲାମି କରି କହିଥିଲି ଯେ ବାପା, ମୋ ପାଇଁ ବର ଖୋଜିବ ନାହିଁ, ସାବଧାନ । ମୁଁ କୋଉ ଏମ୍. ପି. ପି. ମାନେ ମେଲ ସାଉଭିନିଷ୍ଟିକ୍ ପିଗ୍‌କୁ ବାହା ହେବି ନାହିଁ, ମୁଁ ନିଜେ ମୋ ବରକୁ ବାଛିନେବି, ବାଛି ନ ପାରିଲେ ଅଭିଆଡ଼ୀ ରହିବି । ମୁଁ ତା’ କଥାକୁ ହସି ଉଡ଼େଇ ଦେଇଛି, କିନ୍ତୁ ଆପଣ ବିଶ୍ୱାସ କରିବେ ନାହିଁ ଯେ ମୁଁ ଯେତେଥର ବାହାରିଛି···

ବିଶ୍ୱାସ କରୁଛି । ଆପଣଙ୍କର ହଠାତ୍ ପେଟ ବିଥେଇଛି । ଟ୍ୟାକ୍ସି ମିଳି ନାହିଁ । ସେହି ସମୟରେ ଟ୍ରେନ୍ ଫେଲ ହୋଇଛନ୍ତି । ଏବଂ ଆଜି ପ୍ଲେନ ଶୁଖିଲାଟାରେ କ୍ରାସ୍ଲ୍ୟାଣ୍ଡ ହୋଇ ପଡ଼ିଛି । ସବୁ ଆପଣଙ୍କର ସେଇ ସୁନ୍ଦରୀ ଚତୁରୀ ପ୍ରଣୀତାର ଉଆଣ । ଆପଣ କଣ ସତରେ ଏବେ ବୋକା ନା ମୋତେ ବୋକା ବୋଲି ଠଉରେଇଛନ୍ତି ?

ନା ଆପଣ ଝିଅକୁ ଏତେ ଭଲ ପାଆନ୍ତି ଯେ···ଠାକୁର ପରି ଭଲ ପାଆନ୍ତି ?

ନିଜକୁ ବୁଝାଇଲି ଯେ ସେ ଭଡ଼ାଟିଆ ସ୍ଥାନୀୟ, ତେଣୁ ତା’ର କଥାରେ ରାଗି ଉଠିବା ଅଶୋଭନୀୟ । ମୋଟ ଉପରେ ସେଥିରେ ମୂଲ୍ୟ ଦେବା ଉଚିତ ନୁହେଁ । କିନ୍ତୁ ମନ ଛକପକ ହେଉଥିଲା କହିଦେବି । କହିଦେବି ଯେ ମଜା ବାହାରିଯିବ । ମୋର ମଧ୍ୟ ସ୍ତ୍ରୀ ଅଛନ୍ତି । ଏବଂ ପୁଅଝିଅ । ତାଙ୍କ ରୂପଗୁଣ କେମିତିକା ଜାଣିଲେ ତୋ ପାଟି ବନ୍ଦ ହୋଇଯିବ ଏକାଥରକେ···

କିନ୍ତୁ ଲୋକଟାର ପାଟି ବନ୍ଦ ହେଉ ନାହିଁ । ପ୍ରକୃତପକ୍ଷେ ନିଜକୁ ଏବଂ ନିଜ ପରିବାରକୁ ନେଇ ଏଜି ଆକସ୍ମିକ ସହଯାତ୍ରୀ ସାଙ୍ଗରେ ଏମିତି ବକର ବକର ହେବାର ଅଶ୍ଳୀଳତାହିଁ ମୋତେ ବିଶେଷ କଷ୍ଟ ଦେଲା । ତୁଚ୍ଛ, ଉଡ଼ାଜାହାଜର ଧୂମ୍-ଧଡଧଡ଼ଧଡ଼ ପଛକୁ ଆଉ କଣ ଆଶା କରିଥିଲି ? ବୈରାଗ ? ଆଶାବିରୀ ?

ତେଣୁ ତା'କୁ ଆଦ୍ଧର ଆଦ୍ଧର କହିବାକୁ ହେଲା । ଜଳପାନ ସାରି ଯାତ୍ରୀଗୃହକୁ ଫେରି ଗଲାପରେ ମଧ୍ୟ ସେ କହି ଚାଲିଲା ଓ ମୁଁ ଶୁଣିଗଲି । ବିକଳ ହୋଇ ଲାଉଡ୍‌ସ୍ପିକର୍‌ର ଫାମ୍ପୁଲା ମୁହଁକୁ ଅନେଇଲି ମଝିରେ ମଝିରେ, କେତେବେଳେ ସେ ଏଇ ପ୍ରତୀକ୍ଷା ପ୍ରହରକୁ କାଟି ଦେବ ଓ ମୋତେ ଉଦ୍ଧାର କରିବ । କହିବ ଚାଲନ୍ତୁ ଏଥର ଦିଲ୍ଲୀ ଯିବା । କିମ୍ବା କହିବ କ୍ଷମା କରନ୍ତୁ, ଆଜି ରାତିଟା ଶିଳଗୁଡ଼ି । ସେଇଠୁଁ ଗହଳି ଲାଗିବ, ଆଉ ମୁଁ ଖସିଯିବି, ଆପଣା ରାସ୍ତା ଧରିବି । କିନ୍ତୁ ବର୍ତ୍ତମାନ ପାଇଁ ଶୁଣିବାକୁ ହେଲା—

"ଆଜ୍ଞା, ଏଇଥର ଆଶା କରିଥିଲି ଯେ ମୋ ପ୍ଲାନ ସଫଳ ହେବ । ଏମିତିକା ବରପାତ୍ରକୁ ଛାଡ଼ିବାର ନୁହେଁ ବୋଲି ମୁଁ ଛଅମାସ ହେଲାଣି ପ୍ଲାନ ତିଆରି କରିଛି । ପାଞ୍ଚ ଅଗଷ୍ଟ ପ୍ରଥମ ସପ୍ତାହରେ ଆମେରିକାରୁ ଆସିବ ଦିଲ୍ଲୀକୁ, ମୋଟେ ସାତଦିନ ରହିବ, ଏବଂ ତା'ରି ଭିତରେ ମୋତେ ତା'କୁ, ତାର ବାପାମାଆଙ୍କୁ ଓ ତା'ର ମାମୁଙ୍କୁ —ମାମୁ ହେଉଛନ୍ତି ପୁରୁଣା ଆଇ. ଏ. ଏସ୍, ଆଇ. ସି. ଏସ୍‌ର ପାଖାପାଖି, ରିଟାୟାର୍ କଲେଣି —ଧରିବାକୁ ହେବ । ପିଲ (ପ୍ରଣୀତା) ସାଙ୍ଗରେ ଭେଟ କରେଇବାକୁ ହେବ । ପୁଣି ଆମ ସ୍ତ୍ରୀଙ୍କୁ ମଧ୍ୟ ମନେଇବାକୁ ହେବ । ସେ କଣ ସହଜେ ଧରାଛୁଆଁ ଦେବେ ? ଏକେ କାମରୁ ଫୁରୁସତ ନାହିଁ, ତା'ଛଡ଼ା ସେ ମଧ୍ୟ ନାରୀଜାଗରଣ ବାଲି, ହଜାରେ ପ୍ରଶ୍ନ କରିବେ (ଦୀର୍ଘଶ୍ୱାସ, ପାରିହେବନାହିଁ ଭାବର ଆଉ ଗୋଟିଏ ଢଙ୍ଗ)··· ଆଜ୍ଞା ନିଜ ଫ୍ୟାମିଲି ଏତେ ବେଶି ପାଠୁଆ ବୁଦ୍ଧିଆ ହେଲେ ମହାବିପଦ—ନୁହେଁ କି ?

ମୋ ପାଟିରୁ ପଦେ ବାହାରି ଆସୁଥିଲା, କିନ୍ତୁ ସେ କଥାର ମୋଡ଼ ବଦଳେଇ ଦେଲା, କହିଲା—

"ଯାହାହେଉ ଛଅମାସ ହେଲାଣି ପ୍ଲାନ କରିଛି । ସହଜେ ସିକିମ୍‌ରୁ ବାହାରି ଠିକଣା ସମୟରେ ପହଞ୍ଚିବା କଷ୍ଟ । ରୋଡ୍‌ରେ ଆସିଲେ ଲ୍ୟାଣ୍ଡ ସ୍ଲାଇଡ୍, କେତେବେଳେ କେଉଁଠି ଅତଡ଼ା ଖସିବ କହି ହେବ ନାହିଁ । ବାଗ୍‌ଡୋଗ୍ରାରୁ ପ୍ଲେନ୍ ପାଇଁ ରିଜର୍ଭେସନ୍ ମିଳିବା ମୁସ୍କିଲ୍ । କିନ୍ତୁ ମୁଁ ସବୁ ଠିକ୍‌ଠାକ୍ କରେଇଥିଲି । ଲ୍ୟାଣ୍ଡସ୍ଲାଇଡ୍‌ରୁ ବର୍ତ୍ତିଗଲି, ଗୌହାଟୀରେ

ଗୋଟାଏ କାମ ପକେଇ ସେଇଠୁଁ ସ୍ପ୍ଲେନ୍‌ଟିକେଟ୍ କାଟିଲି...କିନ୍ତୁ କ'ଣ ହେଲା ଦେଖିଲେତ ? ସେ ଆମ ସମସ୍ତଙ୍କ ନାକକାନ କାଟି ଛାଡ଼ିଦେଲା । ମୁଁ ଜାଣେ । କାଲି ବାରଟା ଗୋଟାଏ ପୂର୍ବରୁ ପ୍ଲେନ ମିଳିବ ନାହିଁ, ଦିଲ୍ଲୀରେ ପହଞ୍ଚୁ ପହଞ୍ଚୁ ରାତି, ପାଖର ମାମୁ ପଅରଦିନ ଫେରଯିବେ ବମ୍ବେ...ହେ ଭଗବାନ୍ ! ଆଜ୍ଞା ଏଇ ଦିନଟାକୁ ନେଇ କଣ କରିବ କୁହନ୍ତୁ ଦେଖି ? ସେ କଣ ସତରେ ଅଭିଆଡ଼ୀ ରହିଯିବ ? ଏତେ ପାଠ ଶାଠ ପଢ଼ିଲା, କିନ୍ତୁ ବୁଢା ବାପ ପ୍ରତି ଟିକିଏ ଦୟା ନାହିଁ ତା'ର ?

ଆହା, ଭକ୍ତର କି ଅଭିମାନ ! ଜଗବନ୍ଧୁ ତୁମେ ବଡ଼ ଦାରୁଣ ହେ...ଟିକିଏ ଲାଜ ନାହିଁ ତମ ମୁହଁକୁ ? ମୁଁ ନ ପଚାରି ରହି ପାରିଲି ନାହିଁ ।

"ପ୍ରଣୀତା କେଉଁ ଯାଏଁ ପାଠ ପଢ଼ିଛନ୍ତି ?"

"(ହଠାତରେ ସଚେତନ ପରି ବିନୀତ ଭଂଗୀରେ) ଆଜ୍ଞା, ଏମ୍.ଏ ସେକେଣ୍ଡ କ୍ଲାସ୍ ଫାଷ୍ଟ୍ । ଇଂଗ୍ଲିଶ ।"

କହିବ କି ମୋ ଝିଅ ଏମ୍.ଏ ଫାଷ୍ଟ କ୍ଲାସ ? ପୁଣି ଇଂରେଜୀ !

"କଅଣ କରୁଛନ୍ତି ଏଇକ୍ଷଣି ?"

"(ହସି ହସି) କିଛି କରୁ ନାହିଁ, ଅଥଚ ମୁହୂର୍ତ୍ତେ ବସି ରହୁ ନାହିଁ । କେତେବେଳେ ବେତାର ନାଟିକା ଲେଖୁଛି ମାଆ କଥାରେ ପଡ଼ି । କେତେବେଳେ ଥିଏଟର୍ କରୁଛି । ଖବରକାଗଜ ସଂପାଦକ ମାନଙ୍କ ପାଖକୁ ଲମ୍ବା ଲମ୍ବା ଚିଠି ଲେଖୁଛି । କହୁଛି କ'ଣ ନା ମୁଁ ବୁଝି ବୁଝି ଯିବ, ଯାଉ ଦି'ତିନ ବର୍ଷ, ପରୁଆ ନାହିଁ । ତା'ପରେ ଏମିତି ଗୋଟାଏ କାମ ଧରିବ, ଏମିତି ନାଆଁ କରିବ ଯେ ତମକୁ ଜାଣିବେ ସମସ୍ତେ । ଯେ ତମେ ମୋ ବାପା । ଆଜ୍ଞା, ଥଟ୍ଟାରେ କୁହେ ସିନା, ମୁଁ ଜାଣେ ତା'ର ଅସାଧ୍ୟ କିଛି ନାହିଁ ।"

ମୋ ଝିଅ ଡକ୍ଟରେଟ୍ କରୁଛି । ସଦା ପାଠରେ ଶେଷ କଥା । ତୋ ଦିନ ପରି ଫୁଲୁରୁ ଫୁଲୁରୁ ହେଉ ନାହିଁ । କିନ୍ତୁ ମୂର୍ଖକୁ ବୁଝେଇ ହେବ ନାହିଁ । କହି ଚାଲିଛି—

"ପିନ ସିନା ଏମିତ, ତା' ସାନ ଭଉଣୀ ଜନ ଆଉ ଏକ କସମର। ସେ ବ ମହା ପାଠୁଆ। କନ୍ତୁ ସାଇନ୍‌ସ୍ ନେଇଛି। କହୁଛି ଇଂଜନଅର୍ ହେବ। କୋଉଠି ଲେଖା ହୋଇ ନାହିଁ ଯେ ଝିଅମାନେ କୋଠା ତୋଳ ପାରବେ ନାହିଁ, ବନ୍ଧ ବାନ୍ଧ ପାରବେ ନାହିଁ।"

ମୁ ତାକୁ ଧୀରକଣ୍ଠରେ ଚେତେଇ ଦେଲ ଯେ ଆଜକାଲ ଭାରତରେ ଅନେକ ଲେଡ଼ି ଇଂଜନଅର୍ ହେଲେଣି, ଅର୍ଥାତ୍ ଇଏ କଛି ବଡ଼ କଥା ନୁହେଁ। କନ୍ତୁ କହବାକୁ ଚାହିଁଲ ନାହିଁ ଯେ ମୋର ପୁଅ ବ ଇଂଜନଅରଙ୍ଗ୍ ପଢ଼ୁଛି ଏବଂ ଫାଷ୍ଟକ୍ଲାସ ମାର୍କ ରଖୁଛି। କାହିଁକନା ଲୋକଟାର ମୁଣ୍ଡରେ ପଶିଛି ଯେ ଯେତେହେଲେ ପୁଅ ପୁଅ, ଝିଅ ଝିଅ। ଅତଏବ ତା' ଜନର କରାମତ ମୋ ପୁଅଠାରୁ ବେଶି। ସେଇଠୁ ମୋ ମନରେ ଆସିଲ ଯେ ବୋଧହୁଏ ତାଙ୍କର ପୁଅ ନାହିଁ। ସେଇଥିପାଇଁ ଏମିତ ନାରୀଗତପ୍ରାଣ ହୋଇ ପଡ଼ୁଛି, ଝିଅଭାରଜାଙ୍କୁ ନେଇ ବଢ଼େଇ କରୁଛି। ତେଣୁ ପଚାରଲ—

"ଆପଣଙ୍କର ପୁଅ ନାହାନ୍ତ ?"

"ଅଛନ୍ତ ଆଜ୍ଞା ଅଛନ୍ତ" କହ ସେ ହୋ' ହୋ' ହୋଇ ହସି ଉଠିଲ, "ଗୋଟିଏ ବୋଲ ପୁଅ, ସବୁଠୁ ସାନ, କନ୍ତୁ ତା'ର ପ୍ରତାପ କାହିଁରେ କଅଣ। ପାଠ ତ ପାଠ, ଖେଳକୁଦରେ ପହିଲ ନମ୍ବର, ତା' କ୍ଲାସ୍‌ରେ ଲିଡ଼ର୍ ବନଛି। କହୁଛି ତା' ନାଁ ଶାମ ଆଉ ସେ ଶାମ୍ ମାନେକ୍‌ଶାଙ୍କ ପର ହେବ, ସେ ବ ଗୋଟାଏ ଦେଶ ଜତବ। ...ଆଜ୍ଞା, ମୁଁ ଧନ୍ୟ ଯେ ଭଗବାନ୍ ମୋତେ ଅମି ତା ପର ସ୍ତ୍ରୀଟିଏ ଆଣି ଦେଇଛନ୍ତ। ଆଉ ଅମି ତା ମୋତେ ଯେଉଁ ରତ୍ନ ଆଣି ଦେଇଛନ୍ତ, ପିନ, ଜନ, ଶାମ୍, ତା'ର ତୁଳନା ନାହିଁ..."

ତୁଳନା ଅଛି। ତୁଳ୍ଣା ବକର ବକର ନୁହେଁ, ତା'ର ବଡ଼େଇର ଅଶ୍ଲୀଳତାକୁ ଆଉ ସହ ହେଲ ନାହିଁ। ଭାବଲ ଏଇଥର କହବ। କହବ ଶୁଣନ୍ତୁ ଗୁ ପ୍ତାଜୀ, କାନ ଫାଡ଼ କର ଶୁଣନ୍ତୁ—ପ୍ରଥମତଃ ମୁଁ ନଜେ ଆପଣଙ୍କଠାରୁ ଯଥେଷ୍ଟ ବଡ଼ ଅଫିସର୍। ଦ୍ଵ ତୀୟରେ ମୋ ସ୍ତ୍ରୀ ଭାରତୀ କାହାତଳେ ଚାକରୀ କର ନାହାନ୍ତ ଯେ ତାଙ୍କର ଗରଜ ପଡ଼ୁଛି ଦ୍ଵ'

କର୍ତ୍ତାର ବେଚାର ନାଟିକା ଲେଖି ବସିବେ, ସେ ହଜାରେ କ୍ଲବ୍ ପାର୍ଟି ସର୍ଭସମିତିରେ ଗଣୀ ହୋଇ ଆସିଛନ୍ତି ସମସ୍ତେ ତାଙ୍କୁ ଭଲ ପାଆନ୍ତି, ବିରାଟ ଖାତିର୍ କରନ୍ତି । ମୋର ପୁଅଝିଅମାନେ ଭଲ ପାଠ ପଢ଼ନ୍ତି ବୋଲି କହିଲେ ଯଥେଷ୍ଟ ନୁହେଁ, ସେମାନେ ଯଥାର୍ଥରେ ଫାଷ୍ଟ୍ କ୍ଲାସ୍ ଷ୍ଟୁଡେଣ୍ଟ୍ ; ତାଙ୍କ ଭବିଷ୍ୟତ ଅତ୍ୟନ୍ତ ଉଜ୍ଜ୍ୱଳ, ଆପଣଙ୍କ ପିଲାଏ ତା'ର ପାଖ ମାଡ଼ି ପାରିବେ ନାହିଁ । ହେଲି ଏବେ ମୋ ପୁଅଗୁଡ଼ାକ ଦୁର୍ବଳିଆ, ଶାମ୍ ମାନେକ୍ଶାଙ୍କ ପରି ନିଶ ମୋଡ଼ିବାକୁ ଚାହାନ୍ତି ନାହିଁ, କିନ୍ତୁ ସେଥିରେ କିଛି ଯାଏ ଆସେ ନାହିଁ···

କହିବି । ଆପଣା ସୁନା କେଉଁ ଭେଣ୍ଡି ହୋଇଛି ଯେ କହିବାକୁ ଲାଜ ଲାଗିବ ? ବରଂ ଏତେ ଅସଲି, ଷୋଳ ଅଣାରୁ ଅଧିକ, ଯେ ସେଇଥି ପାଇଁ ପାଟି ଖୋଲୁ ନାହିଁ, ମାଡ଼ି ପଡ଼ୁଛି ନିଜକୁ ।

ପ୍ରତୀକ୍ଷମାଣ ଯାତ୍ରୀମାନେ ପ୍ରତୀକ୍ଷାରେ ଉବିଗଲେଣି ବୋଲି ମନେ ହେଉଛି । ଅଗ୍ନିରଥର ମିଆଦ ପୂରିଗଲାଣି । ମାଉଷିଆ ପିଲା ଶୋଇଗଲାଣି । ହେଲେ ନିଦ ଲାଗି ନାହିଁ ଭଲ କରି, କାନ୍ଦୁଛି ମଝିରେ ମଝିରେ । କାନ୍ଦୁଥାଉ । ଶୋଇଛି ବୋଲି ଧରି ନିଅ । ତା' ମାଆ ପଢ଼ିସାରିଥିବା ଗୁଲ୍ଶନ୍ ନନ୍ଦାଙ୍କର ଉପନ୍ୟାସକୁ ପୁଣି ଥରେ ପଢ଼ୁଛି, ପଢ଼ୁଥାଉ । ପିଲା କାନ୍ଦଣାକୁ ପରୁଆ କରି ନାହିଁ । ବାପର ସିଗ୍ରେଟ୍ ସରିଗଲାଣି, ସରିଗଲେ ଯାଉ । ନ-ଶୋଇଲା ପିଲା କିମ୍ବା ନ-ଥିବା ସିଗ୍ରେଟ୍ ତା'ର ବହଳ ବିଷାଦକୁ ହେଲେଇ ପାରିବେ ନାହିଁ । ସତେକି ସମସ୍ତେ ପ୍ରତୀକ୍ଷା ଜନଷ୍ଠିର ଅର୍ଥ ବୁଝିଗଲେଣି, ଯେ ତା'ର ଭବିଷ୍ୟତ ନାହିଁ । କେବେ କେଉଁ ପ୍ଲେନ୍ କି ଗୋଡଟ୍ କି ଅହଲ୍ୟାଙ୍କ ରାମଚନ୍ଦ୍ର ଆସି ଉଦ୍ଧାର କରିବ ଭଗବାନଙ୍କୁ ଜଣା ।

କେବଳ ଏଇ ଲୋକଟି ଛଡ଼ା । ଦାସଗୁଣ ବିଶିଷ୍ଟ । ତେଣୁ ସମୟର ବି ଦାସ ହେବ ନାହିଁ କେମିତି ? ସମୟ ଉପରେ ଚଢ଼ିଲା କେତେବେଳେ ଯେ ଏଇକ୍ଷଣି ତା'କୁ ମାନି ନେବ ? ଦେଖୁନା କେମିତି ତା'ର ମୁଖପଦ୍ମକୁ ତୋଳି ଧରିଛି ମୋ ଆଡ଼କୁ ? ସତେକି ଦିନ ପରେ ଦିନ ପାଉଛି ବୋଲି ଦେଇ ଚାଲିଛି ଅନ୍ୟମାନଙ୍କୁ, କାଳେ ଅନିଶ୍ଚୟତାରେ ପୋକ୍ତ ହୋଇ ପଡ଼ିବ, ନିଃଶ୍ୱାସ ରୁଦ୍ଧ ହୋଇଯିବ । ମୁଁ ଆସି ଜୁଟି

ନ ଥିଲେ, ଆଜି କାହା ପାଖରେ ନିଶ୍ଚୟ ତା ଘର ଳୀସିବ କରି ଥାଆନ୍ତା । ଅଜାଡ଼ି ଦେଇଥାଆନ୍ତା ତା' ଧନର ଧନ୍ୟୋସି । ଥକାମାରି ପଗ୍ଭରୁଛି ଏଇକ୍ଷଣି—ଆହୁରି ଦେବ ?

ପୁଣି କୋଉ ଧନ ନା ତା'ର ସ୍ତ୍ରୀ ସନ୍ତାନ ! ଯେମିତିକି ଆଜି କେହି ତାଙ୍କ ସ୍ତ୍ରୀଙ୍କୁ ରମଣ କରି ନାହାନ୍ତି ଓ ସେଥିରୁ ପିଲାପିଲି ବାହାରି ନାହାନ୍ତି, ପାଠୁଆ, ବୁଦ୍ଧିଆ, ବୋକା, ଚଗଲା, ମୋଟା, ପତଳା, ଯାହାକୁ ଯିଏ ।

ଅସ୍ୱସ୍ତିର କାରଣ ନାହିଁ । ମୋର ବି ଅଛି, ଅଧିକ ଅଛି ବୋଲି କହିବା ଅଶୋଭନୀୟ । ଏଭଳି ଗୋଟିଏ ଲୋକ ପ୍ରତି କେବଳ ଦୟା ଦେଖେଇବା କଥା । ଏହିପରି ଭାବରେ ମୁଁ ମୋ ଆଡୁ କିଛି କହି ତାକୁ ଦବେଇ ଦେବାର ପ୍ରବୃତ୍ତିରୁ କ୍ଷାନ୍ତ ହେଲି । ଏବଂ ଭାବିଲି ଯେ ଭଗ୍ନ ଅଶ୍ଳୀଳ ପ୍ଲେନ୍‌ଜନିତ ଏଇ ଅସ୍ୱାଭାବିକ ପରିସ୍ଥିତି ଯୋଗୁଁହିଁ ମୋର ମତିଗତି ବିଗିଡ଼ି ଯାଇଛି । ନହେଲେ ମୁଁ କେଉଁଠି ଆଉ ସେ କେଉଁଠି ଯେ ମୁଁ ତାର ନିବେଦନ ମାନେ ଭୁଲ୍ କରି ବଢେଇରେ ଚଢୁଥାନ୍ତି ବସି ?

ମୁଁ ତା ଗୋଲ ଗୋଲ୍ ଆଖିରେ ଆଖି ରଖିଲି । ଆମୋଦ ଭାବକୁ ଯଥାସଂଭବ ଓଠାରି ଆଣି ମୃଦୁ ମୃଦୁ ହସିଲି । କହି ଯାଉ ବିଚରା, କହିବ କୋଉଯାଏଁ ।

ଦେଖୁ ଦେଖୁ ମନେ ହେଲା ତାର ମୁହଁ ଆହୁରି ଧୂସର ହେଲେ ପ୍ରସନ୍ନ ଦିଶୁଛି । ଭୁତ ପରି ନିଶ ଓ ଚୂନ ଚୂନ କେଶ ବ୍ୟାପିଯାଇଛି ମୁହଁଯାକ । ସେ ଗୋଟିଏ ତୃପ୍ତ ରୋମଶ ଜନ୍ତୁ, ଲିଚ୍ୟୁଚ୍ଛୁ ବଳ, ଦାସାନୁ ଦାସ !

ଏହାପରେ ସେ ଯାହାସବୁ କହିଗଲା, ତା'ର ବର୍ଣ୍ଣନା ନିଷ୍ପ୍ରୟୋଜନ । ସ୍ତ୍ରୀ ପରିବାର ଉପରୁ ତାର ପୂଜ୍ୟ ବାପମାଆ, ତାକୁ ପୁଅ ପରି ଭଲ ପାଉଥିବା ହାକିମଙ୍କ ଲମ୍ବା ଲାଇନ୍, ଏବଂ ସିକମ୍‌ର ବର୍ଣ୍ଣ-ବୈଚିତ୍ର୍ୟ... ଧନ ରତ୍ନର କଳନା ନାହିଁ । ସତେକି ସେ ଗନ୍ତାଘରର ଇନ୍‌ଭେଣ୍ଟରି ନେଉଛି, ଫର୍ଦ୍ଦ ତିଆରି କରୁଛି, ଖାସ୍ ମୋରି ପାଇଁ ।

କହିଲି କ୍ଷମା କରିବେ, ଆପଣ ମୋର ବଡ଼ଭାଇ ପରି ମନେ ହେଉଛନ୍ତି, ସେଇଥିପାଇଁ ଆପଣଙ୍କ ଆଗରେ ଏମିତି ଗପିବାକୁ ଇଚ୍ଛା ହେଉଛି । ମୁଁ ସେଥିରେ ଆପ୍ୟାୟିତ ହେଲି ନାହିଁ, କାରଣ ମୁଁ ଜାଣେ ସେ ଏହି ମର୍ମରେ କେତେ ଭାଇବନ୍ଧୁ ଗଢ଼ିଥିବ ଓ ସେମାନଙ୍କୁ ତାର ପାଲରେ ପକେଇଥିବ ।

ଏବଂ ତା'ର ଗଳ୍ପମାଳକାର ଘୋଷା ସେଇ ଗୋଟିଏ—ମୁଁ ଧନ୍ୟ !

ତଥାପି ତା'ର ଧନ୍ୟବାଦଜ୍ଞାପନର ଶେଷକଥା କହିବାକୁ ପଡୁଛି । ଯେଉଁଥିରେ ସେ ସୀମା ଟପିଗଲା, ଓ ଅଯଥାରେ ମୋତେ ଡରେଇଲା । କ୍ଷଣକ ପାଇଁ । ଯେମିତିକ ମୋର ବି କାନ୍ଦିବାର କଥା, ହେଲେ ତାପରି ନୁହେଁ, ଭାବରେ ନୁହେଁ, ଅଭାବରେ···

ହେଲା କଣ କି ସେ ସିକିମ୍ କଥା ଗପୁ ଗପୁ ଯଥାକ୍ରମେ ତା'ର ହାକିମ ଓ ଠାକୁରଙ୍କୁ ଧନ୍ୟବାଦ ଦେଲା । ଯେ ଅନ୍ୟ କେହି ଆସିବାକୁ ମଙ୍ଗିଲେ ନାହିଁ, ତେଣୁ ତା'କୁ ପଠାଗଲା, ସେଥିପାଇଁ ସେ ସେମାନଙ୍କ ପ୍ରତି କୃତଜ୍ଞ । କାହିଁକନା ସିକିମ୍‌ର ଫଳଫୁଲ, ନରନାରୀ (ନାରୀମାନେ କୁଆଡେ ଏକାଧାରରେ କାମିନୀ ଓ କାନ୍ତା, ମାନେ ଛଇଳ ଫର୍‌ୱାର୍ଡ୍, ନେଭମାଇଣ୍ଡ, କିନ୍ତୁ ମାତିବନ୍ତି ଲକ୍ଷ୍ମୀ), ପାହାଡ଼ପର୍ବତ, ବଣଜଙ୍ଗଲ ଏପରିକି ତା'ର ଲ୍ୟାଣ୍ଡସ୍ଲାଇଡ୍, ଅତଡ଼ା ଖସିବାର ଆକସ୍ମିକତା ଭାଗ୍ୟରେ ଥିଲେ ଦେଖିବାକୁ ମିଳେ । କହିଲା, ମୁଁ ପିଲାପିଲିଙ୍କଠାରୁ ଏତେ ଦୂରରେ ରହୁଛି, ଏକୁଟିଆ ରହୁଛି, କିନ୍ତୁ କେବେହେଲେ ମୋର ମନେ ହୋଇନାହିଁ ଯେ ମୁଁ ଅପନ୍ତରାରେ ପଡ଼ିଛି, ବିପଦ ଆପଦରେ ସାହା ହେବାକୁ କେହି ନାହିଁ ।

ସେଇଠୁଁ ମୁଁ ବିଦ୍ରୁପର ସ୍ୱରରେ ପଚାରିଲି ତା'କୁ—ଲ୍ୟାଣ୍ଡସାଇଡ କି ବଢ଼ିଆ ? ଆପଣ ଦେଖିଛନ୍ତି ତା'କୁ ?

ସେ କିଛି କହିବା ଆଗରୁ ତା'ର ଚକାଡୋଳା ମୋତେ ଉତ୍ତର ଦେଲା । ତା'ର ପରିଧିରେ ଅବିସ୍ମରଣୀୟ ସ୍ମୃତିର ଉତ୍ତରଣ···ଉପରୁ ବିସ୍ମୟରୁ ବଳି···ସତେକି ସେ କେବଳ ଦେଖି ନାହିଁ, ଦେଖିବା ହେତୁ ବିଶେଷ ଭାବରେ ଧର୍ଷିତ ଅବା ଦ୍ରବିତ ହୋଇଛି···ଆହା, କି ବିଷମ, କି ଚମତ୍କାର ସେଇ ଅନୁଭବ···କହିବି ? କହି ପାରିବି ?

ଏତେ ଗୁରୁଗମ୍ଭୀର ସ୍ୱରରେ ସେ ମୋତେ ଅନେଇଲେ ଓ ତା'ର ଉତ୍ତରକୁ ପ୍ରସ୍ତୁତ କଲେ ଯେ ମୁଁ ହସି ନ ହସିଲା ପରି ହେଲି । କହିଲେ,—

"ଜାଣନ୍ତି ଲ୍ୟାଣ୍ଡସ୍ଲାଇଡ୍‌ରେ କଅଣ ହୁଏ ? କଥା ନାହିଁ, ବାର୍ତ୍ତା ନାହିଁ, ହଠାତ୍ ପୃଥିବୀର କଅଣ ହୋଇଯାଏ । କୋଉଠି ବୋଲି କୋଉଠି ଫାଟିଯାଏ, ଧସିଯାଏ, କଣ୍ଟୁଡ଼ ହୋଇ ପଡ଼େ···"

"ସତେ ?"

"ଆଖି ପିଛୁଳାକେ ତମକୁ ବୁଡ଼େଇଦେବ କି ଆଉ କାହାକୁ, କୋଉ ଘରଦୁଆର, ଗାଈଗୋରୁ, କାର୍ ଜିପ୍ । ଭୂମିକମ୍ପ ନୁହେଁ ଯେ ସହରର ଚାରିଆଡ଼େ ହେବ, ଲୋକେ ଜାଣିବେ । ନା, ସିଏ ଆସିବ ଖାସ ତମରି ପାଇଁ, ତମରି ଆଖି ଆଗରେ ଗୋଟାଏ କମିଆଁ ଦେଖେଇ ଦେଇ ଚାଲେଇବ । ବାସ୍ !"

"ଆଚ୍ଛା ?" ବିସ୍ମୟସୂଚକ ପଦୁଟିଏ ମାନ ଛାଡ଼ି ଦେବା ଛଡ଼ା ଅନ୍ୟ ଉପାୟ ନ ଥିଲା । ତଳ୍ପାରୁ ମୁଁ ଖଚେଇ ହେଉଛି କି ଆଗ୍ରହର ପରିଚୟ ଦେଉଛି ସେଇ ବୁଢ଼ା ।

"ଆଜ୍ଞା ମୋତେ ଯେଉଁ କମିଆଁ ଦେଖେଇଛି ମୁଁ ଭୁଲି ପାରିବି ନାହିଁ । ଜନ୍ମ ଜନ୍ମାନ୍ତରରେ ଭୁଲି ପାରିବି ନାହିଁ । ଏଇ ବର୍ଷକ ତଳର କଥା । ମୁଁ ନିଜେ ଜିପ୍ ଗାଡ଼ି ଚଲେଇ ଯାଉଥିଲି, ଆମର ଗୋଟିଏ ଘାଟି ଅଫିସ୍‌ରେ ଜରୁରୀ ଚିଠି ଦେଇ ଆସିବା ପାଇଁ । ମୋ ସାଙ୍ଗକୁ ଆଉ ଗୋଟାଏ ଗାଡ଼ି ଚାଲିଥାଏ, କୌଣସି ବିପଦ ଆପଦ ପାଇଁ । ସେ ଚାଲିଥାଏ ଆଗରେ, ମୁଁ ପଛରେ ।

"ଏମିତି ହୋଇ ଆମେ କୋଉଠି ପହଞ୍ଚିଲୁ ଜାଣନ୍ତି ? ନାଥୁ-ଲା ପାସ୍ । ନାଆଁ ଶୁଣିଥିବେ ନିଶ୍ଚୟ । କିନ୍ତୁ ସେଠି ଖାଲି ଇତିହାସ ନାହିଁ ଆଜ୍ଞା, ଆହୁରି ଗୋଟାଏ ବିରାଟ ଜିନିଷ ଅଛି । କାଂଚନଜଂଘା । ଅବଶ୍ୟ ସାରା ସିକିମ୍ କାଂଚନଜଂଘାର ଛାଇତଳେ ଅଛି, ସେଇ ତା'ର ଦେବତା ଦୈବବିଧାତା । ଆଉ ମୁଁ ବି ତାକୁ ଦେଖିଲାକ୍ଷଣି ଜୁହାରଟିଏ ପକଉଥିଲି । କିନ୍ତୁ ପ୍ରକୃତ ପକ୍ଷେ ମୁଁ ତାକୁ ଦେଖି ନ ଥିଲି । ଦେଖିଲି ସେଇଦିନ । ଶୁଣନ୍ତୁ ।

( ସ୍ୱକଗର୍ଭିକ ବଗମ )

"ଆଗୁଆଳ ଜପ୍ ପାର ହୋଇ ଗଲ୍ଣି । ସେଇଠୁଁ···ହଠାତ୍ ଗୋଟାଏ ପ୍ରଚଣ୍ଡ ଶବଦ ! ଲ୍ୟାଣ୍ଡ୍ ସ୍ଲାଇଡ୍ । କେଉଁଠି ହେଲ୍ ? ଆଗକୁ ନା ପଛକୁ ? ପାହାଡ଼ ମଝିରେ ଦଗ ବାରିବା କଷ୍ଟ । ହେଲେ ହେଉ, ମୁଁ ବଞ୍ଚି ଯାଇଛି । ଗାଡ଼ି ଚଲେଇଲି ଆଗକୁ । କିନ୍ତୁ ଖଣ୍ଡେଦୁର ନ ଯାଉଣୁ ଦେଖିଲି···ଯେ ବାଟ ବନ୍ଦ । ଅଟଡ଼ା ଖସିଛି ଏଇଠି । ଆଗକୁ ଯାଇ ହେବ ନାହିଁ । ଏମିତିକା ସରୁ ରାସ୍ତା ଯେ ଗାଡ଼ି ବୁଲେଇ ଫେରି-ଯିବାର ପ୍ରଶ୍ନ ଉଠୁ ନାହିଁ ।

ସେଇଠୁ ମୋତେ ଆଶ୍ୱାସନା ଦେଲାପରି କହିଲା, 'ନାଇଁ ଭୟ କରିବାର କିଛି ନାହିଁ । ମୁଁ ଜାଣିଥିଲି ଯେ ଯଥା ସମୟରେ ଖଲାସ ହୋଇ ଯିବ । ଅବସ୍ଥା ବୁଝି ସେମାନେ ଯନ୍ତ୍ରପାତି ଆଣିବେ, ରାସ୍ତା ସାଫ୍ କରେଇବେ । କିନ୍ତୁ ସେଇ ମୁହୂର୍ତ୍ତରେ ମୁଁ ଅଟକି ଗଲି । ଜପ୍‌ରୁ ଓହ୍ଲେଇ ଆସିଲି । ମୋ ଦୃଷ୍ଟି ଆଡ଼କୁ ଅଟେଇଲି, ତଳକୁ ଉପରକୁ । ସେଇଠୁଁ ତା'କୁ ଦେଖିଲି । କାଂଚନଜଂଘା । ଗୋଟିପଣେ ଅନେଇଛି ମୋତେ, ମୋର ପାଖରେ ଅଛି, ମନେ ହେଉଛି ମୁଁ ତା'କୁ ଛୁଇଁ ପାରିବି ।

"ମୋର ପାଖରେ, ହାତ ପାହାନ୍ତାରେ । ସେ ଓ ମୁଁ । ଆଉ କେହି ନାହିଁ । କେହି ବୋଲି କେହି ନାହିଁ । ଲୋକଟିଏ, ଗଛଟିଏ ହଳଦୀ ପତରଟିଏ, ଫୁଲଟିଏ, କିଛି ନାହିଁ । ଆରେ ? ଇଏ କଅଣ ମ ? ମୁଁ କଣ ସତରେ—?

"ଆଜ୍ଞା, ମୁଁ ହସିଲି । ହସୁ ହସୁ କାନ୍ଦିଲି । କାନ୍ଦିଲା ପରେ ଆଉ କଣ କରିବି ବୁଝି ପାରିଲି ନାହିଁ । କାଞ୍ଚନଜଙ୍ଘା ମୋର, ଏକୁଟିଆ ମୋର, ମୋତେ ଦେଉଛି ନେଉଛି, ପୁରାପୁରି ଦେଉଛି···ଆଉ ପାରିଲି ନାହିଁ ଆଜ୍ଞା, ଆଖି ବୁଜି ହୋଇଗଲା । ତା' ପରେ—"

ମୋ ଅଜାଣତରେ ମୁଁ ତା'ର ହାତକୁ ଧରି ପକେଇଲି । ଥାଉ ।

ସମ୍ମୋହନ କଟିଯିବାକୁ କେତେ ସମୟ ? ଲାଉଡ୍‌ସ୍ପିକର୍ କଅଣ ଗୋଟାଏ କହୁଛି । ଲୋକମାନେ ଉଠ ଉଠ ହେଲେଣି, ଗୁଂଜନ ଫେରି

ଆସିଲଣି । ଗୁଞ୍ଜନର କୋଳାହଳ ମୋତେ ଆତ୍ମର ସୁବଧା କରେଇ ଦେଲ, ଏବଂ ମୋର ସନ୍ଦେହ ରହିଲ ନାହିଁ ଯେ ମୁଁ ମୋର ଈର୍ଷା, ଗ୍ଲାନ, ଭୟ ଆଦ ଭାବକୁ କାଟିକୁଟି ନର୍ମୂଳ କର ଦେଇ ପାରବ । ମାନବ ନାହିଁ ଯେ ସେ ଯଥାର୍ଥରେ ଭୃତ୍ୟ ବୋଲ, ଜନ୍ତୁ ବୋଲ, ଦାସାନୁଦାସ ବୋଲ ପାଇଛୁ । ଅଧିକାର କର ପାରଛୁ । ସ୍ୱୀପିଲ, ସାଂଗ ପଡ଼ଶା, ସଂସାର, ଶେଷକୁ···କାଞ୍ଚନଜଂଘା । ଦୁର୍ଲଭ ସୁନାମୁଣ୍ଡା ଟାଏ ।

ଯାହା ମୋ କପାଳରେ ନାହିଁ ।

ରହସ୍ ! ଝରକା ବାଟେ ଆଖିରେ ପଡ଼ଲ ଏକୁଟିଆ ଗ୍ଲୋଟା ହୋଇ ପଡ଼ିଥିବା ଆମର ସେଇ ପ୍ଲେନ୍ । ଫିକା ଜହ୍ନ ଆଲୁଅରେ ଦସ୍ତୁମାସ୍ତୁ ଦେଖାଯାଉଛୁ । ତା'ର କଳା ନାକ ନବୋଧତାରେ ଚକ୍ ଚକ୍ କରୁଛୁ । କହୁନା ଯେ ସେଇ ଏକା ଆକାଶର ସ୍ୱତକୁ , ଦୃଶ୍ୟ ଅଦୃଶ୍ୟ ତାରାମାନଙ୍କୁ, ସୁନ୍ଦରତା, ମୌନତାକୁ ପିଇ ଯାଇ ପାରୁଛୁ ? ଆଉ ଆମେ ସବୁ ବେକାର ?



# ଧବଳ ଟଗର

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଯେଉଁ ମହାମନୀଷି କଟକ ନଗରର ପରବର୍ତ୍ତୀ ପଂକ୍ତିକୁ ଧବଳ ଟଗର ବୋଲି ଲେଖିଦେଲେ, ଏବଂ କୋମଳମତି ବିଦ୍ୟାର୍ଥୀମାନଙ୍କ ଚେତନାରେ ଏକ ହାସ୍ୟାସ୍ପଦ ଧାରଣାର ବୀଜ ବପନ କଲେ ଯେ ଆମ୍ଭର ଏହି ତଥାକଥିତ ନଗର ଶୁଭ୍ର, ଗନ୍ଧଶୂନ୍ୟ ଏବଂ ଆକାର ଇକାର ବର୍ଜିତ ଠୁଅ (କହ୍ନପାର ହାତଗୋଡ଼ ନ ଥିବା ଠାକୁର) ଟିଏ, ତାଙ୍କ ଦୁଃସାହସକୁ ଧନ୍ୟ କହିବା ! ଅଫ୍ ଅଲ୍ ଦ୍ଵ' ଆବ୍ସର୍ଡ୍ ନନ୍‌ସେନ୍‌ସ !

ମୁରଲୀଧର ମହାନ୍ତି ସସ୍ତାକଉ ଚହା ଦୋକାନ ପାଖରେ ପଡ଼ିଥିବା ବେଞ୍ଚ୍‌ରେ ବସିରହି ବର୍ଣ୍ଣବୋଧର ବିଧାନକୁ ସ୍ମରଣ କଲେ ଏବଂ ମନଇଚ୍ଛା ହସିଲେ । କିନ୍ତୁ ଦୁଃଖର ବିଷୟ ଯେ ତାଙ୍କ ଭାବାବେଗର ଉଚ୍ଛ୍ଵାସ, ଅର୍ଥାତ୍ କ୍ରୋଧ ଓ କାରୁଣ୍ୟକୁ ଆଉଜିଆଳ କରୁଥିବା ହର୍ଷ, ଗରାଖ ଦୋକାନୀ କାହାରିକୁ ଛୁଇଁଲା ନାହିଁ । ଜଣେ ଅଧେ ଅବଶ୍ୟ ଦେଖିଲେ ଯେ ଜନୈକ ସାର୍ଟପ୍ୟାଣ୍ଟ୍ ପିନ୍ଧା ଭଦ୍ରଲୋକ ଗିଲାସରେ ଢ଼ଳା ହୋଇଥିବା ଗରମ ଚହାକୁ ସୁଡ଼ୁସୁଡ଼ୁ କରି ପିଇ ପାରୁ ନାହାନ୍ତି, ଚୁଚୁମୁଛନ୍ତି, ଏବଂ ଆକାଶକୁ ଚାହିଁ ହସୁଛନ୍ତି । କିନ୍ତୁ ଏଭଳି ଦୃଶ୍ୟ ସର୍ବସାଧାରଣ ନ ହେଲେ ମଧ୍ୟ ଚମକପ୍ରଦ ନୁହେଁ । ଏବଂ କାହାରି ଭାବିବାର ଉପାୟ ନ ଥିଲା ଯେ ଏଇ ମଧ୍ୟବୟସ୍କ ଭଦ୍ରଲୋକ ଏଇଠି ଜନ୍ମିତ ଓ ଲାଳିତ ପାଳିତ, ଅଥଚ ଆପଣା ସହରର ପୋକ ବୋଲାଇବାକୁ ନାରାଜ । ହସର ହାବୁକା ସରିଗଲା ପରେ ସେ ଭକ୍ତକବିଙ୍କୁ ଚିଡ଼ଉଥାଆନ୍ତି,—ଆଜ୍ଞା, ଧବଳ ଟଗରରେ ପୋକ ଆସିବ କୋଉଠୁ, କହୁନାହାନ୍ତି ? ପୋକ ଧାଇଁଆସିବ ଚମ୍ପାଫୁଲର ସୁଗନ୍ଧ କଅଁଳିଆ ଦେହକୁ ଶୋଷିବା ପାଇଁ, କିମ୍ବା ଘୁଅ ଗୋବରର ପଚପଚିଆ ଦେହକୁ ଖୁଣ୍ଟିବା ପାଇଁ । କିନ୍ତୁ ବିଚରା ସାଦା ନିରମିଷି ଧବଳଟଗରକୁ ନେଇ କରିବ କଅଣ ? ଏବଂ ପରେ ପରେ ସିରିୟସ୍ ହୋଇ ପ୍ରଶ୍ନର ହେଂକଠୋକ ଜବାବ୍ ଦେଉ ଥାଆନ୍ତି । ନା, ମୁଁ ପୋକ ନୁହେଁ ।

ଏଠି ଗଳିଗଳିରେ ଧୂଆଁ, ଗୋବର, ତଥା ନର୍ଦ୍ଦମାରୁ କଢ଼ା ହୋଇଥିବା ମାଲ । ଏବଂ ତାର ମଝିରେ କୋଉ ବାଉଁଆଡ଼ରେ ଚମ୍ପା ଓ ସ୍ୱର୍ଣ୍ଣଚୂଡ଼ । ହୁଏତ ହାଇଁପାଇଁ ପ୍ରେମ । ଥାଉ, ତାଙ୍କ ସହିତ ମୋର କିଛି କାରବାର ନାହିଁ । ଏଇଠି ଜନ୍ମ ହୋଇଛି ସତ, ଏଇଠି ପାଠ ପଢ଼ିଛି ଥୋଡ଼ାଏ ବାଟ । କିନ୍ତୁ ଠିକଣା ସମୟରେ ସ୍ଥାନକୁ ଛାଡ଼ି ଚାଲିଯାଇଛି । ମାନେ ଯେତେବେଳେ ମୃତ ସ୍ୱପ୍ନଠାରୁ ବଳି ଧୂର୍ତ୍ତ ସୁସ୍ଥତାକୁ ସମ୍ମାନ ଦେବା ଆବଶ୍ୟକ ହୋଇ ପଡ଼ିଲା । ମୁଁ ଜାଣିଲି ଯେଏଠି ବେଶିଦିନ ରହିଲେ ମୁଁ ସତସତିକା ପୋକ ହୋଇ ଯିବି, ମଣିଷପଦବାଚ୍ୟ ହୋଇ ରହିବି ନାହିଁ ।

କାହିଁକନା ଏଠିକାର ସବୁ ଉତ୍କଟ । ଘିଣି ଘିଣି ଦୁର୍ଗନ୍ଧ ଓ ତା'କୁ ସତେ ଜିଣିଲା ପରି ବାସ୍ନା । କୁତ୍ସିତା ବେଶ୍ୟାର ମୁହଁରେ ବୋଳା ହୋଇଥିବା ସ୍ନୋ-ପାଉଡରର ପରି । ଏଠିକାର ଧର୍ମ ଚିତ୍କାର କରେ । ସିଂଦୁର ଫାଟିବା ଆଗରୁ କୋଉ ସଂକୀର୍ତ୍ତନର ଝାଞ୍ଜମାଉ କାନ ଫଟେଇ ଦିଏ । ତା'କୁ ସଂଭାଳିଲା ବେଳକୁ କୋଉ ମସ୍‌ଜିଦ୍‌ ଉପରୁ ଆଲ୍ଲାହା-ହୋ-ଆକ୍‌ବର୍‌ର କୁହାଟ କାମ ଭିତରେ ଗଳିଯାଏ । ଉଠିବାକୁ ହେବ, ଉପାୟ ନାହିଁ । ତେବେ ଏଇ ଚିତ୍କାର ପଛକୁ କ'ଣ ଆଉ କିଛି ନାହିଁ ? ଯାହାକୁ ଶୁଣିଲେ ମନେ ହେବ ଯେ ନୂଆ ଦିନ ତମ ଉପରେ କେବଳ ପାଟି କରୁନାହିଁ, ସ୍ୱାଗତ ଜଣାଉଛି ? ଚଢ଼େଇମାନେ କୁଆଡ଼େ ଗଲେ ? ଭାବିଲା ବେଳକୁ କାଉମାନଙ୍କ କା-କା ବନାମ ଘଉଘଉରେ ଗଗନ ପବନ ଭରିଯାଏ । ହଁ, ସେଇମାନେ ଚଢ଼େଇ, କାକଳିକୂଜନ । ଇଏ କଣ ତମ ମଫସଲ ହୋଇଛି ? ଉଠ ଏଥର । ଉଠିଲା ଉତ୍ତାରୁ ସୁଙ୍ଘ । କଣ ସୁଙ୍ଘିବାକୁ ଚାହିଁ ନଜେ ବାଛିନିଅ । ଘର ବାଆଁପଟ ଗଳିରୁ ଆସୁଥିବା ବାସ୍ନାରେ ପାଇବ ଘନଘୋର ନଳା ପାଣିର ସ୍ଥାୟୀ ଅଭିବ୍ୟକ୍ତି । ଯଥାକ୍ରମେ ସେଥିରୁ ମଇଳା କଢ଼ା ହେବ ଓ ଜମା ହେବ ରାସ୍ତା ଉପରେ । ତା'ର ଅତ୍ୟୁକ୍ତି ହୁଏ ବାଧିବ ସେତେବେଳକୁ । ତେଣୁ ଏବେଠୁଁ ଆଘ୍ରାଣକୁ ଅଭ୍ୟାସ ପକେଇ ଦିଅ । ଅଥବା ଡାହାଣପଟ ଝରକା ଖୋଲି ଦେଇ ସୁଙ୍ଘ ଗୋଟାଏ ବିରାଟ ଖୋଲା ଟିଣ ଡ୍ରମ୍‌ ଉପରେ ଅଜାଡ଼ି କରିହୁଡ଼ ହୋଇ ପଡ଼ିଥିବା ଅଳିଆ-ଅବଶିଷ୍ଟର ବାସ୍ନା । ମଲା ବିଲେଇ ସମେତ ଖଟା କାଞ୍ଜି

( ଖଟା କାଞ୍ଜି ନା ବାନ୍ତ ? ), ପାଉଁଶ, ଛୁଣ୍ଡାକନା, ଭୋଗ କଦଳୀ, ଫୁଲ ନୈବେଦ୍ୟ ଇତ୍ୟାଦିର ବିବିଧବାସ୍ନା; ଅଧେ ସତ, ଅଧେ ଅନୁମେୟ । ବିବିଧ-ବହୁଳତା ପସନ୍ଦ ନ ହେଲେ ଦାଣ୍ଡପଟକୁ ବାହାରି ଆସ । ସାମାନ୍ୟ ଲତାଗୁଳ୍ମର ପରିବେଶରୁ କେବଳ ଗୋଟିଏ ପ୍ରକାର ବାସ୍ନା ପାଇବ, ନିର୍ଜନ ଗାତରେ ଜମିଥିବା ବହୁଜନମୂତ୍ରର ବାସ୍ନା । ଆଃ, ଏଭଳି ଅନୁଦାନକୁ ଜଣିବାପାଇଁ ଅନ୍ୟ ଏକ ଉପାଦାନ ପ୍ରସ୍ତୁତ ହେଉଛି ମ, ସୁଁଘି ପାରୁନାହଁ ? ଚୂଆ ହାଣ୍ଡିର ବାସ୍ନା···କସି କରି ନିଶ୍ୱାସ ନିଅ, ତାହାହେଲେ ଯାଇଁ ଜାଣିବ, ଦେଖିବ କେମିତି କଦର୍ଯ୍ୟକୁ କଡ଼ା କାଟି ଦେଇ ପାରେ ।

ଏତେଦିନ ପରେ ଆସିଛ ନିଜ ସହରକୁ । ତେଣୁ କ'ଣ ଦିଟା ପାଟିରେ ପକେଇ ପଦାକୁ ବାହାରିପଡ଼ । ଦର୍ଶନେନ୍ଦ୍ରିୟକୁ ମଧ୍ୟ ତା'ର ପାଉଣା ଦେଇ ଦିଅ । କିଏ କହିଲା ଆମ ସହର ନଗର ନୁହେଁ ? ଘର ଆଗରେ ନୂଆ ମାରୁତି କାର୍ ଖଣ୍ଡିକ ଆଖିରେ ପଡୁନାହିଁ ? ଦେଖୁନା' କି ଯନ୍ତ୍ରଣା ଭୋଗୁଛି ବିଚରା ରାତିସାରା ? ଗ୍ୟାରେଜ୍ ବିହୁନେ ରାସ୍ତାରେ ପଡ଼ିଛି, କ୍ଷତି ନାହିଁ, ଦେଶବିଦେଶରେ ଏଭଳି ଦୃଶ୍ୟ ଦୁର୍ଲଭ ନୁହେଁ । କିନ୍ତୁ ଗୋଟାଏ ଶଗଡ଼ ଗାଡ଼ି କଣ ତା' ଦେହକୁ ଲଗି ଶୋଇବା କଥା ? ପୁଣି ଦଣ୍ଡା ଟେକି ତା'ର ଅଭ୍ୟନ୍ତରକୁ ଅନେଇବା କ'ଣ ଉଚିତ ଥିଲା ? ଦେଖ, ଏଇ ଶଗଡ଼-ମାରୁତି ସନ୍ଧିରେ ମୂଷାକୁମାନଙ୍କୁ କେମିତି ବିଶେଷ ସୁବିଧା ମିଳିଛି ···

ମୋ ସହର ମଡର୍ଣ୍ଣ ହେଉଛି ! ବୃଦ୍ଧା ବେଶ୍ୟା ଆଙ୍ଗର ସ୍ନୋ-ପାଉଡ଼ର ମାଖି ହେଉଛି । ତା' ଉପରକୁ ଆଧୁନିକ ଇମ୍ପୋର୍ଟେଡ୍ ଅତର ଥିବ, ଇଣ୍ଡିମେଟ୍, ବୁଲି, କି ଆଉ କଅଣ । ମୁରଲୀବାବୁ ଟିକେ ହସ ହସି ଅଣ୍ଡା ହୋଇ ଯାଇଥିବା ଗୁହାକୁ ଢୋକେ ପିଇ ବାକୀତକ ତଳେ ଛୁଟି ଦେଲେ ।

ଅଇଁଠା ଗୁହା କଟକର ଭୂଇଁରେ ଛୁଟିଦେଲେ ଯଥେଷ୍ଟ ନୁହେଁ, ଏହି ଭାବରେ ମୁରଲୀବାବୁ ତା' ଉପରକୁ ଲଣ୍ଡାଏ ଛେପ ମଧ୍ୟ ପକେଇଲେ । ବେପରୁଆ ଠାଣିରେ ଥୁ' କଲେ । ଦେଖନ୍ତୁ ସମସ୍ତେ । ଅବଶ୍ୟ ଇଏ ଲଣ୍ଡନ ନିଉୟର୍କ୍ ନୁହେଁ, ନୂଆଦିଲ୍ଲୀ ବି ନୁହେଁ, ଯେ ଏମିତି ଗୋଟାଏ

କାମ କଲେ ଆଇନ୍‌ଅମାନ୍ୟର ଆନନ୍ଦ ଆସିବ । ଏଠି ଏଭଳି ହିସ୍ସା କରଣୀୟ କହୁଲେ ଚଳେ । ତଥାପି ମୋ ଜବର ଥି'କୁ ଦେଖିବେ ଏମାନେ । ଜାଣିବେ ଯେ ଲୋକଟା କଟକିଆଙ୍କ ବଡ଼ ବାପ, ପୋକ ନୁହେଁ କିନ୍ତୁ ପୋକମାନଙ୍କୁ ଘୃଣା କରି ଶାସ୍ତି ଦେଇ ପାରିବ ।

ଏଥର ବି' ତାଙ୍କ ଢଙ୍ଗଢ଼ଙ୍ଗର ବୈଶିଷ୍ଟ୍ୟ ପାର୍ଶ୍ୱବର୍ତ୍ତୀ ଗରାଖ-ଦୋକାନୀ ଅବା ଦେଖଣାହାରୀଙ୍କ ଆଖିରେ ପଡ଼ିଲା ନାହିଁ । କିନ୍ତୁ ଜଣକ ଆଖିରେ ପଡ଼ିଲା । ରାସ୍ତା ସେପାଖରେ ଗୋଟାଏ ସାଧାରଣ ପକ୍‌କା ଘର, ହେଲେ କବାଟରେ ପଦ୍ମଫୁଲ ବୋଲଉଥିବା କାଞ୍ଚଛଡ଼ା ଚିତାକାମ ଏବଂ କବାଟ ଉପରକୁ ଚନ୍ଦନ ପୀତ ଲେଖିତ ଗଜଲକ୍ଷ୍ମୀ । ସେଇ ସମ୍ଭ୍ରାନ୍ତ ତଥା ନଗାକୃତ ପୁରୁଣା ଘରେ ଗୋଟିଏ ଅଳନ୍ଧୁଲଗା ଝରକା ସାମାନ୍ୟ ଖୋଲା ଅଛି । ଫାଙ୍କ ଭିତରୁ ଜଣେ ପ୍ରୌଢ଼ ଅନେଇଛି ବାହାରକୁ । ଶୂନ୍ୟ ଦୃଷ୍ଟି । ଯେମିତିକି ବାହାରେ ଦେଖିଲା ଭଳି କିଛି ନାହିଁ, ତଥାପି ଅନେଇବାକୁ ପଡ଼ିବ, କାହିଁକିନା ଆଖିକୁ ଜୀଆଇଁ ରଖିବା ଉଚିତ, ବଞ୍ଚିବା ଉଚିତ, ନହେଲେ ଶରୀରକୁ ବିଶ୍ୱାସ ନାହିଁ । ସେଇ ଦୃଷ୍ଟି ମୁରଲୀବାବୁଙ୍କ ଠେଇଁ ଅଟକିଗଲା । ଆପଣା ଛୁଏଁ ଉଜ୍ଜୀବିତ ହୋଇ ଉଠିଲା । ଲୋକଟାକୁ ଚିହ୍ନାଲାପରି ଲାଗୁଛି । ତା'ର କଦାକାର ଚେହେରା ଚିହ୍ନିଲା ପରି ଲାଗୁଛି । ଏବଂ ତାଙ୍କର ମନ ହେଲା ସେ ବି' ତା' ଉଦ୍ଦେଶ୍ୟରେ ଲଣ୍ଡାଏ ଛେପ ପକେଇବେ । ମୋ ଇଚ୍ଛା ! ମୋ ଗୃହିଣୀ କୋଉ ପାଖରେ ବସିଛି ଯେ ମୋତେ ମନା କରିବ, ପାଟି ନ ଖୋଲି ଉହୁଁ-ଉହୁଁ କରିବ, ମୁଣ୍ଡ ହଲେଇବ ? ଅଧ୍ୟାଗଣୀ ଉପରେ ବସିଛି ଯାଇଁ, ବସିଥାଉ ।

ଉପରୋକ୍ତ ଭଦ୍ରଲୋକଙ୍କ ନାଆଁ ବଂଶୀଧର ପାଢ଼ି । ସେ କେଉଁ ସୂତ୍ରଧରି ମୁରଲୀବାବୁଙ୍କୁ ଚିହ୍ନିଛି ବୋଲି ଭାବିଲେ, ଦୁହିଁଙ୍କ ଆତ୍ମିକ ମେଳ କେଉଁ ପ୍ରକାର ବୁଝିବା କଷ୍ଟ । କିନ୍ତୁ ମୁରଲୀବାବୁଙ୍କ ପକ୍ଷରେ ଗୁଣଗ୍ରାହୀ ବଇଁଶୀବାବୁଙ୍କୁ ଚିହ୍ନିବାର ଉପାୟ ନଥିଲା । ରାସ୍ତା ସେପାଖର କେଉଁ ଦରଖୋଲା ଝରକାରୁ ଉଙ୍କି ମାରୁଥିବା ମୁହଁ ସୁଦୂର, ତେଣୁ ଅସ୍ପଷ୍ଟ । ସେ କେବଳ ଗଜଲକ୍ଷ୍ମୀଙ୍କୁ ଦେଖି ପାରୁଥିଲେ । ଏବଂ ଲକ୍ଷ୍ମୀଠାକୁରାଣୀଙ୍କ ଫାପୁଲା ହଳଦିଆ ମୁହଁ ଓ କଟକଟ ନାଲି ଶାଢ଼ୀ କଟକୀ ଉତ୍‌କଟତାର ଅନ୍ୟ ଏକ ନମୁନା ବୋଲି ଧରି ନେଇଥିଲେ ।

ଘୃଣା । ମୁରଲୀବାବୁ ଶବ୍ଦଟିକୁ ମନ ଭିତରେ ଖେଳେଇଲେ । ମୋର ଏଇ ନିଜ ସହର ପ୍ରତି ଏତେ ଘୃଣା ? କେହି ବିଶ୍ୱାସ କରିବେ ନାହିଁ । କହିବେ ମୁଁ ନିଜକୁ ସ୍ନବୁକ୍ ମାରି ରଗଉଛି, ନହେଲେ ମୋର ଉଦ୍ଦେଶ୍ୟ ସଫଳ ହେବ ନାହିଁ । କୌରବ କୁଟୁମ୍ବକୁ ଶତ୍ରୁ ବୋଲି ନ ମଣିଲେ ମହାଭାରତ ପୂରା ହୋଇ ପାରିବ ନାହିଁ !

ଗୋଟାଏ ସହଜ ପ୍ରଶ୍ନ ପଚାରି ପାରନ୍ତି ସେମାନେ—ବାବୁ, ଜନ୍ମମାଟି ଏତେ ଗନ୍ଧଉଛି ଯଦି, କୋଡ଼ିଏ ଏକୋଇଶ ବର୍ଷ ପରେ ପୁଣି ଫେରିଲୁ କାହିଁକି ? ସେଣ୍ଟିମେଣ୍ଟ ? ବାପାମାଆ କେବେଠୁଁ ଗଲେଣି । ମାଆ ତ ପିଲାଦିନୁ ଚାଲି ଯାଇଥିଲା, ବାପାଙ୍କ ବେଳକୁ କୋଉ ଦୂରବିଦେଶରେ ଥିଲୁ ବୋଲି ଆସିଲୁ ନାହିଁ । ଭାଇଭଉଣୀ କିଏ କୋଉଠି ଅଛନ୍ତି ଯାଇଁ । ବାକି ଯେତେକ ବନ୍ଧୁବାନ୍ଧବ, ସ୍କୁଲ୍‌ସାଙ୍ଗ, କଲେଜ୍‌ସାଙ୍ଗ, କାହାରି ସାଙ୍ଗରେ ତୁ ସମ୍ପର୍କ ରଖିନାହୁଁ କି ତାଙ୍କ ବିଷୟରେ ଜାଣିବାକୁ ଚାହିଁନାହୁଁ । ତଥାପି ତୁ ଫେରିଲୁ, ଆଉ ତୋ ଗଳିରେ ସେଇ ଘରେ ଯାଇ ପହଞ୍ଚିଲୁ, ଭଡ଼ାଟିଆ ଦଳଙ୍କୁ ଥାନ ଟିକିଏ ଦିଅ ବୋଲି ନେହୁରା ହେଲୁ··· କାହିଁକି ? କହୁଛୁ ଦି'ଦିନ ପାଇଁ ଆସିଛୁ, ଚାଲିଯିବୁ । କିନ୍ତୁ କାହିଁକି ?

ଘୃଣା କଣ ପ୍ରେମ ଠାରୁ ଏତେ ବଳବତ୍ତର ଯେ ତା'ର ଡାକରା ନ ଶୁଣି ରହି ହେଲାନାହିଁ ? କୋଉ ଛୁଣ୍ଡାଳୀ ରାଣ ପକେଇ ଫେରିବାକୁ କହିଥିଲା ତୋତେ ?

(ଛୁଣ୍ଡାଳୀର ନାଆଁ ବେଣୀ, ମନେ ନାହିଁ ?)

ଶେଷକୁ ମୁରଲୀବାବୁ ସେଇ ନିଲଠା ନ ଗ୍ରେଡ୍‌ବନ୍ଧା ଇମେଜ୍‌କୁ ସ୍ୱୀକାର କଲେ । ଇମେଜ୍ ନୁହେଁ, ଉପମା ନୁହେଁ, ରକ୍ତମାଂସର ପ୍ରାଣୀ, ହେଲା, ହେଲା । ତା'ମାନେ କହିବାକୁ ଚାହେଁ ମୁଁ ତା'କୁଇ ଦେଖିବାକୁ ଧାଇଁ ଆସିଲି ଏତେ ଦିନପରେ ? କୁତ୍ସିତା ବଞ୍ଚିଛି କି ମରିଛି, ବଞ୍ଚିଥିଲେ କେତେ ବୁଢ଼ୀ ହେଲାଣି, ଗାଲରେ କେତେ ପାଉଁଶ ଓଠରେ କେତେ ରଙ୍ଗ ବୋଳିଛି, ସେଇଆ ଦେଖିବା ପାଇଁ ? ତମ ମୁହଁକୁ ଲାଜ ନାହିଁ ?

ମୁରଲୀବାବୁ ବେଞ୍ଚଖଣ୍ଡିକ ପରିତ୍ୟାଗ କରିବାକୁ ବାଧ୍ୟ ହେଲେ । କାରଣ ତାଙ୍କର ଏକ ପ୍ରଚଣ୍ଡ ହସ ହସିବାକୁ ଇଚ୍ଛା ହେଲା, ଯାହା ଏଠି

କରି ହେବ ନାହିଁ । କିନ୍ତୁ ହସି ଉଠିବାର ପ୍ରବଣତାକୁ ପୂରଣ କରିବା ସଙ୍ଗେ ସଙ୍ଗେ ସେ ଆଉ କେତେଗୁଡ଼ିଏ କାମ କଲେ । ସିଗାରେଟ କାଢ଼ି ହିଆସିଲ ଉପରେ ଉଚିତରୁ ଠକ୍ ଠକ କରି ମୁହଁରେ ଲଗେଇଲେ, କିନ୍ତୁ ନିଆଁ ଧରେଇଲେ ନାହିଁ । ସେଇଠୁଁ ଦୋକାନର ପଛପଟକୁ ଯାଇ ଓଦା ଖଲିପଣ ଉପରେ ସଶବ୍ଦରେ ପରିସ୍ରା କଲେ···ସତେକି ସେ ପ୍ରଶ୍ନର ଅବମାନନା କରିବାକୁ ଚାହାନ୍ତି, ତା'କୁ କେବଳ ହସି ଉଡ଼େଇ ଦେବେ ନାହିଁ, ତା' ମୁହଁରେ—

ବେଶ୍ୟା ! ସେଇ ମୋ କଟକର ରାଣୀ ? ଅଧିଷ୍ଠାତ୍ରୀ ଦେବୀ ?

(ତମ ମୁହଁକୁ ଲାଜ ନାହିଁ ?)

ବେଶ୍ୟା ! ସୁରନାରୀ ନୁହେଁ କି ଦେବଦାସୀ ନୁହେଁ । ସେହିକା ଭିତରେ ଟଙ୍କାକିଆ, ଅର୍ଦ୍ଧନାରୀ···

( ଯୋଗ ଦେଖେଇ ଅଧିକା ଟଙ୍କାଏ ମାରି ନେଇଥିଲା, ସେ କଥା ଭୁଲ )

ନିର୍ଘାତ୍ ଅସଭ୍ୟ । ମୂର୍ଖ । କିନ୍ତୁ ମାନସିଂହ କବିତାର ହ'ଧାଡ଼ି ମନେ ରଖିଛୁ, ନିତମ୍ବ ଭୁଲି ବୃଷାଳ ଓଠ ଦୁଇଟାକୁ ଚଳେଇ କରି କହୁଛୁ, —ବାବୁ, କେମିତି ଲାଗିଲା ଆଜି ? ପ୍ରେମ କି ଥରେ ଆସି ଥରକେ ହୁଏ ଶେଷ ? ଆସିବ, ପୁଣି ଆସିବ, ଆହୁରି ଦେବି···

କେମିତି ଲାଗିଲା ସେଦିନ, ତା'ର ଇତିକଥା ଶୁଣେଇବା ପାଇଁ ଫେରି ଆସିଛୁ ଏତେଦିନ ପରେ ? ହେ ଭଗବାନ !

ହଉ ହେଲା, ମୁଁ କ୍ଷତବିକ୍ଷତ ହୋଇ ଫେରି ଆସିଛୁ ମୋର ସର୍ବପ୍ରଥମ ଘାଆକୁ ମନେ ପକେଇବା ପାଇଁ, ଘୃଣାକୁ ଆରମ୍ଭରେ, ଉଦ୍ଭବର ହିମାଳୟରେ ପହଞ୍ଚେଇ ଜାଳିବାପାଇଁ, କାଳେ ସେଇ ପାଉଁଶକୁ ବିଭୂତି ମନେକରି ଦେହସାରା ବୋଳି ପାରିବି । ଅତଏବ ମୋର ବେଶ୍ୟା ! ଏତିକି ବୁଝି ପାରୁ ନାହିଁ ?

ବେଶ୍ୟା ଗଳିକୁ ମଧ ଯିବି । କାହିଁକି ଯିବି ନାହିଁ ? କିନ୍ତୁ ଭଲ ହେବା ପାଇଁ ଯାହାଙ୍କ ପାଖକୁ ଯାଇଥିଲି ତାଙ୍କ କଥା କହୁନାହିଁ କାହିଁକି ?

ଗଳି ନୁହେଁ, ଏହିଭଳି ଗୋଟିଏ ଜାଗା, ରାସ୍ତା ସେପାଖକୁ ଯେଉଁ ପଡ଼ିଆ ଖଣ୍ଡିକ ଅଛି ଠିକ୍ ସେମିତିକା ପଡ଼ିଆକୁ ଲାଗି ବରଗଛ, ପଥର ଠାକୁରାଣୀ ···ଘରଟା ଭଳି ଦେଖା ଯାଉଛି ସିନା···

ସେଦିନ ମୋ ମୁଣ୍ଡ ବାଉଳା ହୋଇ ଯାଇଥିଲା । ଅନ୍ଧାର ହେଲା ପରେ ମୋର ଅନ୍ଧାରିଆ ସାଙ୍ଗ ମୋତେ ଏଇ ଅଞ୍ଚଳକୁ ନେଇ ଆସିଲା, ଆଉ ଗୋଟାଏ ଖଣ୍ଡି ପଡ଼ିଆ ମଝିରେ ଛିଡ଼ା ହୋଇ କୋଉ ଧୂଳିପକ୍କା ଘର ଆଡ଼କୁ ହାତ ଦେଖାଇ କହିଲା, —ଏଇ ହେଉଛି ଡାକ୍ତର ନନ୍ଦ ସେନାପତିଙ୍କର ଘର । ଡାକ୍ତରଟା ଘୁଅମୁହାଁ, ଆଉ ତାର ଝିଆଣ୍ଟା ପେଜପାଣି, ସେଇ ତା'ର ନର୍ସ, କିନ୍ତୁ ସେମାନେ ତୋତେ ଭଲ କରି ଦେବେ । ମୋତେ ତିନିତିନିଥର ଚେଙ୍ଗାକରି ଦେଇଛନ୍ତି ପରା ! କହି ହାଲିଦିଆ ଦାନ୍ତ ଗିଜଡ଼ି ହସିଲା । ମୋର ଇଚ୍ଛାହେଲା ମୁଥ ମାରି ତା'ର ଯେତେକ ଦାନ୍ତ ଝଡ଼େଇ ଦେବି···

ମୁଁ ଏମିତି ନୁହେଁ, ଏମିତି ନୁହେଁ ! ମୁଁ ତୋ ଭଳିଆ ବଜାରି ହଟାରି ନୁହେଁ । ମୁଁ ଖାନ୍‌ଦାନ ଘରର ପିଲା । ମୋର ଆଶା, ଆକାଂକ୍ଷା, ଆଦର୍ଶ କାହିଁରେ କଅଣ । କିଛି ହୋଇ ନାହିଁ ମୋର । ତୁ ଯାଆ ଏଠୁ । ଯା' ପଳା । ମର୍ !

ସେ ଚାଲିଗଲା ପରେ ମୁଁ ପ୍ରଥମେ ବରଗଛକୁ ଦେଖିଲି । ବରଗଛ ବେଦୀରେ ଠାକୁରାଣୀ ଥିଲେ । ମୋର ସ୍ପଷ୍ଟ ମନେ ଅଛି ।

ଠାକୁରାଣୀଙ୍କ ମୁହଁଫୁହଁ ଦିଶୁ ନ ଥିଲା । କିନ୍ତୁ ସେ ଥିଲେ । ଆଉ ମୁଁ ତାଙ୍କୁ ସାକ୍ଷୀ ରଖି କହିଲି—ଶୁଣ, ଡାକ୍ତର ମୋତେ ଭଲ କରି ଦେବ କି ନାହିଁ ମୁଁ ଜାଣେ ନାହିଁ । ହୁଏତ ମୁଁ ପଚି ସଢ଼ି ଯିବି । କିନ୍ତୁ ମୋ ମନ (ପ୍ରାଣ) (ଆତ୍ମା)କୁ କେହି ଖରାପ କରି ପାରିବ ନାହିଁ । ବୁଝୁଛ ମୁଁ କଣ କହୁଛି ?

ମୁଁ ଅସନା ନୁହେଁ ! ଗନ୍ଧିଆ ନୁହେ ! ବୁଝୁଛ ମୁଁ କଣ କହୁଛି ??

ମନେ ମନେ ବହୁତ ଜୋରରେ ପାଟି କରି ଉଠିଥିଲି । ଭାବିଲି ଠାକୁରାଣୀ ଯେତେ ମୁହଁ ଘୋଡ଼େଇ ଗୁମାନରେ ବସିଥିଲେ ବି' ମୋ କୁହାଟ ଶୁଣି ପାରିବେ ।

ଏଇ ପଡ଼ିଆ ? ଏଇ ବରଗଛ ? କିନ୍ତୁ ଠାକୁରାଣୀ ବିଶୁନାଥାଣ୍ଟ ତ ?
ଉଠିଗଲେଣି କି କଅଣ । କିନ୍ତୁ ଏଇ ଜାଗା । ନହେଲେ ମୁଁ ମୋ ଗଳିରୁ ବାହାରି ଆଉ କୋଉଠିକି ଗଲି ନାହିଁ କାହିଁକି ? କିଏ ମୋତେ ବାଟ କଢ଼େଇ ନେଇ ଆସିଲା ଏଠିକି ? ଏଇଠି ବସିଥିବା ପଇଁତରା ମାରି କଟକ ଉପରକୁ ଛେପ ପକେଇବାକୁ କହିଲା ? କଥା ହେଉଛି ଯେ ରାଗଟିକି ସାରି ଦେଲା ପରେ ମୁଁ ମୋର ଆରୋଗ୍ୟ ନିକେତନକୁ ଫେରି ପାରିବି, ସେଇଥିପାଇଁ ମୋ ବିଧାତା ଏଇ ବ୍ୟବସ୍ଥା କରିଛି ମୋ ପାଇଁ···

କିନ୍ତୁ ବିଧାତା କିମ୍ବା ଅନୁପସ୍ଥିତ ଠାକୁରାଣୀଙ୍କଠାରୁ କୌଣସି ଆଶ୍ୱାସନା ମିଳିଲା ନାହିଁ ।

ମୁରଲୀବାବୁ ବିକଳ ହେଲେ । କିନ୍ତୁ କାନ୍ଦିଲେ ନାହିଁ । କାନ୍ଦିବେ କେମିତି ? ସେ କଣ ସେତେବେଳର ଅର୍ବାଚୀନ ପିନ୍‌ପିନିଆ ବ୍ରଣମୁହାଁ ଟୋକା ହୋଇଛନ୍ତି, ଯାହାର ପଲମ ଆଖି ଖାସ୍ ଲୁହ ତିଆରି କରିବା ପାଇଁ ଗଢ଼ା ହୋଇଛି ବୋଲି ମନେ ହେବ ? ତାଙ୍କୁ ଆସି ଗୃଳଣ ହେଲାଣି । ବ୍ରଣଯାକ ନିଶ୍ଚିହ୍ନ ହୋଇଗଲାଣି, ତା'ର ଦାଗ ବୁଢ଼ିଚୁଷ୍ଟା ଗାଲର କଳାରେ ମିଶିଗଲାଣି । ଆଖି ଦି'ଟା ଅବଶ୍ୟ ସେମିତି ବଡ଼ ବଡ଼ ଅଛି, କିନ୍ତୁ ସେଥିରେ ନିଦାପଣ ଆସି ଗଲାଣି । ପାଣି ଝରିଲେ ଟପୁଡ଼ି ହୋଇ ଝରିବ, ରକ୍ତ ବାହାରି ପାରେ, ଏଭଳି ଅନୁମାନ ମଧ୍ୟ ଅସଂଭବ ନୁହେଁ । କଟକ ଛାଡ଼ିଲା ପରେ ମୁରଲୀବାବୁ ନାନା ଭାବରେ ବଡ଼ ହେଲେଣି, କେତେ ଉପରକୁ ଉଠିଲେଣି, କେତେ ଘାଟରେ ପାଣି ପିଇସାରି ଏଇକ୍ଷଣି ଗୋଟିଏ ପ୍ରତିଷ୍ଠା-ସମ୍ପନ୍ନ ଔଷଧ-ଅଡର ବ୍ୟବସାୟର ନମ୍ବର ଦୁଇ କର୍ତ୍ତା···ଏଇ କ୍ରମଶଃର ସଂଗ୍ରାମୀ ଇତିହାସ ବର୍ଣ୍ଣନା କରି ଲାଭନାହିଁ । ତା'ଛଡ଼ା ସେ ବାହାସାହା ହେଲେଣି (ଡାକ୍ତର କହିବା ଅନୁଯାୟୀ ବାହା ହେବା ପୂର୍ବରୁ ରକ୍ତ ପରୀକ୍ଷା କରି ନେଇଥିଲେ, ରକ୍ତରେ କିଛି ଦୋଷ ନ ଥିଲା), ଯୋଡ଼ିଏ ପୁଅଝିଅ, ବମ୍ବେରେ ଗୋଟିଏ ଫ୍ଲାଟ ମଧ୍ୟ କିଣି ସାରିଲେଣି । ଦାମ୍ପତ୍ୟ ଜୀବନର ସଂଗ୍ରାମକୁ ମଧ୍ୟ ଉଣା କରିବାର ନୁହେଁ, ତେବେ ସେଥିରେ ସେ ହାରି ଯାଇଛନ୍ତି ବୋଲି ଠିକ୍ କହି ହେବ ନାହିଁ । ବ୍ରଣ ପରି ସେତେବେଳେ ପରାଭବ ସ୍ମୃତିରେ ଲେସି ହୋଇଗଲାଣି । କୋଉ ଦାଗରେ କୋଉ କଳା ମିଶି ଯାଇଛି, କୋଉ ଚପା ଲୁହରେ କୋଉ କ୍ରୋଧ କାଦୁଆ ହୋଇ ଶିଗ୍ରାଧମ-

ମାରେ ଜରି ଯାଇଛି, ତା'ର ହିସାବ କିଏ ରଖିଛି ? ଦେଖିବାକୁ ଲମ୍ବାଳିଆ କୁଣକାୟ ଭଦ୍ରଲୋକଟିଏ ଶୀତଦିନିଆ ପୂର୍ବାହ୍ଣରେ କଟକର ଗୋଟିଏ ସାନ ରାସ୍ତା କଡ଼ରେ ଥିବା ଗୁହାଦୋକାନ ସାମ୍ନାରେ ପଇଁତରା ମାରୁଛନ୍ତି, ସମ୍ମୁଖ ଦୃଶ୍ୟବଳୀକୁ ସର୍ଭେ କରୁଛନ୍ତି । ହେଲା ଏବେ ମଝିରେ ମଝିରେ ଜବର୍ ଥୁ' କରୁଛନ୍ତି, ତେବେ ସେଥିରେ ବିଶେଷ କିଛି ନୂତନତ୍ୱ ନାହିଁ । କିନ୍ତୁ ଭଦ୍ରଲୋକ ଜଣକ କାନ୍ଦିବେ କେମିତି ? କଟକ ସହରକୁ ଯେତେ ଛିଃ କରି ଥୁ' କଲେ ମଧ୍ୟ ତା'ର ବିଚ୍‌ବଜାରରେ କାନ୍ଦି ପକେଇବେ, ଲୋକହସାକୁ ଖାତିର୍ କରିବେ ନାହିଁ, ଏଭଳି ସାହସ ତାଙ୍କର ନ ଥିଲା ।

ମୁରଲୀବାବୁ କାନ୍ଦିଲେ ନାହିଁ । କିନ୍ତୁ ସେଦିନର ଅମାନିଆ ଅବାରିତ ନିର୍ଝରକୁ ମନେ ପକାଇଲେ । ଗୋଲଖର ଦାନ୍ତିଗିଜଡ଼ା ଆଶ୍ୱାସନା ତା'ର ପ୍ରବାହକୁ ରୋକି ପାରି ନ ଥିଲା, ବରଂ ସୁଅମୁହଁକୁ ଖୋଲେଇ ଦେଲା । ରାତି ହେଲେ ମଧ୍ୟ ବଖାଟ୍ଟଣର ଆଲୁଅ ମୁହଁ ଉପରେ ପଡୁଛି, ସେଥିରେ ମୁଁ ମାଡ଼ଖିଆ ଅଥବା ମାଆଙ୍କେଡ଼ଣ୍ଡ ପିଲାଟାଏ ପରି ଉଦ୍‌ଭଟ ହାସ୍ୟାସ୍ପଦ ଦିଶିବି, ଏଭଳି ଆଶଂକା ମଧ୍ୟ ତାଙ୍କ ମନକୁ ଆସୁ ନ ଥିଲା । ସେ କେବଳ କାନ୍ଦୁଥିଲେ । ଯେମିତିକି ଗଙ୍ଗା ଏତେଦିନକେ ବାହି ଆସିଛି ଅନ୍ତରଶିବଙ୍କ ଶୀର୍ଷରୁ, ତା'କୁ ବହିବାକୁ ଦିଅ ।

ଘୁରି ବେଶ୍ୟାର ସଂସର୍ଗରେ ଆସି ସେ ଏମିତି ଗୋଟାଏ ଦୁଷ୍ଟ ରୋଗର କବଳରେ ପଡ଼ିଲେ, ତା'ର ପରିଣାମ କଣ ହେବ, ଖାଲି ଏଇ ଦୁଶ୍ଚିନ୍ତାରେ ସେ ହାରି ଯାଇଥିଲେ, ତା' ନୁହେଁ । ସେ କାନ୍ଦୁଥିଲେ ଏଇଥିପାଇଁ ଯେ ରୋଗ ଭଲ ହୋଇଗଲେ ବି' ତାଙ୍କୁ ସେମାନେ (ଗୋଲଖ, ବେଶ୍ୟା, ସମାଜ, ଅଦୃଷ୍ଟ, ଇତ୍ୟାଦି) ସାରାଜୀବନ ପାଇଁ ନଷ୍ଟ କରି ଛାଡ଼ି ଦେଇଗଲେ । ପ୍ରମାଣ କରିଦେଲେ । ଯେ ବାବୁଙ୍କ ଅସଲ ରୂପକୁ ଦେଖ । ଦେଖ କେମିତି ନାକ ବଙ୍କା ହୋଇ ଯାଇଛି, ଓଠ ଓହଳି ଯାଇଛି, ଆଖି ପଶି ଯାଇଛି କୋରଡକୁ । ଇଏ ମୋର ବିକୃତି, ପ୍ରକୃତି ନୁହେଁ, ନଉକୁଣା ଦେହର ଦାହକୁ ନେଇ କଣ ଗୋଟାଏ ହୋଇଗଲା ବୋଲି ଯେତେ ପାଟି କଲେ ବି କେହି ଶୁଣୁ ନଥିଲେ । ବିଶ୍ୱାସ କରୁ ନ ଥିଲେ ।

କିଏ ବିଶ୍ୱାସ କରିବ ? ବାପମାଆ ପରିବାର ? ନା ମୋ କଟକ ସହରର ଏଇ ସଙ୍କିଚରମାନେ ? ଅଫିମିଆ ରିକ୍ସାବାଲା ଯେ ମୋତେ ଆଉ ଗୋଲଘରକୁ ପହଁଚେଇଲା ଏଠି ? ସରବତ ଦୋକାନ ପାଖରେ ହୋ–ହଲ୍ଲା ହଉଥିବା ଟୋକାଗୁଡ଼ାକ ? ତାଙ୍କ ଆନଂଦରୁ ଦି’ ପଇସା ମାଗୁଥିବା କୁଷ୍ଠରୋଗୀ ? ନା ଦୂରରୁ ଝାଡ଼ ମଶାଲ ଧରି ବାଜା ବଜେଇ ଆସୁଥିବା ବରଯାତ୍ରୀଙ୍କ ଦଳ ? କହିବେ ଆମେ ଜାଣିଚୁ । ଦେହ କେମିତି ପୋଡ଼େ, ମନ କେମିତି ଭିଡ଼େ, କୋଉ ଗାତରେ ପଶେ, ଆଉ ପ୍ରାଣ ତା’ର ଦିବ୍ୟ ପେଁକାଳି ବଜଉଥାଏ । ଏମିତି ହୁଏ । ତମେ କୋଉ ସ୍ୱର୍ଗରୁ ଖସିଚ ନା କଅଣ ?

ବରଯାତ୍ରୀଙ୍କ ଦଳ ପାଖ ହୋଇ ଆସିଲାରୁ ସେବେକାର ମୁରଲୀବାବୁ ବଣାଖୁଣ୍ଟ ପାଖରେ ଛିଡ଼ା ହୋଇ ରହି ପାରି ନ ଥିଲେ । ତାଙ୍କ କାଂଦ ଧରା ପଡ଼ିଯିବ ସେଥିପାଇଁ ନୁହେଁ । ତାଙ୍କର ଲୁଚିଯିବାକୁ ମନ ହେଲା । ଯେମିତିକ ବର୍ତ୍ତମାନ ସେ ଶୁଭବିବାହର ସପ୍ତପଦୀ, ମଂତ୍ର ଅଗ୍ନି ଆଦି ପବିତ୍ରତାର ଧାସ, ସହି ପାରିବେ ନାହିଁ । ଯାହା ଟିକିଏ ବାକୀ ରହିଚି, ସିଝିଯିବ ।

ସେ ଧାଇଁଲା ପରି ହୋଇ ବରଗଛର ଅନ୍ତ ପାଖକୁ ଚାଲି ଆସିଲେ ଓ ମୁହଁଭଙ୍ଗା ଠାକୁରାଣୀଙ୍କ ମୁହଁକୁ ନିରେଖିଲେ । ସେଇଠୁଁ ସେ ପୁଣି ଥରେ ଏବଂ ଶେଷଥର ପ୍ରାୟ ଚିତ୍କାର କରି ଉଠିଲେ—

ନା ! ତମେ ଯଦି ସତରେ ଦେବୀ ହୋଇଥାଅ, ତା’ହେଲେ ବୁଝିବ । ବୁଝିବା ଉଚିତ । ମୁଁ ସେମିତି ନୁହେଁ ଇତର ସାଧାରଣ ନୁହେଁ । କାହାରି ସାଧ୍ୟ ନାହିଁ ମୋତେ ଅସତୀ କରି ଦେଇ ଯିବ । ଲୁହ ! ଲୁହ !! ସେମିତି କଥାକୁ ଜାଣିଥା···

ସେମିତି କଥାକୁ ମୁଁ ପଳେଇଯିବି । ଲୁଚିବି ନାହିଁ, ପଳେଇ-ଯିବି ତମ ସଂସାରରୁ । ତମର ଏଇ ଅବୁଝାମଣା ସମାଜସଂସାରର ଅଦଉତିରୁ । ପଡ଼ି ରହିଥାଉ ତମର (ମୋର) କଟକ, ଜନ୍ମ, ବାଲ୍ୟ, କୈଶୋର, ଯୌବନ, ସେଣ୍ଟିମେଣ୍ଟ୍, ଲଗାପଘା, ପଥରସିଂଦୁର ଦେବୀ-ପଣ । ମୁରଲୀବାବୁ ଲୁହଭିଜା କ୍ରୋଧର କାଡ଼ ଦେଖେଇଲେ । କିନ୍ତୁ

ସେ ପାଇଲେ କେବଳ ଛୁଗୁଲେଇଲା ପରି ବସନ୍ତ ପବନର ସୁଲୁସୁଲୁ ଆନଂଦ, ବରଗଛ ପତ୍ରର ମାନଙ୍କର ଫଡଫଡ ସମର୍ଥନ, ଆନନ୍ଦ, ଦୂରରୁ ମାଡ଼ି ଆସୁଥିବା ଶୁଭ ପରିଣୟର ନିର୍ଘୋଷ, ଆନନ୍ଦ···ଏବଂ ନାଳିମୁଣ୍ଡ କ୍ରୀଡ଼ା ଦେବାର ନିଷ୍ଫଳ ନିର୍ମମ ମହାନଂଦ ।

ଡାକ୍ତର ସେନାପତିଙ୍କ ପ୍ରତୀକ୍ଷା ଗୃହରେ ଏକୁଟିଆ ବସି ପଡ଼ି ଗୃହ ଆଡ଼କୁ ଅନେଇଲା ବେଳେ ତାଙ୍କର ଧାରଣା ହେଲା ଯେ ପରଦା ଆଡ଼େଇ ଦେଇ ଜଣେ କେହି ଆନଂଦରେ ହସି ହସି ପଶି ଆସିବ, ଏବଂ ସେ ଝପି-ବାକୁ ବାଧ୍ୟ ହେବେ—ଟୁ ହେଲ୍ ଉଇଥ୍ ୟୋର୍···

ସତପଣ୍ଡିକା ଯେ ପ୍ରଥମେ ଘର ଭିତରକୁ ପଶି ଆସିଲା ସେ ହସହସ ଦିଶୁଥିଲା, କିନ୍ତୁ ମୁରଲୀବାବୁ ତାଙ୍କ ରାଗ ଉଟେଇ ପାରିଲେ ନାହିଁ ତାଠିଁ । ଡାକ୍ତର ନୁହେଁ, ତା'ର ଝିଆରୀ ବୋଧହୁଏ । ଗୋଲଖର ଭାଷାରେ ପେଜପାଣି । ତା'ବୋଲି ସେ ଅଭିଶାପ ପାଇବାର ଅଯୋଗ୍ୟ ନୁହେଁ । ଯାହାହେଉ ପଛେ ଗୋଟାଏ ସ୍ତ୍ରୀ ଲୋକ । ସବୁ ଅନର୍ଥର ମୂଳ । ତଥାପି ମୁରଲୀବାବୁ ତାଙ୍କ ରାଗକୁ ତଡ଼ିଇ ପାରିଲେ ନାହିଁ, କାହିଁକିନା··· କାହିଁକିନା···ସେ ମାଇକିନିଆ ନୁହେଁ ନାରୀ ପରି ଦିଶୁଛି !

ମାନେ ଶସ୍ତା କ୍ୟାଲେଣ୍ଡରର ନାରୀଛବି, ଗୋଲ୍‌ଗୋଲ୍ । ବଙ୍କାଟଙ୍କା ଚେଡ଼ାମେଡ଼ା କିଛି ନାହିଁ କେଉଁଠି । ଧାର ନାହିଁ । ମୁନ ନାହିଁ ।

ସୁଂଦର ନୁହେଁ । କହିବାକୁ ଗଲେ ମୋ କେଶ୍ୟା ବ' ପ୍ୟା'ଠାରୁ ଲୋଭମାୟୁ । ହୋଇପାରେ ଗୋରୀ, ହେଲେ ଗୋରାପଣରେ ତେଜ ନାହିଁ (ପେଜପାଣି ନୁହେଁ, ଟଗୋଲଖ୍ ଇଜ୍ ଏ ଫୁଲ୍ ) । ଆଖି ଦି'ଟା ବଡ଼ ବଡ଼, କିନ୍ତୁ ଏତେ ଥିର କେମିତି ହେଲା ? (ମୋ ଆଖି ବି ବେଶ୍ ବଡ଼ ବୋଲି ସମସ୍ତେ କୁହନ୍ତି···ଧ୍ୟାତ୍ ! ଆଇ ଆମ୍ ଏ ଫୁଲ୍) । ନାକଟା ଅତି ସଳଖ । ଓଠ ବିଲ୍‌କୁଲ୍ ଫୁଲ ପାଖୁଡ଼ା ପରି, କିନ୍ତୁ ବୁଜି ହୋଇ ରହିଛି । କଥା କହୁଛି, ହେଲେ ଅଯଥାରେ ଖୋଲିବାକୁ ନାହିଁ । ଗୋଜ ହେଉ ନାହିଁ କୁଞ୍ଚେଇ ହେଉ ନାହିଁ···

ଅବଶ୍ୟ ଆଗନ୍ତୁକାର ଚେହେରା ନେଇ ଏଭଳି ବାଛବିଗୁଚ କରିବା ସଂଭବ ହେଲା ଅନେକ ସମୟ ପରେ, ଯେତେବେଳେ ତାଙ୍କ ଲୁହ ଶୁଖି

ଯାଇଥିଲା । ପ୍ରଥମେ ସେ କେବଳ ଗୋଟାଏ ବିରାଟ ବିସ୍ମୟରେ ଅନେଇଲେ ତା'ଙ୍କୁ, କିନ୍ତୁ ଅନେଇ ପାରିଲେ ନାହିଁ, ରଗିବାକୁ ଚାହିଁଲେ କିନ୍ତୁ ରଗି ପାରିଲେ ନାହିଁ ।

ଏବଂ ଦୁଃଖର ବିଷୟ, ଲଜ୍ଜାର କଥା, ସେ ଆହୁରି କାନ୍ଦିବାକୁ ଲାଗିଲେ !

ମୁରଲୀବାବୁ ମନେ ପକାଇଲେ । ମନେ ପକାଇଲାରୁ ତାଙ୍କ ଦେହ ଏକ ଅପୂର୍ବ ପୁଲକରେ ଶିହରି ଉଠିଲା । ଇଚ୍ଛା ହେଲା କୋଡ଼ିଏ ବର୍ଷ ତଳର ଅତୀତକୁ ଅନୁଭବ କରି ଏଇକ୍ଷଣି ବି' କାନ୍ଦି ପାରନ୍ତେ କି, ତାହାହେଲେ ସବୁ ଠିକ୍ ହୋଇଯାଆନ୍ତା, ପୁନରାଗମନ ପୂର୍ଣ୍ଣ ହୁଅନ୍ତା । ସେ କଣ କଷ୍ଟକରେ ନାହିଁ ଏଇକ୍ଷଣି ? ଥିବ, ନିଶ୍ଚୟ ଥିବ···

ମୁଁ ତା'ଠୁଁ ସହାନୁଭୂତି ପାଇବା ପାଇଁ ବିକଳ ହେଲି, ଆତ୍ମସମ୍ମାନ ଭୁଲି ଯାଇ ଗୋଟାଏ ଅଜଣା ଅଶୁଣା ସ୍ତ୍ରୀ ଲୋକ ପାଖରେ ଭେଁ ଭେଁ ହେଲି ସେମିତି କିଛି ନାହିଁ । ଆମେ ଆପଣା ଭାଷାରେ ଡକାଡକି ହେଲୁ । ଦୁହେଁ ଦୁହିଁଙ୍କୁ ଖୋଜୁଥିଲୁ, ଅନେକ ଦିନ ହେଲା ।

"ବସନ୍ତ" ବୋଲି କହି ନ ସାରୁଣୁ ସେ ଚଉକିଟିଏ ଟାଣି ଆଣି ବସିଲା ମୋ ପାଖରେ । ପଚାରିଲା, "କଣ ହୋଇଛି ଆପଣଙ୍କର ?"

ସେ ଘରେ ମଣିଷ କଂକାଳର ଛବି, ଡାକ୍ତରୀପାସ୍ ସାର୍ଟିଫିକେଟ୍, ଆଲମାରୀରେ ଶିଶିବୋତଲର ସମ୍ଭାର, ସୁଁ ସୁଁ ହେଉଥିବା ଲୁମା କୁକୁର, ଧୂଳିଆ-ମଳିଆ ବାସ୍ନା, ଇତ୍ୟାଦି ଥିଲା କି ନ ଥିଲା ବୋଲି କହି ପାରିବି ନାହିଁ । ସ୍ମୃତିରେ କେତେ ଡାକ୍ତର ଚେମ୍ବର୍‌ର ଦୃଶ୍ୟବାସ୍ନା ହୁଏତ ମିଶି ଯାଉଥିବ । କିନ୍ତୁ ତା'ର ଗୋରା ଗୋଲ୍‌ଗାଲ୍ ରୂପ, ଧୋବଶାଢ଼ୀ ନାଲିଧଡ଼ି, କପାଳରେ କଳାଟିକିଲି, ଧୀରବଚନ, କଥାରେ କମାଟିଏ ପକେଇଲା ପରି ଭାରୀ ଆଖିପତାର ପଲକ, ମୃଦୁ ବିଷାଦର ହସ, ସ୍ୱଚ୍ଛ-ତନୁର ଅଣବାସ୍ନା···ଏବଂ ଯଥାକ୍ରମେ ତା' ହାତପାପୁଲିର ସ୍ପର୍ଶ···ସବୁ ଟିକିନିଖି ମନେ ପଡ଼ି ଯାଉଛି । ହଁ, ସେ ମୋ ହାତରେ ହାତ ରଖିଲା, ଆପୁଡେଇଲା, ଡାକ୍ତର ଆସିବା ଯାଏଁ ଘୁଞ୍ଚେଇ ଦେଇ ନ ଥିଲା ।

ମୁଁ କଣ କହିଲି ସେ କଣ କହିଲା ବୋଲି ପତ୍ତର ନାହିଁ । ଶବ୍ଦଗୁଡ଼ାକ ଖଣ୍ଡିଆ, ବେକାର । ତାଙ୍କର ଆଳରେ ଓ ତାଙ୍କୁ ଆଡ଼େଇ ଦେଇ ଯାହା ଘଟିଲା ଆମ ଭିତରେ, ସେଇଆକୁ ଶୁଣ । କିଛି ଘଟିଲା ନାହିଁ ବୋଲି କିଏ କହିଲା ? ନ ହେଲେ ମୁଁ ଏତେ ବର୍ଷ ପରେ ଆସିଛି କାହିଁକି ଏଠିକି ?

ମୁଁ କହିଲି ମୁ ଦେହଟାକୁ ସଢ଼େଇ ଦେଲି, କିନ୍ତୁ ମୋତେ ବିଶ୍ୱାସ କର ମୋର କବିତା, ଇଂଦ୍ରଧନୁ, ପ୍ରେମ, ମିତ୍ର ଇତ୍ୟାଦିରେ ଆଂଚ ଲଗି ନାହିଁ...

ସେ କହିଲା ତୁମ ଦୋଷ ନୁହେଁ ଦେହର ଦୋଷ...

(ଦେହଟାକୁ ଲୁଚେଇ ଦିଅ ତୁମ ଗୁମ୍ଫା ଭିତରେ)

ମୁଁ କହିଲି ମୋ ମନଟାକୁ ମାଫ୍ କରି ପାରିବ ନାହିଁ, ସେଇ ତ ହମହମ ହେଲା, କୁତ୍ସିତକୁ ଲୋଭେଇଲା...

ସେ କହିଲା ତୁମ ଦୋଷ ନୁହେଁ ମନର ଦୋଷ...

(ମନଟାକୁ ଘୋଡ଼େଇ ଦିଅ ତୁମ ପଣତରେ)

ମୁଁ କହିଲି ଯାହାହେଉ ପଛେ ମୁଁ ପାପ କରିଛି, ଇତରତା ମାନେହିଁ ପାପ...

ସେ କହିଲା ଉଁ-ହୁଁ, ତା'ର କୁନୁମୁନିଆ ହସ ଅମରାବତୀର ନାକ ଫୁଲ ପରି ଦେଖା ହେଲା, କହିଲା ରଙ୍ଗ ମାନେ ହିଁ ପାପ, ବାସ୍ନା ମାନେ ହିଁ ଜୀବନ ମାନେ ହିଁ...

(ତା'ହେଲେ ଜୀବନଟାକୁ ଚିପି ମାରି ଦିଅ ତୁମର ରଙ୍ଗହୀନ ବାସ୍ନାହୀନ ନାସ୍ତି କୋଳରେ ନାସ୍ତି ଯୋଗରେ)

ମୁଁ କହିଲି ତୁମେ ମୋ ଭଉଣୀ । ସେ ମୋ ହାତକୁ ଆଦୁର ଆପୁଡେଇଲା । କହିଲା ହଁ, ହଁ, ମୁଁ ତୁମ ଭଉଣୀ । ମୁ ଅପେକ୍ଷା କରିଥିବି ତୁମ ପାଇଁ...

କୋଉଥି ପାଇଁ ଅପେକ୍ଷା କରିବ ? କେତେଦିନ ଯାଏଁ ଅପେକ୍ଷା କରିବ ? ସେଇ ମୁହୂର୍ତ୍ତରେ ସେତିକିବେଳେ କାହିଁକି ମୋତେ ଟାଣି ନେଲ ନାହିଁ ତୁମ ପାଖକୁ, ତୁମ ଦେହମନ ପ୍ରାଣରେ ଛୁଆଇଁ, ଗଢ଼େଇ ମିଶେଇ,

ଚେଷ୍ଟା କରି ନଷ୍ଟ ଭ୍ରଷ୍ଟ କରି ଦେଲ ନାହିଁ ? ଏତିକ କାହିଁକି ବୁଝିଲ ନାହିଁ ଯେ ସେଥିରେ କାହାର କଷ୍ଟ କହିବାର ନ ଥାଆନ୍ତା ? କାରଣ ତୁମେ ମାଇକିନିଆ ନୁହଁ, କେବଳ ନାରୀ, ରଙ୍ଗବାସ୍ନାହୀନା ନାରୀ, ବପୁଳା ନାରୀ, ଶସ୍ତା ନୁହେଁ ସ୍ଵର୍ଗୀୟ କ୍ୟାଲେଣ୍ଡରର ନାରୀ···

ରମଣୀ ନୁହଁ, ଦେଶୀପଣରେ ଦୂଷିତ ମାଆ ନୁହଁ, ନାଗରୀ ପଣରେ କ୍ଳିଷ୍ଟ ଝିଅ ନୁହଁ, ସମତାରେ ସ୍ନିଗ୍ଧ ସନ୍ତୁଳିତ ଭଉଣୀ, ତଥାପି ନାରୀ···

କାହିଁକି ନେଲ ନାହିଁ ମୋତେ ? ନେଲ ନାହିଁ ନା ନେଇ ପାରିଲ ନାହିଁ ? ସମାଜର ସ୍ତ୍ରୀ-ପୁରୁଷ ବାଡ଼ବତାକୁ ହଟେଇବାର ସାହସ କରି ପାରିଲ ନାହିଁ ?

ଯାହା ହେଉ, ମୁଁ ଫେରି ଆସିଛି ! ତମେ ଅପେକ୍ଷା କରିଥିବ ବୋଲି । ମିଛ ! ମୁଁ ପୁଣି ରୋଗୀ ହୋଇ ଆସିଛି ତୁମ ପାଖକୁ । ପ୍ରକାଶ୍ୟରେ ହୁଏତ କହିବ ଯେ ତୁମ କୃପାରୁ ମୁଁ ସର୍ବାଙ୍ଗରେ ସୁସ୍ଥ ହୋଇଗଲି, ଡାକ୍ତର ନୁହେଁ ତୁମେଇ ମୋତେ ବଂଚେଇ ଦେଲ, ତେଣୁ ମୁଁ ଆଜି ଧନ, ପ୍ରତିଷ୍ଠା, ପରିବାର ଗହଣରେ ସୁଖ କରୁଛି, ଇତ୍ୟାଦି । କିନ୍ତୁ ତା' ନୁହେଁ । ମୁଁ ଭଲ ହୋଇ ନାହିଁ । ତୁମେ ଯାହା କହିଥିଲ (କହି ନ ଥିଲ ?) ସଂସାର ବି ସେଇଆ ଶିଖେଇଛି ମୋତେ । ଯେ ରଂଗବାସ୍ନାଧିନକୁ ରମଣ କରି କେହି ଭଲ ହୋଇ ପାରେ ନାହିଁ । ରମଣରେ ବହୁ କନ୍ଦଳ, ମରାମରି, ଧସ୍ତାଧସ୍ତି, ଲହୁଲୁହ ବଢ଼ିବ ପଛକେ କମିବ ନାହିଁ । ହାକମ-ବଡ଼ଲୋକ ହେବ, ସ୍ଵାମୀ-ପ୍ରେମିକ ବନିବ, ବାପପଣିଆର ବାହାଦୁରୀ ନେବ, କିନ୍ତୁ ବନ୍ଧାଛୁଟିକା କମିକ ନାହିଁ । ଜୀବନଟା ଗୋଟାଏ ବେଶ୍ୟା, ତା'କୁ ଧରି ଶୋଇଲେ ହଜାରେ ରୋଗ, ସିଫିଲସ୍ ଠାରୁ ବଳି ମହା ମହା ରୋଗ ଆସିବ ନାହିଁ ତ ଆଉ କଅଣ ହେବ ? ମୁଁ ଫେରି ଆସି ନାହିଁ, ବର୍ତ୍ତମାନରୁ ପଳେଇ ଆସିଛି ଅତୀତକୁ ତା' ଉପରେ ଝେପ ପକେଇବା ପାଇଁ, ପୁଣି ପଳେଇବି ଏଠୁ । ହେଲେ ମୁଁ ଜାଣିଛି ଯେ ନିଉଛୁଣା ନିଜ ପାଖରୁ ପଳେଇ ଯାଇ ହେବ ନାହିଁ । ନିଜ କଷ୍ଟକରୁ ଉଦ୍ଧାର ନାହିଁ । କିନ୍ତୁ ଆଶିଛି ଗୋଟାଏ ଲୋଭରେ । କାଳେ ତୁମକୁ ଦେଖିବି ଆଉ କହି ପାରିବି, ସେତିକି କହି ପାରିଲେ ଜୀବନକୁ ପାନେ ଦେଇ ପାରିବି ଯେ··ଯେ···ମୁଁ ତୁମକୁ ଭଲ ପାଏ···

ତୁମକୁ ଶୁଣେଇ ପାରିଲେ ହେଲା । ତା'ହେଲେ ଯାଇଁ ଶାନ୍ତ ହେବ, ବୁଝିବ ଯେ ମୁଁ ମୋର ଅନ୍ତିମ ଆରୋଗ୍ୟକୁ, ମରଣକୁ, ମୋ ଭଉଣୀକୁ କୁଣ୍ଢେଇ ଧରି ପାରିବ କହିବ, ମୁଁ ତୁମକୁ ଭଲ ପାଏ···ଭଲ ପାଏ··· ଭଲ ପାଏ···

ଡ୍ୟାମ୍ ଇଟ୍ ! ବେଶ୍ୟାର ନାଆଁ ହୀରା ବୋଲି ମନେ ଅଛି । କିନ୍ତୁ ତୁମ ନାଆଁ କ'ଣ ବୋଲି ପଚାରିଲି ନାହିଁ ତ ? ନା ମୁଁ ପଚାରିଥିଲି, ଜାଣିଥିଲି, ହେଲେ ଭୁଲିଗଲି, ତୁମେ ଫିସାଦିଆ ପାଶୋରେଇ ଦେଲ ?

କିନ୍ତୁ ଆଜି ବଇଁଶୀବାବୁ ସେଇ ନାଆଁଟିକୁ ବାରମ୍ବାର ଉଚ୍ଚାରଣ କରୁଥିଲେ । ତା' ନାଆଁ ଥିଲା ମିତା । ନମିତାରୁ ମିତା । ତାଙ୍କର ପରଲୋକଗତା ପତ୍ନୀ । ଆଜିକୁ ପାଞ୍ଚବର୍ଷ ହେଲା ସେ ଚାଲିଯାଇଛି । ଶୋକଦଗ୍ଧ ସ୍ୱାମୀ ତାକୁ ଆଜଯାଏଁ ଝୁରି ହେଉଛନ୍ତି ସେଇଥିପାଇଁ ତା ନାଆଁକୁ ଘୋଷୁଛନ୍ତି, ବୋଲି କହିଲେ ଭୁଲ୍ ହେବ । ହୁଏତ ଆଂଶିକ ସତ୍ୟ । କାରଣ ଶୋକଠାରୁ ବଳି ଗ୍ଳାନି ତାଙ୍କୁ ଖାଉଛି । ଏମିତି ହୁଏ ମଝିରେ ମଝିରେ । ଅକାଳେ ସକାଳେ ଏଇ ପୁରୁଣା ଶ୍ୱଶୁର ଘର (ଉତ୍ତରାଧିକାରୀ ସୂତ୍ରରେ ନିଜ ଘର ହେଲେ ମଧ୍ୟ ଶ୍ୱଶୁର ଘର)ର ଚାରି-କାନ୍ଥ ଭିତରେ ତାଙ୍କ ଶ୍ୱାସ ରୁନ୍ଧ ହୋଇଯାଏ, ଚିତ୍ତ ଆଉଜି ହୁଏ । ମିତା ମଲା ପରେ ଏଇ ଘରର କେତେ ଅଦଳବଦଳ କରେଇଛନ୍ତି ସେ, ଯେମିତିକି ବେଶି ଖରା ପଡ଼ିବ ଅଗଣା ଉପରେ, ବେଶି ପବନ ବହିବ ଝରକା ବାଟେ, ଯୁଗ ଯୁଗର ଔଷଧଗନ୍ଧ ଉଡ଼ି ପଳେଇବ । ତଥାପି କେବେକେବେ ଏମିତି ହୁଏ । ମନେ ହୁଏ ଯେ ଉତ୍ତରାଧିକାର ସୂତ୍ରରେ ସେଇ ନିଜେ ରୋଗ ଆଉ ଔଷଧ ହୋଇ ରହିଯାଇଛନ୍ତି । ଖୁଡ଼ୁତାଶୁର ଡାକ୍ତର ମହାଶୟ ବୋଧହୁଏ ସେଇଆ ଚାହିଁଥିଲେ, ଆମ ନାଆଁରେ ଘର ଲେଖିଦେଲା ବେଳେ ସେଇ ମତଲବ ଥିଲା ତାଙ୍କର, ଯେମିତିକି ତାଙ୍କ କ୍ଲିନିକର ଯଶ ରହିଥିବ କାଳକାଳକୁ । ଏବଂ ମିତା ହେବ ବି ବୋଧହୁଏ ସେଇଆ ଚାହିଁଥିଲେ, ଯେମିତିକି ମୁଁ ଗନ୍ଧଟାକୁ

କେମିତି ଛଡ଼େଇବ ବୋଲି ବାଉଳା ହେଉଥିବ ଜୀବନଯାକ, ଆଉ ପଶିଥିବ ଏଇ ଘରେ । ଯେତେ ଚାହିଁଲେ ମଧ୍ୟ ପଳେଇ ଯାଇପାରୁ ନଥିବ । ପିଲା ଦି'ଜଣଙ୍କୁ ବାହାରକୁ ପଠେଇ ଦେଲି, ଆଶା କରୁଛି ସେମାନେ ସେଇ ଆଡ଼େ ଚାକରି ବାକରି କରି ରହିବେ, କସ୍ମିନକାଳେ ଏଇ ଅଂଧକୂପକୁ ଫେରି ଆସିବେ ନାହିଁ । ବାପ ତାଙ୍କର ପାଖକୁ ଯାଇ ଶେଷ ଜୀବନ ବିତେଇବ । କିନ୍ତୁ ଜାଣୁଛି ସେତିକ ମୋ କପାଳରେ ନାହିଁ । ଏମିତି ଶ୍ୱାସ ରୁଦ୍ଧ ହୋଇ ଯାଉଥିବ, ଛାତି ଚକଟି ହେଉଥିବ, ତଥାପି ମୁଁ ଏଇଠି ପଡ଼ି ରହିଥିବ । ଆଉ ଇଚ୍ଛାଟାକୁ ଗୋଟାଏ ମିଛ ଭାବନାକୁ ଖୋଳୁଥିବ ବସି—ମିତା କଅଣ ମୋର ପାଇଁ ମଲା ? ମୁଇଁ ତା'କୁ ମାରି ପକେଇଲି ?

ସମସ୍ତେ ଜାଣନ୍ତି ସେ ହାର୍ଟଫେଲ ହୋଇ ମଲା । ଅନେକ ଦିନୁ ହାର୍ଟ ଯଥାବିଧି କାମ କରୁ ନଥିଲା ସେକଥା ମଧ୍ୟ ଡାକ୍ତର ମାନେ ଜାଣନ୍ତି । ଆମ ଖୁଡ଼ୁତାଶୁର ବଞ୍ଚିଥିଲେ ଢ଼' କିଛି ଭଲ ନିର୍ଣ୍ଣୟ ବାଢ଼ି ନ ଥାଆନ୍ତେ । କହି ନ ଥାଆନ୍ତେ ଯେ ତାଙ୍କ କୋଷ୍ଠିକରେ ଗୋଟିଏ ଝିଅଆସି, ଅଭିଆଡ଼ା ଦାଦାଙ୍କର ସେଇ ଥିଲା ସବୁ, ସୁନାର ହୃଦୟ ନେଇ ଜନ୍ମ ହୋଇଥିଲା । ଆଉ ମୁଁ କଷ୍ଟ ଦେଇ ନଥିଲେ ସୁନାମୁଣ୍ଡା ଝିଅଟିକୁ ଥାଆନ୍ତା ଚିରଦିନ !

ତା'ଛଡ଼ା କଏ କହିବ ଦେଖି ଯେ ମୁଁ ତା'କୁ କଷ୍ଟ ଦେଇଛି ? କୋଉ ତା'ର ଅଭାବ ଅସୁବିଧା ବୁଝି ନାହିଁ, ଶାଢ଼ୀ ଗହଣା କିଣି ଦେଇ ନାହିଁ, ଘରର ପୂଝାରୀ ଖଂଜ ଦେଇ ନାହିଁ କି ତା'ର କୋଳ ଭରି ଦେଇ ନାହିଁ ? ଖାଲି ସେତିକ ନୁହେଁ । ଭଗବାନ ଜାଣନ୍ତି, ଯେ ମୁଁ ତା'ର ହଜାରେ ତଥାକଥିତ ଭାଇମାନଙ୍କୁ (ମେରୁଦଣ୍ଡ ବିହୀନ ବେକାର ଛାତ୍ରବୀ ମାନଙ୍କୁ, ତା' ଦାଦାଙ୍କର ଅପରିଚ୍ଛନ୍ନଆ ରୋଗୀମାନଙ୍କୁ) ଡ୍ରଇଂରୁମରେ ବସେଇଛି, ଚା' ଜଳଖିଆ ଦେଇଛି, ଘଣ୍ଟା ଘଣ୍ଟା ଧରି ଭଉଣୀଙ୍କ ସାଙ୍ଗରେ ଫୁସ୍‌ଫୁସ୍ ହେବାର ସୁଯୋଗ ଦେଇଛି ।

ହଁ, କେବଳ ଗୋଟିଏ କଥା ଯେ ମୁଁ ତା'କୁ ଭଲ ପାଇନାହିଁ । ତା'ର ବୁଝିବାରେ ବାକୀ ରହିଁ ନାହିଁ ଯେ ମୁଁ ତା'କୁ ଭଲ ପାଇବ ନାହିଁ ।

ସେଇଥିରେ ତା'ର ହୃଦପ୍ପ ଦବ ଦବ ଗଲ, ସେଇଠୁଁ ଠକ୍ କାନ ରହିଗଲ ?
ନନ୍‌ସେନ୍‌ସ !

ଯେତେକ ବଇଦ ଡାକ୍ତର ସାଇକୋଲଜିଷ୍ଟ ଗୁଣୀଙ୍କାମାମାନେ ନିଶାପ କରନ୍ତୁ। ସେ ନିଜେ କହୁ। ଯେ ଗୋଟିଏ ଗୋଲମୁହିଁ ଲୁତୁପୁତୁ ଗୋଷ୍ଠ ପ୍ରତିମା, ଟିକିଏ ବୋଲି ଛଇ ନାହିଁ କି ଚାଲି ନାହିଁ। ଦୃଷ୍ଟିପ୍ପା ଶୁଁ ଦ ପରି ହସେ, କାନ୍ଦିବା ରାଗିବା ତା' ଜାତକର ନାହିଁ, ଅଥଚ ମୋ ସୂର୍ଯ୍ୟଉଠା ସକାଳରେ ଧୋବଲ ଶୁଁ ଦ ପରି ଅକାରଣରେ ମୁହଁ ଦେଖାଏ, ସତେକି ବିଫଳ ରାତିର ଚେହେରା ଦେଖଉଛି, ଏମିତି ଗୋଟିଏ ନିରମିଷିଆ ହେଲେ ନଗ୍ଗେଉଡ଼ବନ୍ଧା ପ୍ରାଣୀକୁ କେଉଁ ପୁରୁଷ ଭଲ ପାଇ ପାରିବ ?

ତା'ହେଲେ ମୁଁ ତା'କୁ କାହିଁକି ବାହା ହେଲି ବୋଲି ପଚ୍ଚର ନାହିଁ। ପଚ୍ଚରୁନା' ସେ କାହିଁକି ମୋତେ ବାହା ହେବାକୁ ରାଜି ହେଲା ? ରୋଗୀ ହୋଇ ନୁହେଁ, ମୋର କଂଟ୍ରାକ୍ଟର କାମରେ କେତେ ଥର ଡାକ୍ତର ସେନାପତିଙ୍କ ପାଖକୁ ଆସିଛି (ଡାକ୍ତରବାବୁ ନାନାଦି ଅନୁଷ୍ଠାନର ବଡପଣ୍ଡା ଥିଲେ କି ନା, ସେଇଥିଲାଗି) ସେଇଠୁଁ ମିତା ସାଙ୍ଗରେ ଦେଖା ହୋଇଛି। ପ୍ରଥମ ଦେଖାରେ ମୋ ମନକୁ ଆସିଥିଲା— ଏଇଟି କିଉଳ ନାଗ ? ପୃଥିବୀର ନୁହେଁ, ବୋଧହୁଏ ଶୀତଳ ଚନ୍ଦ୍ରଲୋକରୁ ସିଧା ଓହ୍ଲେଇ ଆସିଛି। ହସିଥିଲି ମନେ ମନେ। ଦସ୍ତା ଦେଖେଇ ଥିଲି। ତଥାପି ବର୍ଷେ ନ ଯାଉଣୁ ତା'କୁ ବାହା ହେବାର ପ୍ରସ୍ତାବ କଲି···କାହିଁକି ? କହିବି କାହିଁକି ? ମୁଁ ତା'କୁ ଜିଣିବାକୁ ଚାହିଁଲି, ତା'ର ନକଲି ଶୁଭ୍ରତାକୁ ନଷ୍ଟ କରି ଦେବାକୁ ଚାହିଁଲି। ଗୋଷ୍ଠ ପୁତୁଳି କ'ଣ ବୋଲି ଭାବୁଛି କି ନିଜକୁ ? ନ ହେଲା ନାହିଁ। ମାନୁଛି ଯେ କେଉଁ ଏକ ଧୂସର ସନ୍ଧ୍ୟାରେ ମୋତେ ହାଲଆ ଲାଗିଲା। ମନେ ହେଲା ଯେ ମୋର ମିସ୍ତ୍ରୀମାନେ, ମହାଜନ ମାନେ, ରମଣୀମାନେ ମୋତେ ବଡ଼ କଷ୍ଟ ଦେଲେଣି। ମୁଁ ଆଉ ପାରୁ ନାହିଁ। ଏଥର ଶୋଇ ପଡ଼ଲେ ହେବ। ଶୋଇବି ଯଦି ଏଇ ଛବିନାଗଟି ପାଖରେ ଲମ୍ବିଗଲେ କେମିତି ହେବ ? ଆଶା କରୁଛି ସେ ମୋତେ ବେଶ ମଜାରେ ଶୁଆଇ ପକେଇବ।

ସେ କଣ ଏତକ ବୁଝିପାରିଲା ନାହିଁ ? ବୁଝିଲା ଯଦି ବାଧା ହେଲା କାହିଁକି ?

ଯାହାହେଉ ସ୍ୱାମୀ ହିସାବରେ ମୁଁ ତୋତେ କେଉଁଥିରେ ଊଣା କରିନାହିଁ । ମୁଁ ପୁଣି ସେଇ କଥା କହୁଛି ଜୋର୍ କରି । ମୁଁ ତୋତେ ଯଥାବିଧି ଓ ଯଥେଷ୍ଟ ରମଣ କରିଛି । ତୁ ତୋ ଆଡୁ କିଛି ଆରମ୍ଭ କରି ନାହୁଁ, କେବେହେଲେ ମୋର ଅସଭ୍ୟ ପ୍ରେମକଥା କି ପ୍ରେମକାମରେ ଯୋଗ ଦେଇ ନାହୁଁ (ଯଦିଓ ବାଧା ଦେଇ ନାହୁଁ), ତଥାପି ମୁଁ ରାତିପରେ ରାତି ତୋତେ ଦେଇଛି—ନେଇଛି । ହୁଏତ ରାତି ବେଳକୁ ମୁଁ ମୋର କେଉଁ କଳ୍ପିତ ବା ପ୍ରକୃତ ରମଣୀକୁ ସ୍ମରଣ କରିଛି, ଯେ ଛବି ନୁହେଁ, ଯାହାର ସ୍ଫୁରନ୍ତ ବାସ୍ତବ ସ୍ତନ ଅଛି, ଜଘନ ଅଛି, କଥାରେ ଶାଣ ଅଛି, ଭାବରେ ରସବୋଳା ଶ୍ଳେଷ ଅଛି·· ସେଥିରେ ତୋର ଯାଏ କେତେ ଆସେ କେତେ ? କିନ୍ତୁ ରାତି ଶେଷରେ ତୁ ମୋତେ ଭୁଲ୍ଲାଟାକୁ ଆଙ୍ଗୁଳି ଦେଉଥିଲୁ, ସତେକି ମୁଁ ହେଉଛି ରୋଗୀ, ମୁଁ ନିଜକୁ କଷ୍ଟ ଦେଇଛି, ନିଦାରୁଣ ଶତ୍ରୁ ସାଙ୍ଗରେ ଯୁଦ୍ଧ କରି ହାରି ଯାଇଛି···ମୂର୍ଖ !

ମୁଇଁ ତୋତେ ଭଲ କରି ଦେବାକୁ ଚାହିଁଥିଲି, ପୁରୁଷର ନାଶ କରିବା ପାଇଁ ବସିଥିଲି···ବୁଝୁଛୁ ? ବୁଝୁଛୁ ??

ଦିନବେଳେ ବି' ଆଙ୍ଗୁଳି ଦେଉଥିଲୁ, କେବଳ ହାତରେ ନୁହେଁ, ଧୀର ବଚନରେ । କାମକୁ ବାହାରିଲା ବେଳକୁ ପକେଟ୍‌ରେ ଠାକୁରଙ୍କ ଧଣ୍ଡା ପୂରେଇ ଦେଉଥିଲୁ, ଭଲମନ୍ଦ ରାନ୍ଧି ଖୁଆଉଥିଲୁ, ପୋଷାକ ସଜାଡୁଥିଲୁ, ମୋ ପିଲାଙ୍କ ଅଳଅର୍ଦଳି କଳକଳିଆ ବୁଝୁଥିଲୁ ନିଜେ, ବାପାଙ୍କୁ ହଇରାଣ କର ନାହିଁ, ବାପାଙ୍କର ଦେହ ଭଲ ନାହିଁ, ମୁଣ୍ଡ ବଥଉଛି, ଇତ୍ୟାଦି ବାଜେ କଥା କହୁଥିଲୁ । ମୋ ସୂର୍ଯ୍ୟଉଠା ଦିନରେ ଗୋଡ଼ଉଥିଲୁ ମୋ ପଛରେ, ସତେ ଚଉଳିଆ ଖଣ୍ଡେ ଧରି ଝାଳ ପୋଛିବା ପାଇଁ···ତଥାପି କୋଉ ମୁହଁରେ କହୁଛୁ ଯେ ମୁଁ ତୋତେ ଭଲ ପାଇ ଥାଆନ୍ତି ?

ନା, ତୁ କିଛି କହି ନାହୁ । ତୋ ପାଟି ଖୋଲେ ନାହିଁ । କାଳେ ଭୁଲ୍‌ରେ ପାଟି ଖୋଲିବ ବୋଲି ମରିଗଲୁ ଶେଷକୁ !

ମରୁ ! ମୁଁ ତୋତେ ମାରି ଦେଇ ନାହିଁ । ମିଛ, ବିଲ୍‌କୁଲ୍ ମିଛ !

କିନ୍ତୁ ଆସିବୁ ଯଦି ଆ' କେଉଁ ବାଟରେ ହେଲେ । ମୁଁ ସିନା ତୋର ସ୍ୱର୍ଗକୁ ଯାଇ ପାରିବି ନାହିଁ, ତୁ କଣ ଥରୁଟିଏ ମୋର ମର୍ତ୍ତ୍ୟକୁ ଆସି ପାରନ୍ତୁ ନାହିଁ ?

ସେଇଠୁଁ ବଇଁଶିବାବୁ ଘରୁ ବାହାର ଆସିଲେ ଓ ଘର ସାମ୍ନାରେ ଥିବା ଛୋଟିଆ ବଗିଚା ଖଣ୍ଡିକରେ ବୁଲିଲେ । ମିତା-ବେଳର ବଗିଚା ଗଲାଣି କେବେଠୁଁ । ସେଇ ତା'ର ଫୁଲଫଳକୁ ଆଉଁସୁଥିଲା, ଖୁଏଇ ପିଏଇ ବଢ଼ଉଥିଲା । ତଥାପି ବଇଁଶୀବାବୁ ବଗିଚାକୁ ମରିବାକୁ ଦେଇ ନାହାନ୍ତି । ଚାକର ହାତରେ ହେଉ ପଛକେ କିଛି ନା କିଛି ଲଗେଇ ଥାଆନ୍ତି । ଏଇକ୍ଷଣି ସେଠି କେଇଟା ମୁରୁକୁଟିଆ ବାଇଗଣ ଗଛ ଓ ଶାଗ କଆରୀ ମହଜୁଦ୍ ଅଛି । ବଇଁଶୀବାବୁ ତା'ର କଡ଼େ କଡ଼େ ବୁଲିଲେ । ଏବଂ ହଠାତ୍ ତାଙ୍କର କଣ ମନ ହେଲା କେଜାଣି ଗୋଟାଏ ବାଇଗଣ ପତରରେ ଆପଣା ହାତକୁ ଥାପିଲେ, ତା'ର କଣ୍ଟା କଣ୍ଟା ମୁନରେ ଦବେଇଲେ···ଆହୁରି··· ଆହୁରି···କେତେ ଗଭୀରକୁ ଗଲେ ରକ୍ତ ବାହାରିବ ?

ଇତି ମଧ୍ୟରେ ମୁରଲୀବାବୁ ସ୍ଥିର କରି ସାରିଲେଣି ଯେ ଇଏ ସେଇ ଜାଗା । ସେଇ ଖଣ୍ଡି ପଡ଼ିଆ । ସେଇ ବରଗଛ । ଘରର ଚେହେରା ମନେ ପଡୁ ନାହିଁ, ହୁଏତ ବଦଳି ଗଲାଣି । ବରଗଛ ବେଢ଼ାରୁ ଠାକୁରାଣୀ ଉଠିଗଲେଣି ନିଶ୍ଚୟ, କାହିଁକି ଭଗବାନଙ୍କୁ ଜଣା । କିନ୍ତୁ ମୋର ଧାରଣା ଭୁଲ୍ ନୁହେଁ । ପାଣିପବନ ବାସୁଛି ପରି କଉ, ସୁଭୁରା ହଉ କି ମୁଭୁରା ହଉ ମୋ କଟକକୁ ମୁଁ ଚିହ୍ନିବି ନାହିଁ ତ ଚିହ୍ନିବ କିଏ ?

ଅବଲମ୍ବେ ମୁରଲୀବାବୁ ରାସ୍ତା ପାରି ହୋଇ ପଡ଼ିଆ ମୁଣ୍ଡରେ ପହଞ୍ଚିଲେ । ବାଆଁକୁ ବରଗଛ, ସାମ୍ନାରେ ଗଜଲକ୍ଷ୍ମୀ କୋଠାଘର ଖଣ୍ଡିକ । ସେଇଠୁଁ ?

ଦାଣ୍ଡବାଡ଼ି ମଝିରେ ଜଣେ ଭଦ୍ରଲୋକ । ନଇଁ ପଡ଼ି ଲାଗିଛନ୍ତି କୋଉ ଗଛ ସାଙ୍ଗରେ । ଯିବି ତାଙ୍କ ପାଖକୁ ? ପଚାରିବି ? କଣ ପଚାରିବି ?

ଯାହାହେଉ ମୁରଲୀବାବୁ ବେଶି ସମୟ ଦ୍ୱିଧାରେ ପଡ଼ିଲେ ନାହିଁ । ଆବେଗ ପ୍ରବଳ ହୋଇ ଉଠିଲା । ତେଣୁ ସେ କୋଠା ଘରକୁ ମୁହେଁଇଲେ, ଫାଟକ ଖୋଲି ଭଦ୍ରଲୋକଙ୍କ ସାମ୍ନାରେ ଆସି ଛିଡ଼ା ହେଲେ । ଆରମ୍ଭ କଲେ—ଏକ୍ସ୍‌କିଉଜ୍ ମି...

ବଇଁଶୀବାବୁ ମୁଣ୍ଡ ଟେକିଲେ । ଦେଖିଲେ ସେଇ କଦାକାର ଲୋକଟା । ଅନ୍ତରଙ୍ଗ ଯନ୍ତ୍ରଣାର ସୁଖ ପାଉଥିବା ବେଳକୁ ଏମିତି ଗୋଟାଏ ଲୋକ ଦେଖା ନ ଦେଇ ସୁଦୃଶ୍ୟ ଲୋକଟିଏ ଆସିଥିଲେ ସେ କମ୍ ବିରକ୍ତ ହୋଇଥାଆନ୍ତେ, ଏଭଳି କୁହାଯାଇ ନ ପାରେ । ତେବେ ସେ ବିରକ୍ତ ହେଲେ । ମୁରଲୀବାବୁଙ୍କ ସୌଖୀନ କୃଶକାୟତା ଉପରେ ନଜର ଛଅଫୁଟିଆ ସ୍ୱାସ୍ଥ୍ୟବାନ୍ ଟେଞ୍ଜି ଲୁଙ୍ଗି ପିନ୍ଧା ଚେହେରାକୁ ନୋଳି ଧରିଲେ । ପଚାରିଲେ, "କଣ ଦରକାର ?"

"ମୁଁ ପଚାରୁଥିଲି...ଯେ...ଏଠି କଣ ଡକ୍ଟର ସେନାପତି ଥାଆନ୍ତି ?"

"ଥିଲେ । ବର୍ତ୍ତମାନ ନାହାନ୍ତି । ଦଶବାର ବର୍ଷ ହେଲା ମରିଗଲେଣି ।"

"ଓ—ଆଇ ଆମ୍ ସରି..."

ବିରାମ । ଦୁହେଁ ଚୁପ୍‌ଚାପ୍ । ଶେଷକୁ ବଇଁଶୀବାବୁଙ୍କ ପାଟିରୁ ବାହାରି ଆସୁଥିଲା । ଯେ ଆପଣ ଯାଇପାରନ୍ତି ଏଥର । ଏହି ସମୟରେ ଆଗନ୍ତୁକ ଅଙ୍ଗଅଙ୍ଗ ହୋଇ ପ୍ରଶ୍ନ କଲେ, 'କ୍ଷମା କରିବେ, ତାଙ୍କର ଜଣେ ଝିଅଥିଲେ ଥିଲେ, ତାଙ୍କର ନାଆଁ ମନେ ପଡ଼ୁ ନାହିଁ, ସେ କୋଉଠି ରହନ୍ତି କହି ପାରିବେ କି ?"

"ନାଆଁ ମନେ ପଡ଼ୁ ନାହିଁ ?" କହି ଭଦ୍ରଲୋକ ଟିକିଏ ଗୁଲେଇଲା ପରି ହସିଲେ ଓ ପଚାରିଲେ, "ତାଙ୍କୁ ଖୋଜୁଛ କାହିଁକି ତା'ହେଲେ ?"

"କାହିଁକିନା...ଆଇ ମିନ୍...ସେ ମୋର ଭଉଣୀ ଥିଲେ..."

ପ୍ରତ୍ୟୁତ୍ତରରେ ଭଦ୍ରଲୋକ ମୁରଲୀବାବୁଙ୍କ ପ୍ରତି ଯେଉଁଭଳି ଦୃଷ୍ଟି ନିକ୍ଷେପ କଲେ ସେଥିରେ ମୁରଲୀବାବୁଙ୍କର ମନେ ହେଲା ଯେ ଏଭଳି ଉତ୍କଟ ବିଷାକ୍ତ ଗୁହାଣୀ ସେ କେଉଁଠି କେବେହେଲେ ଦେଖିବାକୁ ପାଇ ନ ଥିଲେ । ଭାବିଲେ, କେବଳ ମୋ କଣ୍ଠକରେହିଁ ସମ୍ଭବ...



# ଧୋ' ବାୟା

ଧୋ' ବାୟାର ଅର୍ଥ କଅଣ ପରୁର ନାହିଁ, କିନ୍ତୁ ଜଣାଶୁଣା କଥା ଯେ ସେଥିରେ ପିଲାମାନେ ଶୋଇ ପଡ଼ନ୍ତି । ସେମିତିକା ଆଉ କେତେ ଗୀତ ଅଛି ଇଂରେଜୀରେ, ତଥା ଦେଶବିଦେଶର ବିଭିନ୍ନ ଭାଷାରେ । ବିଶ୍ୱ ବିଖ୍ୟାତ ମୁଣ୍ଡ ବିହୀନ ଗୀତ, ଖାସ ତାଙ୍କର ପାଇଁ । କାରଣ ଦୁର୍ବୃତ୍ତ ମାନେ ସହଜେ ଶୁଅନ୍ତି ନାହିଁ । କୁଦା ମାରୁଥିବା ମେଣ୍ଢାମାନଙ୍କୁ କେମିତି ଗଣିବାକୁ ହୁଏ, ସେ ବିଦ୍ୟା ସେମାନେ ଶିଖି ନାହାନ୍ତି । ଅଥଚ ପ୍ରକୃତିକୁ ତା କାମ କରିବା ପାଇଁ ଗୁଡ଼ ଦିଆ ଯାଇ ନ ପାରେ । ତା'ହେଲେ ସେମାନେ ଅବେଳରେ ଶୋଇ ପଡ଼ିବେ, ଏବଂ ରାତି ଅଧ ଯାଏଁ ରହି ବାପ ମାଆଙ୍କ ଜୀବନ ବରବାଦ କରିବେ । ମାଡ ମାରିଲେ ଆହୁରି ବିପଦ । ତେଣୁ କେବଳ ଗୋଟିଏ ଉପାୟ ଯେ ତାଙ୍କୁ ସଙ୍ଗୀତର ଗଦ ସୁଙ୍ଘେଇବାକୁ ପଡ଼ିବ, ମାନେ ଠକେଇବାକୁ ପଡ଼ିବ, ଯେମିତି କି ଆପଣାଛାଏଁ ତାଙ୍କ ଆଖିପତା ବୁଜି ହୋଇ ଆସିବ ଏବଂ ବିଚରାମାନେ ନିଦ ମାଉସୀର ଆତିଥ୍ୟ ସ୍ୱୀକାର କରିବାକୁ ବାଧ୍ୟ ହେବେ ।

କିନ୍ତୁ ଏତେ ପଧିଆ କରିବା ପାଇଁ କାହାର ବେଳ ଅଛି ? ଅତଏବ ବେକାର ବୁଡ଼ୀମା ଆସିବା ହୁଅନ୍ତୁ । ବୁଡ଼ୀମା ନ ହେଲେ ବୁଡ଼ାବାପା । ଯେଉଁମାନଙ୍କ ପାଇଁ ସମୟ ଗୋଟିଏ ନିରବଚ୍ଛିନ୍ନ ଝୁଲା । ସେଥିରେ ହଲ ଦୋହଲ ବୋର୍ ହେବାଠାରୁ କୁନାକୁନିଙ୍କୁ ପାଖରେ ଝୁଲେଇଲେ ଉତ୍ତମ । ସଙ୍ଗସୁଖର ଆନନ୍ଦ ମିଳିବ । ହୁଏତ ଏମିତି ହୋଇପାରେ ଯେ ସେମାନେ ଶୋଇ ପଡ଼ିବା ଆଗରୁ ନିଜ ଆଖିକୁ ନିଦ ଆସିଯିବ ।

ଏହି ଦୃଷ୍ଟିରୁ ଗଣେଶ୍ୱର ବାବୁ ପୁଅର ପୁଅ ତିନିବର୍ଷିଆ ଭାସ୍କର ବନାମ ଭୁଷାକୁ ଶୁଆଇ ଠକାଇବାର ଦୃଶ୍ୟ ଆମ ସଂସ୍କୃତିର ଏକ ଚିର-ପରିଚିତ ଚିନ୍ ବୋଲି ମାନି ନେବାରେ ବାଧା ନାହିଁ । କିନ୍ତୁ ଟିକିଏ ପାଖକୁ ଗଲେ ବୁଝିବ ଯେ ଚିଜଟି ନିଆରା । ପ୍ରଥମେ ଦେଖିବ ଯେ ଏଇ ବୁଢ଼ାବାପା ଜଣକ ବିଶେଷ ବୁଢ଼ା ନୁହନ୍ତି, ଏବଂ ତାଙ୍କ ଆଖି ପହିଲେ ବୁଜି

ହୋଇଯିବ ଏଭଳି ଆଶଂକାର କାରଣ ନାହିଁ । ଗ୍ଲେଚ ଆଖି ଦ୍ୱ’ଟା ଫଡ଼ା ଫଡ଼ା ହୋଇ ଅନେଇଛି । ସତେ କି ସେ ବନ୍ଧପରିକର ଯେ ପିଲ-ଟାକୁ କୌଣସିମତେ ଶୁଆଇବାକୁ ପଡ଼ିବ । ବାକି ସବୁ କାମ ପଛରେ । କାର୍ଯ୍ୟଂ ବା ସାଧୟେତ୍ ଶରୀରଂ ବା ପାତୟେତ୍ । ଦ୍ୱିତୀୟରେ ଗୀତର ଶବ୍ଦରେ କିଛି ଭୁଲ୍‌ଭଟକା ନ ଥିଲେ ମଧ୍ୟ ତା’ର ଗାୟନରେ ଭୂଷା ପରି ଗୋଟିଏ ଚତୁର ଓ ଚଗଲା ପିଲ କେମିତି ଶୋଇ ପଡ଼ୁଛି, ତାହା ଭାବିବାର ବିଷୟ । ଯେହେତୁ ଗାୟକର କଣ୍ଠସ୍ୱର ଲଳିତ ବୋଲି କୁହା ଯାଇ ନ ପାରେ । ଧୋ’ରେ ବାସ୍ନା କହିଲା ବେଳକୁ ମନେ ହେଉଛି ସେ ବାସ୍ନାକୁ ଖାଇ ଗୋଡ଼ଉଛନ୍ତି, ତାକୁ ମାଣ୍ଡି ଆକାଆଗ୍ର କି କେଉଁ କଆ-ଶରେ ଶୁଆଇ ଦେବେ ନାହିଁ । ଏବଂ ଶେଷକୁ ଶବଦଗୁଡ଼ିକ ଆପଣା ଭିତରେ ପୋତି ହୋଇ ପଡୁଛି, ବାସ୍ନା କି ବାକ୍ୟତର ବୁଝିବା କଷ୍ଟ ।

ତଥାପି ଭୂଷାର ଓଠ ଥରି ଥରି ଥିର ହୋଇ ଆସୁଛି, ଖାଲି ସେତିକି ନୁହେଁ, ସାମାନ୍ୟ ହସିଲା ପରି ମଧ୍ୟ ଦିଶୁଛି । ଯେମିତିକି ସୁଖର ଆବେଶରେ ଆମୋଦର ଧାପେ । ଭାବୁଛି, ଜେଜେଙ୍କ ଅକ୍ଲାନ୍ତ ପରିଶ୍ରମକୁ ଧନ୍ୟ କହିବ । ଆଖି ମିଞ୍ଜି ମିଞ୍ଜି ହେଉଛି, ଜେଜେଙ୍କୁ ଚିଡ଼େଇଲା ପରି, ସେଇଠୁଁ ସମତୁଳ ହୋଇ ରହି ଯାଉଛି, ଆଖିପତାର କଳା କେଶଗୁଡ଼ିକ ଗଣି ହୋଇ ଯାଉଛି । କ୍ରମଶଃ ତା’ ମୁହଁର ଯେତେକ ଗୁଣ ଅବଗୁଣ ଠିକଣା ହୋଇ ଦିଶୁଛି, ସତେ କି ସେ ଉଦାରତାପୂର୍ବକ କହୁଛି ସମସ୍ତଙ୍କୁ—ଦେଖିପାର ଏଥର, ଭଲ କରି ଦେଖ । ଗାଲରେ କେଇଟା ଖଣ୍ଡିଆ ଦାଗ, ଚିବୁକ ତଳେ କେଇଟା ତିଳ ଚିହ୍ନ, କାନ ଦ୍ୱ’ଟା କେଡ଼େ ଲମ୍ବା, ନାକପୁଡ଼ାରେ କେତେ ମଇଳା···କିନ୍ତୁ ମୋର ପ୍ରସାଦର ଗମ୍ଭୀରକୁ କିଏ କଳି ପାରିବ ?

କଳି ହେବ ନାହିଁ । ତା’ର ସତ୍ୟତା ଥାଉ କେହି ଜାଣନ୍ତୁ ନ ଜାଣନ୍ତୁ, ଭୂଷାର ବାପମାଆ ନରେଶ ଓ ନନ୍ଦମା ଭଲ ଭାବରେ ଜାଣନ୍ତି । ନରେଶଙ୍କର ତ ସହଜେ ଧୈର୍ଯ୍ୟ ରହେ ନାହିଁ । ମନ ଖୁସି ଥିଲାବେଳେ ସେ ପୁଅର ନନ୍ଦ ସାଙ୍ଗରେ ଲଢ଼େଇ କରିବାର ବୃତ୍ତିକୁ ପ୍ରଶଂସା ଦିଅନ୍ତି । ଗୀତଫିତ ଛାଡ଼ି ଦେଇ ତା’ ।ସଙ୍ଗରେ ବସି ଖେଳନ୍ତି, ତା’ର ନାହି ବୋତା-

ମକୁ ଚପନ୍ତି, ତା’ର ମୁଣ୍ଡକୁ ଖପୁରୁ ଖୁପୁରୁ କରନ୍ତି, ଇତ୍ୟାଦି । ଏବଂ ମନ ଖୁସିଥିଲା ବେଳେ ମାଆ ନନ୍ଦମା ଏଭଳି ଦୃଶ୍ୟ ଦେଖି କୃତ୍ରିମ ରାଗରେ ପାଟିଟାଏ କରନ୍ତି—ଯେମିତିକା ପୁଅକୁ ସେମିତିକା ବାପ ! ତମେ ଉଠିଲ ଏଠୁ, ଉଠ । କିନ୍ତୁ ଦେହରେ କ୍ଳାନ୍ତି ମନରେ ବିରକ୍ତି ଥିଲାବେଳେ ପରି-ସ୍ଥିତି ବିଷମୟ ହୋଇ ଉଠେ । ନରେଶ ଲଙ୍ଗୁଆ ପୁଅର ପ୍ରଗଳଭତାକୁ ସହି ପାରନ୍ତି ନାହିଁ, ତାକୁ ଝୁପୁଡ଼ାଏ ମାରନ୍ତି । ପୁଅ ଭେଁକିନା କାନ୍ଦି ଉଠି-ଲରୁ ନନ୍ଦମା ସତସତିକା ରାଗ ଦେଖେଇ ଧାଇଁ ଆସନ୍ତି, ସ୍ୱାମୀଙ୍କୁ ଉଠେଇ ଦେଇ ପୁଅକୁ ବଳାତ୍କାର ପୂର୍ବକ କୋଳରେ ମାଡ଼ି ବସନ୍ତି, ଏବଂ ଅବିଳମ୍ବେ ସ୍ୱାମୀଙ୍କ ଉଦ୍ଦେଶ୍ୟରେ ତଥା ନିଷ୍ଠୁର ସମାଜ ଉଦ୍ଦେଶ୍ୟରେ ତା’ ପିଠିରେ ଝିଧାଟାଏ କଷି ଦେବାକୁ ବାଧ୍ୟ ହୁଅନ୍ତି । ଯାହା ହେଉ ଦୁଇଟିଯାକ ପ୍ରଣାଳୀ ନାସ୍ତିମୂଳକ ବୋଲି ପ୍ରମାଣିତ ହୋଇଛି । ପ୍ରଭେଦ କେବଳ ଏତିକି ଯେ ଯୁଗ୍ମଖୁସିର ପୁଅ ମାଆଙ୍କୁ ବିରକ୍ତ କରେ ଗୁଡ଼େ ଏବଂ ଯୁଗ୍ମ-ବିରକ୍ତିର ପୁଅ ମାଆକୁ ନ କନ୍ଦେଇ ଛାଡ଼େ ନାହିଁ । ଫଳ ସମାନ : ଭୂଷା ଘଣ୍ଟା ଘଣ୍ଟା ଧରି ଚେତା ରହେ । ନାନାବାୟା ଗୀତ ହାର୍ ମାନି କେଉଁ ଗୁହାରେ ପଶିଯାଏ ।

(ହଁ, ସ୍ୱାମୀ-ସ୍ତ୍ରୀଙ୍କର ଏଇ ଆନନ୍ଦ-କିରାନନ୍ଦ ପ୍ରାୟ ସଦାବେଳେ ଯୁଗ୍ମ । ସେ କଥା ପରେ ।)

କିନ୍ତୁ ଜେଜେଙ୍କର ସଙ୍ଗୀତବିହୀନ ଧୋ’ ବାୟା ଗୀତରେ ସେ ଟିଟକିନା ଶୋଇ ପଡ଼େ । ଏତିକି ଆଉ କାହା ଦେଇ ହୁଏ ନାହିଁ । ହୋଇ ପାରିବ ନାହିଁ । ତା’ର କୁଆଁ କୁଆଁ ହେବା ଦିନ ଠାରୁ ଆଜି-ଯାଏଁ ବାରମ୍ବାର ଏହି ତଥ୍ୟ ସିଦ୍ଧ ହୋଇଛି । ଏପରିକି ଭୂଷାର ଜେଜେମା ଯେ ଅନେକ ଦିନ ଯାଏଁ ଏହାର ପ୍ରତିବାଦ କରି ଆସୁଥିଲେ, କହୁଥିଲେ ଛଏ ଜେଜେଙ୍କ ବାହାପିଆ ଗିରି, ସେ ମଧ୍ୟ ମାନିଲେଣି ଯେ ବୁଢ଼ା ମେଜିକ ଜାଣନ୍ତି ।

ସେଦିନ ଏହିପରି ଏକ ଯାଦୁବିଦ୍ୟା ଅନୁଷ୍ଠିତ ହେଉଥିଲା । ଭୂଷା ଦିନସାରା ଉଧମ୍ ମଚଉଥିଲା, କୋହଲା ପାଗ ଓ କାଶ, ସର୍ଦ୍ଦି ସତ୍ତ୍ୱେ ବାପି-ମାମିଙ୍କ ସାଙ୍ଗରେ ବାହାରକୁ ଯିବ ବୋଲି ଜିଦ୍ କରୁଥିଲା । କିନ୍ତୁ

ଗଣେଶ୍ବରବାବୁ ତାଙ୍କୁ ପାଖକୁ ଡାକଲେ, ବସିଲାରୁ ଶୁଆଇଲେ; ଗପ କହିଲେ, ଏବଂ ଶେଷକୁ ଧୋ' ବାସ୍ନା ଆରମ୍ଭ କରି ଦେଲେ । ଫଳ ହାତେ ହାତେ । ନରେଶ ଓ ନନ୍ଦମା ପରଦା ଆଢ଼ୁଆଳରେ ଛିଡ଼ା ହୋଇ ଏହି ଚମତ୍କାରକୁ ଅନେଇ ରହିଥିଲେ, ଏବଂ ଫୁସ୍ ଫୁସ୍ ହେଉଥିଲେ ଯେ ଏଥର ବାହାରି ଗଲେ ହେବ ।

କିନ୍ତୁ ଦାଣ୍ଡଦୁଆର ଯାଏଁ ନ ଯାଉଣୁ ଗଣେଶ୍ବରବାବୁ ଗୋଟାଏ ଅବାନ୍ତର ପ୍ରଶ୍ନ କଲେ, "କୁଆଡ଼େ ସବୁ ବାହାରିଛ ଏଇ ପାଗରେ ?"

ସିଧାସଳଖ ଉତ୍ତର ଦେଇ ହୁଅନ୍ତା ଯେ ଆମେ ପିଲା ହୋଇନାହୁଁ । ଆମେ କୁଆଡ଼େ ଯିବୁ , କେତେବେଳେ ଯିବୁ , ସେ ବିଷୟରେ ଆପଣଙ୍କର ପ୍ରଶ୍ନ କରିବା କେବଳ ନିରର୍ଥକ ନୁହେଁ, ଅନ୍ୟାୟ । ତା'ଛଡ଼ା ଆମେ ବାହାରକୁ ଯିବୁ ବୋଲି ତ ଏତେକଥା ! ନହେଲେ ଆପଣ କାହିଁକି ଏତେ କଷ୍ଟ କରି···କିନ୍ତୁ ବାକ୍ୟଟି ଅଧାରୁ ରହିଯାଆନ୍ତା । କାରଣ ନିଶ୍ଚୟ ମନେ ପଡ଼ିଯାଆନ୍ତା ଯେ ବାପାଙ୍କର ଧୋ'ବାସ୍ନା ଆପଣା ଗୁଣରେ ଈଶ୍ବର, ତା'ପାଇଁ କୌଣସି ଉଦ୍ଦେଶ୍ୟର ପ୍ରୟୋଜନ ନାହିଁ । ଯାହାହେଉ ଯେତେହେଲେ ବାପା, ତାଙ୍କୁ କିଛି ଗୋଟାଏ ଉତ୍ତର ଦେବାକୁ ପଡ଼ିବ । ଏହି ଭାବରେ ନରେଶଙ୍କର ପାଟି ଖୋଲି ଆସୁଥିଲା, ତା' ପୂର୍ବରୁ ନନ୍ଦମା ତାଙ୍କ ଆଗଚଲାପଣର ନମୁନା ଦେଖେଇଲେ । କହିଲେ, "ଆମେ ଯାଉଛୁ ଡ: ବି: ପାର୍ଟି ଅଫିସକୁ—"

"ପାର୍ଟି ?"

ଆଉ ଲୁଚିଛପା ସମ୍ଭବ ନୁହେଁ । ସ୍ବାମୀ ଆଖି ଦେଖେଇଲେ ମଧ୍ୟ ନନ୍ଦମା ବ୍ୟାଖ୍ୟା କରିବାକୁ ବାଧ୍ୟ ହେଲେ, "ଦରିଦ୍ରବନ୍ଧୁ ପାର୍ଟି । ତାଙ୍କର ସାଧାରଣ ସମ୍ପାଦକ ଜଗନ୍ନାଥ ଶାହାଙ୍କ ସାଙ୍ଗରେ ଯୈଙ୍କର କ'ଣ ଆପଏଣ୍ଟ-ମେଣ୍ଟ୍ ଅଛି ।"

ପ୍ରବୀଣ ଗଣେଶ୍ବର ବାବୁ ତେଣିକି ଆଉ କିଛି ପଚାରିଲେ ନାହିଁ । ବେଶ୍ କିଛି ସମୟ ନୀରବ ରହି କହିଲେ "ହଉ" । ଦରିଦ୍ରବନ୍ଧୁ ପାର୍ଟିର କରିବ କଅଣ, ଦରିଦ୍ରମାନଙ୍କର ମଙ୍ଗଳ ବିଧାନ କରିବାକୁ ଯାଇ ସେମାନେ କିଭଳି ହିଂସା କାଣ୍ଡ ଭିଆଇଛନ୍ତି ତଥା ହିଂସାର ଶିକାର ହୋଇଛନ୍ତି, ସବୁ

ତାଙ୍କୁ ଜଣା । ତଥାପି ଏ ମଧ୍ୟ ଗୋଟିଏ ରାଜନୈତିକ ଦଳ, ଏହାର ନେତାମାନେ ସମସ୍ତେ ଚତୁର ନୁହଁନ୍ତି, ଏବଂ ଏହି ଦଳ ବି ଦିନେ କ୍ଷମତାକୁ ଆସିପାରେ; ଏ ବିଷୟରେ ତାଙ୍କ ବିଚାର ସୁସଂଗତ । କିନ୍ତୁ କଥା ହେଉଛି ଯେ ନରେଶ ତାଙ୍କ ପୁଅ । ତା'ଛଡ଼ା ନରେଶ ଆଉ କାହାପରି ନୁହେଁ ବୋଲି ତାଙ୍କର ଦୃଢ଼ ଧାରଣା । ସେ ସବୁଥିରେ ମିଶିଯାଏ, ସବୁଥିରେ ଖସିଯାଏ, କଥାକଥାକେ ନାଚେ କୁଦେ, ପୁଣି ହାରିଗଲେ ମଧ୍ୟ ହାର୍ ମାନେ ନାହିଁ । ଏଭଳି ଦାମ୍ଭିକ ପ୍ରଜାପତି ପୃଥିବୀରେ ନାହାନ୍ତି । ଏଇ ଫୁଲଟାରେ ମହୁ ନାହିଁ, ହୁଏତ ଫୁଲ ନିଜେ ଦୂର୍ ଦୂର୍ କଲା, କିନ୍ତୁ କ୍ଷତି ନାହିଁ, ପୃଥିବୀରେ ଅନେକ ଫୁଲ, ଅନେକ ନିମନ୍ତ୍ରଣ । ହୋଇପାରେ ଯେ ସେହେତୁ ତା'ର କିଛି ଉନ୍ନତି ହେଉନାହିଁ, ପାଠଶାଠ ଅଧାରୁ ରହିଗଲା, ଆର୍ଥିକ ଦୁରବସ୍ଥା ବଢ଼ୁଛି ପଛକେ କମୁନାହିଁ, ହେଲେ ପ୍ରଜାପତିଟି କେଡ଼େ ଆନନ୍ଦରେ ଉଡ଼ୁଛି ଦେଖି ପାରୁନାହଁ ? ତା'ର ଡେଣାରେ କେତେ ରଙ୍ଗ, ଗତିରୁ ଚଞ୍ଚଳତା, ଏତେକ ସୁନ୍ଦର ପୃଥିବୀକୁ ଗୋଡ଼ରୁ ମୁଣ୍ଡଯାଏ ଚୁମିବାକୁ ତାର ଜନ୍ମ, ତମ ସ୍ୱର୍ଗନର୍କକୁ ମାର ଗୋଳି, ଏତିକ କ'ଣ ତମ ଆଖିରେ ପଡୁନାହିଁ ? ଏଭଳି ପ୍ରାଣବନ୍ତ ପ୍ରାଣୀକୁ ସକଳଜନେ ଭଲ ପାଇବା କଥା । ତମେ ବାପ ହୋଇ ଭଲ ପାଇ ପାରୁନାହଁ ?

ହଁରେ ପୁଅ, ମୁଁ ଭଲ ପାଉଛି । ତୁ କ'ଣ ଭାବୁଛୁ ମୁଁ କେବଳ ଅସହାୟ ହୋଇ ହଉ ବୋଲି କହିଲି ? ପାଠ ପଢ଼ିଲା ବେଳେ ତୁ କେତେ ଦିଗନ୍ତର ଛବି ଦେଖେଇଛୁ ମୋତେ । କେତେବେଳେ ମନେ ହୋଇଛି ତୁ ଗୋଟାଏ ବଡ଼ ଆଇ. ଏ. ଏସ୍ ହାକିମ ହେବୁ (କାରଣ ତୁ ସ୍କୁଲ କଲେଜ୍‌ରେ ବେଶ୍ ଭଲ ମାର୍କ ରଖୁଥିଲୁ ), ଆଉ କେତେବେଳେ ଭାବିବାକୁ ଇଚ୍ଛା ହୋଇଛି ଯେ ତୁ ପ୍ରାଣୀବିଜ୍ଞାନ ଅବା ଉଦ୍‌ଭିଦ ବିଜ୍ଞାନରେ ପଣ୍ଡିତ ହେବୁ (ଯେହେତୁ ତୁ ଫୁଲଫଳ ଜନ୍ତୁଜନ୍ତାଙ୍କୁ ନେଇ ମାତିଥିଲୁ ଅନେକ ଦିନ), ପୁଣି ମନେ ହୋଇଛି ତୁ ଗୋଟାଏ ବଡ଼ ସଙ୍ଗୀତଜ୍ଞ ହେବୁ (ତୋର ଗଳା ମିଠା, ମୋ ପରି ନୁହେଁ, ଆଉ ତୁ କେତେ ଆସରରେ ମହମ୍ମଦ ରଫିଙ୍କ ଢାଞ୍ଚାରେ ଗୀତ ବୋଲିଛୁ), ଶେଷକୁ ତୁ ନୋଟିସ୍ ଦେଲୁ ଯେ ତୁ ସମାଜ ପାଇଁ କିଛି ଗୋଟାଏ କରିବୁ (ତୋରି ଉଦ୍ୟମରେ ଆମ କଲୋନୀର ଶିଶୁଉଦ୍ୟାନ, ପାଠାଗାର, ଏବଂ ଯୁଗଜାଗୃତି କେନ୍ଦ୍ର ନାମକ

ବିବାହ ଅନୁଷ୍ଠାନ ଗଢ଼ି ଉଠିଛି ବୋଲି ଶୁଣିଛି)···ତହୁଁ ଯଥାକ୍ରମେ ଗ୍ରାଜମାତ କରିବୁ, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଡ଼. ବ. ପାର୍ଟି ହେଉ ବା ଯେଉଁ ପାର୍ଟି ହେଉ, ମୁଁ ଜାଣିଲି ଯେ ତୁ ପୁଣି ଡେଣା ମେଲେଇଛୁ, ଏବଂ ନୂଆରୁ ବଳି ନୂଆ ଦିଗନ୍ତ ଡାକୁଛି ତୋତେ । ତୋ'ର ଏଇ ସ୍ୱପ୍ନଛଡ଼ା ଆବେଗ କ'ଣ ଛୁଉଁ ନାହିଁ ମୋତେ ? ମୁଁ ତୋ ବାପ ପରା ! ଛୁଉଁଛି, ଆଉ ମୋର ବି ଇଚ୍ଛା ହେଉଛି ତୋ'ର ଛବିଶ ବର୍ଷିଆ ଦେହକୁ ଛୁଅଁନ୍ତି, ସେଇଠୁଁ ଆପୁଡ଼େଇ ଦିଅନ୍ତି, ଆଉ ସେଇଠୁଁ (ହଁ, ମୁଁ ମାନୁଛି) କହନ୍ତି ଯେ ଥରୁଟିଏ ମୋ' ପାଖରେ ଶୋଇ ଯାଆ ମୋ ଧନ । ମୁଁ ତୋତେ ଆଉଁସି ଦେବି, ଥାପୁଡ଼େଇ ଦେବି···ଆଉ ସେଇ ପୁରୁଣା ସବୁଦିନିଆ ଗୀତ ଗାଇବି···

ଗଣେଶ୍ୱର ବାବୁଙ୍କର ଚେତା ହେଲା ଯେ ସେମାନେ କେତେବେଳୁ ଭୁଲି ଗଲେଣି । ଚେତା ହେଲାକ୍ଷଣି ସେ ଭୁତ ଲଗିଲା ପରି ପୁଣି ଆରମ୍ଭ କରିଦେଲେ, ବାଷ୍ପରୁଦ୍ଧ ଗୀତର ଶବ୍ଦ, ଅସମ୍ଭାଳ ହାବୁକାଏ, ଧୋ-ଓ-ରେ ବାପ୍ପା···। ଯଦିଓ ସେତେବେଳକୁ ଗୀତର କୌଣସି ଆବଶ୍ୟକତା ନ ଥିଲା, କାରଣ ଭୂଷା ଦିବ୍ୟ ଶୋଇ ଯାଇଥିଲା ।

ମୁଁ ସିନା କିଛି କହି ପାରିଲି ନାହିଁ, ତା' ସ୍ତ୍ରୀ ନନ୍ଦମା ପରି ପାଠୋଇ ବୁଦ୍ଧିମନ୍ତ ଝିଅ, ସେ ବି ତା'କୁ ଅଟକେଇ ପାରିଲା ନାହିଁ ? ସେ କଅଣ ଜାଣେ ନାହିଁ ଯେ ଦିଗନ୍ତର ମାନେ ଦିଗର ଅନ୍ତ ? ବ୍ୟାକରଣ ପଢ଼ି ନାହିଁ ସେ ?

ବୋହୂର ବ୍ୟାକରଣ ବିହୀନ ନିର୍ବୋଧତାକୁ ନେଇ ଦୁଃଖ କେବଳ ଦୁଃଖରେ ରହି ଯାଇ ଥାଆନ୍ତା । ସେଥିରୁ କ୍ରୋଧ ଉପୁଜିଲା, କାହିଁକିନା ଏଇ ସମୟରେ ତାଙ୍କ ସାମ୍ନାରେ ଆସି ଛିଡ଼ାହେଲେ, ହସି ଦସି, ସ୍ୱପ୍ନୀ କରଣବାଳା ଦେବୀ ଏବଂ ସେ ଯାହା କହିଲେ—

"କିଓ, ତମେ ଯାଉନା ଟିକିଏ ବିଶ୍ରାମ ନେବ ? ପିଲାଟା ତ ଶୋଇଗଲାଣି, ତା' ସାଙ୍ଗରେ ଲାଗିଛ କାହିଁକି ?"

ଗଣେଶ୍ୱରବାବୁ ସ୍ତ୍ରୀଙ୍କ ଆଡ଼କୁ କଟମଟ ହୋଇ ଅନେଇଲେ । ମନେହେଲା ତାଙ୍କ ବହଳ ନିଶର ଅଗବ ଥରି ଉଠୁଛି ଏବଂ ଉତ୍ତର ଦେଲେ ।

"ତମେ ସମସ୍ତେ ଶୋଇଲେ ତା'ପରେ ମୁଁ ଯାଇଁ ଶୋଇବ ବୁଝିଲ ?"

କରଣବାଳା ଉତ୍ତରଟିକୁ ଆକ୍ଷରିକ ଅର୍ଥରେ ନେଲେ । ସଣବଦରେ ହସିଲେ । କହିଲେ "ମଲ, ସମସ୍ତେ କିଏ ମ ? ପୂଅବୋହୂତ କୁଆଡ଼େ ନଗର ବୁଲି ଯାଇଛନ୍ତି । ଭୁଷାଣ୍ଡା ଶୋଇ ପଡ଼ିଲାଣି । ଆଉ ମୁଁ କୋଉ ଦ୍' ପହରେ ଶୁଏ ନା କଅଣ ?"

ପ୍ରୌଢ଼ା, ସୁଗଠିତା, ସୁପ୍ରସନ୍ନା କରଣବାଳାଙ୍କୁ ନିର୍ବୋଧ ବୋଲି କହିବାକୁ ସତ ବଳେ ନାହିଁ । କିନ୍ତୁ ତାଙ୍କ ଜାଗାରେ ଆଉ କେହି ହୋଇଥିଲେ ନିଶ୍ଚୟ ବୁଝିଥାଆନ୍ତା ଯେ ସ୍ୱାମୀଙ୍କ କଥାର ମତଲବ ହେଉଛି ଯେ ସେ ରଗିଛନ୍ତି, କହୁଛନ୍ତି ଯେ ତମରିମାନଙ୍କ ଯୋଗୁଁ ମୁଁ ଏତେ ହଟ-ହଟା ହେଉଛି, ଶୋଇ ପାରୁନାହିଁ ।

କିନ୍ତୁ ଇଏ ମଧ୍ୟ ସାଧାରଣ ଅର୍ଥ । ସଠିକ୍, ହେଲେ ସମ୍ପୂର୍ଣ୍ଣ ନୁହେଁ । ଗଣେଶ୍ୱର ବାବୁ ଯାହା କହିଲେ, ତାହା ତାଙ୍କ ଷାଠିଏ ବର୍ଷିଆ ଜୀବନଦର୍ଶନ ଜୀବନ-ଅଭିମାନର ପଦୁଟିଏ କଥା । ସାମାନ୍ୟତମ ଧଳା ବଳୁଲର ସ୍ଫୁରଣ । ତା' ପଛରେ କେତେ କ'ଣ ଅନୁଭୂତି ଜମି ଜମି ତାଙ୍କୁ ଏଇ ଆକ୍ରୋଶର ସ୍ୱାଧିକାର ଆଣି ଦେଇଛି, ଆଜି କାହାରିକୁ ନପାଇ ସ୍ୱଳ୍ପବୁଦ୍ଧି ସ୍ୱପତ୍ନୀଙ୍କଠାରେ ଝଲକାଏ ରାଗ ଦେଖେଇବାକୁ ପ୍ରବର୍ତ୍ତେଇଛି, ତା'ର ତଥ୍ୟ ତମଆମଙ୍କର ବୁଝିବା ଅସମ୍ଭବ । ନିଜେ ଗଣେଶ୍ୱରବାବୁ ମଧ୍ୟ ତା'ର ଫର୍ଦ ତିଆରି କରିପାରିବେ ନାହିଁ, ଲେଖିକରି କାଟିବେ, କହିବେ ନାଇଁ ନାଇଁ, ଏମିତି ନୁହେଁ, ମୁଁ ଏତେ ଭଲ ନୁହେଁ । ମୁଁ ଏକୁଟିଆ ଡାକଗାଡ଼ିରେ ବସିନାହିଁ । ମୋର ସହଯାତ୍ରୀ ଅଛନ୍ତି । ସେମାନେ କ'ଣ କିଛି ଦେଖନ୍ତି ନାହିଁ, ଭାବନ୍ତି ନାହିଁ, ଖାଲି ମୋର ମୁଣ୍ଡକୁ ପୋକ କାମୁଡ଼ୁଛି ?

ହଁ, ସେଇ ଡାକଗାଡ଼ି ହେଉଛି ପ୍ରଥମ ଖଳନାୟକ । ପ୍ରଥମ ପୋକ । ପ୍ରଥିକ । ବିଗତ ଯୌବନରେ ସେ କେବେ କେବେ ଡାକଗାଡ଼ିରେ ବସି ଯାଉଥିଲେ, କେଉଁ ଏକ ଜ୍ୟୋତ୍ସ୍ନାବିଧୌତ ରାତିରେ ଗଣି ଗଣି ତାରଖୁଣ୍ଟ, ବୁଦା, ଜଙ୍ଗଲ ପରିତ୍ୟକ୍ତ ଷ୍ଟେସନ ବେଞ୍ଚ୍‌ରେ ଢୁଳଉଥିବା

ମଣିଷ, ଲଙ୍ଗଳା ପିଲାର ତାଳମଗ୍ନ ଆନନ୍ଦ, ଛଳଛଳ ରୂପେଲି ପାଣିକୁ ଖୁମ୍ପୁଥିବା ଚଢ଼େଇ ଇତ୍ୟାଦିକୁ ଦେଖି ଦେଖି ଆହୁରି ଦେଖିବି ବୋଲି ହେଉଥିଲେ, କିନ୍ତୁ କେଉଁଠି ହେଲେ ଅଟକି ଯାଇପାରୁ ନଥିଲେ । ଆଃ ! ମୁହୂର୍ତ୍ତିଟିଏ କେଉଁଠି ରହିଯାଇ ପାରନ୍ତି ନାହିଁ ? କହନ୍ତି ନାହିଁ ଏଇଟି ମୋ ଥାନ, ଏଇ ମୋର ସ୍ଥିତି, କ୍ଷଣକପାଇଁ ହେଉ ପଛେ ଏଇ ମୋର ଅନୁଭବ ? ନା' ବିରାମ ନାହିଁ, ଏଇ ହେଉଛି ମୋ ବଞ୍ଚିବାର ଅଭିଶାପ, ଜନ୍ମ ହୋଇଛି ବୋଲି ଝିକ୍ ମାରିଛି, ଖାଲି ଧାଉଁ ଥିବ, ଧାଉଁଥିବ··· ସେଇ ଯେଉଁ ହଠାତ୍ ଜହ୍ନ ଚକାଏ ଗଣ୍ଡୁଷ ଭିତରୁ ଅନେଇଲା ମୋତେ, ଫୁଟୁକାଏ ଗାଲର ହସକୁ ଧରି ରଖିଲା ଖାସ୍ ମୋ ପାଇଁ, ତା' ସାଙ୍ଗରେ ଅଳ୍ପବହୁତ ଆଳାପ କରି ହୋଇ ନ ଥାଆନ୍ତା ? ନା, ସେକଥା ହେବ ନାହିଁ, ତା' ସାଙ୍ଗରେ ମୋର କିଛି ସମ୍ପର୍କ ନାହିଁ । ଏଇକ୍ଷଣି ମୋ ସାଥୀ ହେଉଛି ଏଇ ଲମ୍ବା ଥୁଣ୍ଟା ଗଛ, ଶୀର୍ଷରେ ଚୁଟିକେରାଏ ଫରଫର ହେଉଛି, ସେ ତା' କ୍ଳେଶର ସାଧନାର ପଦେଅଧେ ଶୁଣେଇବ ମୋତେ··· ନା, ସେ ବି ଗଲା ଗଲା, ପଳେଇଲା···ସେ ବି ମୋର ନୁହେଁ···ମୁଁ ଖାଲି ଧାଉଁଥିବ, ଧାଉଁଥିବ ! ମରୁଥିବ !

ଏମିତି ସେତେକ ଅଶ୍ଳିଷ୍ଟ ମୁହୂର୍ତ୍ତକୁ ମାରି ମାରି ଧାଆଁରେ ବାବୁ ଧାଉଁଥାଅ । ପିଲାଦିନେ କ୍ଲାସରେ ଫାଷ୍ଟ ହେଲା ପରେ ବାପା କୁଣ୍ଢେଇ ପକେଇଲେ, କିନ୍ତୁ ଲାଭ ନାହିଁ, ମୁଁ ସେଇ କ୍ଷଣଟିକୁ କୁଣ୍ଢେଇ ଧରି ପାରିଲି ନାହିଁ । ପରୀଭବକୁ ଡାହେଇଲା ପରି ମୋ' ଜୋତାଫିତା ଖୋଲିଗଲା, ମୁଁ ଝିଣ୍ଟି ପଡ଼ିଲି । ସେମାନେ ହସିଲେ ।

କିରଣକୁ ଚୁମା ଦେଇ ହେଲା ନାହିଁ । ସ୍ପୃହଁ ସ୍ପୃହଁ ସେ ଘରଣୀ ହୋଇଗଲା···ବ୍ଳକଖଣ୍ଡାଏ ଧରିଲି । ଧରିଲି କେଉଁଠି ? ଉପରକୁ ଉଠିବାକୁ ହେବ, ବଡ଼ସାହେବ ରାଗିଲେ ନା' କଅଣ ? ଚଳକୁ ଖସିଲି ନାହିଁ ତ ?···ସବୁତା ଜନ୍ମ ହେଲା । ସେଇଠି ଗୋଟାଏ ବିରାମ, କମା ? ନା ସେ ସ୍ପୃହଁ ସ୍ପୃହଁ ବାହା ହୋଇଗଲା, ତା' ତେଲ ସରସର ଦେହକୁ ଖସେଇ ଦେଲା ମୋ' ହାତରୁ, ବାଆଁ କାଳିଆ ଦେଇ ପଳେଇଲା, ଟୋକାଟାକୁ ଭଲ କରି ଧୋ' ବାସ୍ନା ବି' କିଛି ହେଲାନାହିଁ··· ସେଇଠୁ ନରେଶ । ସେଇ ମୋ ଧୋ' ବାସ୍ନାରେ ବଶ ହେଉଥିଲା, ମୁଁ ବି ତା'

ଧୂଳଧୂସର ଦେହକୁ , ଅନୁଭବ କରୁଥିଲି, ଭାବୁଥିଲି ଏଇଠି ରହିଯାଆନ୍ତି ଭଲ । ନା, ସେ ଉଠିବ ପଳେଇବ, ମଣିଷ ହେବ । ସେଇଠୁଁ ଧାଉଁଥାଏ ତା' ସାଙ୍ଗରେ ।

ଯାହାର ହାତ ଧରି ଘରକୁ ଆଣିଲି ସେ, ହିଏବି' ତଦ୍ରୂପ । ଲଭ୍ କରି ବାହା ହୋଇଛି ଢ଼'ଜଯୋକ । ତା' ବୋଲି କ'ଣ ସବୁଥିରେ ଯୋଡ଼ଜାଉଁଳି ହେବା ଦରକାର ?

ଏବଂ ଏଇ ଆମର ସ୍ୱ-ପତ୍ନୀ ଯାହାଙ୍କର ହୋଲେ ନାହିଁ କି ଡୋଲେ ନାହିଁ, ଯେ କିଛି ଭାବନ୍ତି ନାହିଁ, ବସିବା-ଶୋଇବା ଧାଇଁବା-ଧିମେଇବାର ପ୍ରଭେଦ ବୁଝନ୍ତି ନାହିଁ, ସୁର ପିଠିରେ ଲଜ ହୋଇ ସୁଖ କରନ୍ତି, ସେଇ ଆସି କହୁଛନ୍ତି କଅଣ ନା, ଯା' ଶୋଇବ ଯାଅ ! ଯୋଗ ଦେଖଉଛନ୍ତି ?

ଜନ୍ମରୁ ଆଜଯାଏଁ କେଉଁ ଜଣକ, ବାପମାଆ ପରିବାର, ତମ ତଥାକଥିତ ସମାଜ, ହାକମ, ଭଗବାନ୍ ମୋତେ ଶୋଇବାକୁ ଦେଇଛ କୁହ ! କହିପାରିବ ??

ଯାହାହେଉ କରଣବାଳା ଅନ୍ତତଃ ଏତିକି ବୁଝିଲେ ଯେ ବର୍ତ୍ତମାନ ସ୍ୱାମିଙ୍କ ଠାରୁ ଉତ୍ତର ଆଶା କରିବା ବୃଥା । ସେ ସ୍ୱାମୀଙ୍କର ଗମ୍ଭୀର ଭାବମୂର୍ତ୍ତିକୁ ଲକ୍ଷ୍ୟ କଲେ । ତାକୁ ସେ ସବୁବେଳେ କ୍ରୋଧ ବୋଲି ହୁଏତ ମାନି ନାହାନ୍ତି, କିନ୍ତୁ ତା'ର ଗୁରୁତ୍ୱ ସ୍ୱୀକାର କରି ଆସିଛନ୍ତି । ଫେରି ଯାଉଁ ଯାଉଁ ଗୋଟିଏ ପ୍ରିୟପୋଷ୍ୟ ଧାରଣାକୁ ଦୋହରେଉଥିଲେ— ମୁଁ କେତେ କହୁଥିଲି ( କହିବାକୁ ଦେଲେ କୋଉଠି ? ) ଯେ ରିଟାୟାର କଲି ପରେ କୋଉ ଗୋଟାଏ ଧନ୍ଦାରେ ପଶିଯାଅ, ତା'ହେଲେ ମୁହଁଟାକୁ ଏତେ କରି ବସନ୍ତ ନାହିଁ, ତମ ଓକିଲ ଭାଇଙ୍କ ପରି ଟଗଡ଼ା ଫୁର୍ତ୍ତି ଥାଆନ୍ତି···

ହେମାଳ ପାଗ ସାଙ୍ଗକୁ ବର୍ଷା ବି' ଆରମ୍ଭ ହୋଇଗଲା । କିନ୍ତୁ ବଡ଼ କୌତୁକର ବ୍ୟାପାର ହେଉଛି ଯେ କେବଳ ଆରମ୍ଭ ହେବାର ଉପକ୍ରମରେ ହିଁ ଲାଗି ରହିଲା । ଯେମିତିକି ସେ ଗୃହେଁ ଦେହକୁ ତଳ ତଳ କରି ଫୋଡ଼ିବ, ଅଥାନ ଥାନରେ ପଶି ଚମକେଇବ, ଅସ୍ଥିମଜ୍ଜା ଥରେଇବ । ଏବଂ ତମେ ତାର ମତଲବ ବୁଝି ନପାରି ନ ଯଯୌ ନ ତସ୍ଥୌ ଅବସ୍ଥାରେ

ପଢ଼ିବ, କ୍ରମଶଃ ଚିହ୍ନିବ ଗୋଟିପଣେ ଓ ପାଟପାଣିବାଲାଙ୍କୁ ଶୋଧିବ । କିନ୍ତୁ ଫେରନ୍ତା ବାଟରେ ନରେଶ ଓ ନନ୍ଦିମାଙ୍କୁ ବର୍ଷାର ଏଇ ବଗୁଲିଆମି ବୋଧହୁଏ ବେଶି ଭଲ ଲାଗୁଥିଲା । ସେମାନେ ଥାଇ ଥାଇ ଚହିଁକି ଉଠୁଥିଲେ, ଉହୁ-ଆହା ହେଉଥିଲେ, ଅଥଚ ଉଚ୍ଚ ସ୍ୱରରେ ରାଜକପୁର-ନର୍ଗିସ କଣ୍ଠର ଗୋଟିକିଆ ଛତା ତଳେ ଏକାଠି ହେବାର ଦି' ଜଣିଆ ଗୀତ ଗୁଣୁ ଦେଇଥିଲେ—ପ୍ୟାର୍ ହୁଆ, ଏକରାର୍ ହୁଆ···। ଛତା ନାହିଁ । କିନ୍ତୁ ରାସ୍ତାକଡ଼ର ଗଛ ତଳେ ଦେହକୁ ଦେହ ଚିପିକେଇବାର ପ୍ରୟୋଜନୀୟତାକୁ କିଏ ମନା କରିବ ? ନା ଏଭଳି ସଙ୍ଗୀତ ସମୟୋପଯୋଗୀ ନୁହେଁ ବୋଲି କହିବ ? ଅବଶ୍ୟ କେବଳ ନରେଶ ଗୀତ ଗୁଣୁ ଦେଇଥିଲେ । ନନ୍ଦିମା ନିଜ ଭାଗର ପଦାବଳୀକୁ ଗୁଣୁଗୁଣୁରେ ମିଳେଇ ଦେଉଥିଲେ । କେବେକାର ପୁରୁଣା ଗୀତ, ଥରେ ଅଧେ ରେଡ଼ିଓରେ ଶୁଣିଛନ୍ତି । ତେଣୁ ଠିକ୍ କି ସ୍ୱରବିନ୍ୟାସ ଏତେଟା ମନେ ଥିବ କେମିତି ? ନରେଶଙ୍କ କଥା ଭିନ୍ନ, ସେ ତାଙ୍କ ବାପାଙ୍କଠାରୁ ଶୁଣିଛନ୍ତି ନିଶ୍ଚୟ ।

ସେଇ ଧାରଣା ମୁଣ୍ଡରେ ପଶିଲାରୁ ନନ୍ଦିମା ହଠାତ୍ ଗୀତ ଗାଇବା ବନ୍ଦ କରିଦେଲେ । କାରଣ ସେ ଏକ ଦୟାର ତାଡ଼ନା ଅନୁଭବ କଲେ । ପଚାରିଲେ—

"ତମ ବାପା ଏଇ ଗୀତ ବୋଲୁଥିଲେ, ନୁହେଁ ? ମୁଁ ଶୁଣିଛି । ହଜାରେ ଗୀତ ଜାଣନ୍ତି ସେ । କିନ୍ତୁ ତାଙ୍କର କଣ୍ଠ·· ଏମିତି ହେଲା କେମିତି ?"

ନରେଶ ସଚିନ୍ତିତ ଅଥଚ ଦୁଃଖାତ୍ମକ ଭଙ୍ଗୀରେ କହିଲେ ।

"ବୟସ" ।

"ବୟସ ନୁହେଁ, ବାଜେ କଥା । ମୁଁ କେତେ ଲୋକ ଦେଖିଛି, ତାଙ୍କରି ବୟସର ଯେଉଁମାନେ, ଦେହମନ ସବୁଥିରେ ତେଙ୍ଗସ୍ୱାନ୍, ଭଲ ଖାଆନ୍ତି, କଣ୍ଠ ଫାଷ୍ଟ୍‌କ୍ଲାସ···ନା, କଥା ହେଉଛି ସେ ନିଜକୁ ବୁଢ଼ା କରି ଦେଇଛନ୍ତି", ନନ୍ଦିମା ପ୍ରତିବାଦ କଲେ ।

କିନ୍ତୁ ନରେଶ ଯୁକ୍ତି କରିବା ମୁଡ୍‌ରେ ନ ଥାନ୍ତି । ଡ଼ଃ ବିଃ ପାର୍ଟିର ନେତାମାନେ, ବିଶେଷତଃ ଯୁବନେତାମାନେ ତାଙ୍କପ୍ରତି ଏଭଳି

ଶ୍ରଦ୍ଧା ଦେଖେଇବେ, ତାଙ୍କୁ ଏତେ ପ୍ରୋତ୍ସାହିତ କରିବେ ବୋଲି ତାଙ୍କର ଆଶା ନଥିଲା । ସେମାନେ ଖାଲି ତାଙ୍କର ସ୍ଥାମାସ୍ତ ସମାଜ କଲ୍ୟାଣ ଯୋଜନାଗୁଡ଼ିକର ପ୍ରଶଂସା କଲେ ତା' ନୁହେଁ । ସେମାନେ ସିଧାସଳଖ ନିମନ୍ତ୍ରଣ କଲେ । କହିଲେ, ଆମେ ଆପଣଙ୍କୁ ଚାହୁଁ । ଆପଣଙ୍କ ପରି ଯୁବକ, ଯେଉଁମାନେ ସାଧାରଣ କର୍ମୀ ହୋଇ ରହିବେ ନାହିଁ । କାମ କରିବାରେ ନିଆଁ ଜଳେଇବେ । ଠିକ୍ ଏଇ ଭାଷାରେ କହି ନଥିଲେ ବି' ତାଙ୍କ କଥାର ତାତ୍ପର୍ଯ୍ୟ ସେଇଆ ଥିଲା । ମୁଁ ଜାଣିଲି ଏଥର, ଯେ ଏଇ ରାଜନୀତି ହିଁ ମୋତେ ସୁହେଇବ । ମୋର ସେବା, ସତ୍‌ସାହସ, ନିଷ୍ଠା. ତା'ଛଡ଼ା ମୁଁ ଭଲ ଭାଷଣ ଦେଇ ପାରିବ, ତା'ଛଡ଼ା ମୋର ବିଦୁଷୀ ସ୍ତ୍ରୀ—ଏ ସବୁଥିର ସମ୍ମାନ ଆଉ କେଉଁଠି ମିଳିବ ନାହିଁ । ସାମାନ୍ୟ କର୍ମୀ ହୋଇ ରହିବ ନାହିଁ, ନେତା ହେବାକୁ ପଡ଼ିବ, ହେବ, ଡରିବ ନାହିଁ ।··· ସହଜେ ବର୍ତ୍ତମାନ ତାଙ୍କର ଏଭଳି ହାଡ଼ଥରା ଆନନ୍ଦର ଦୁନ୍ଦୁଭି···ପ୍ୟାର୍ ହୁଆ···

ଏହି ଅବସ୍ଥାରେ ନନ୍ଦିନୀ ଯାହା କହୁଛି ତାହା କେତେଦୂର ସତ, ବାପା ପ୍ରକୃତରେ ନିଜକୁ ବୁଢ଼ା କରି ଦେଇଛନ୍ତି କି ବୟସ ତାଙ୍କୁ ବୁଢ଼ା କରି ଦେଇଛି, ସେ ବିଷୟରେ ମୁଣ୍ଡ ଖେଳେଇ ଉଚ୍ଛୁଳା ପ୍ୟାର୍ ଗୀତକୁ ନଷ୍ଟ କରିଦେବା ତାଙ୍କର ପସନ୍ଦ ହେଲା ନାହିଁ । ସେଇଠୁଁ ତାଙ୍କର ମନେ ପଡ଼ିଲା । ବୋଉ ଏବେ ଯାହା କହୁଥିଲା ତା'କୁଇ ଉଦ୍ଧାର କଲେ ହେବ । ବେଶ୍ ।

"ବାପା କିଛି ଗୋଟାଏ ଧନ୍ଦାରେ ପଶି ଯାଇଥିଲେ ଭଲ ହୋଇ-ଥାଆନ୍ତା ବୋଧହୁଏ । ମଣିଷ ଆକ୍ଟିଭ୍ ନ ହେଲେ ଯାହା ହୁଏ···"

"ଏକ୍‌ଜାକ୍‌ଟ୍‌ଲି !···କିନ୍ତୁ ତା'ହେଲେ ସେ ହୁଏତ ଆମ ପାଖରେ ନ ଥାଆନ୍ତେ । ଅନ୍ତତଃ ଘରେ ବସି ରହନ୍ତେ ନାହିଁ । ଭୂଷା ବିଚରା—"

"ଏକ୍‌ଜାକ୍‌ଟ୍‌ଲି ! ଭୂଷାକୁ ଧୋ'ବାପ୍ଲା କହି ଶୁଆଇ ପକଉ ଥାଆନ୍ତା କିଏ ?"

ସେଇଠୁଁ ଦୁହେଁ ସମସ୍ୱରରେ ଏକ ଉଚ୍ଛ୍ୱସିତ ହସରେ ବାପାଙ୍କ ନିଷ୍କ୍ରିୟତାକୁ କ୍ଷମା କରିଦେଲେ । ବୋଉ କିରଣବାଳାଙ୍କୁ ସମର୍ଥନ କଲେ

ମଧ୍ଯ ଜଣାଇଦେଲେ ଯେ ଆମେ ଭିନ୍ନ ଜେନେରେସନ୍‌ର ଲୋକ । ଆଧୁନିକ, ଉଦାର ।

ପୁଅବୋହୂଙ୍କ ଫେରିବା ଉଚ୍ଚୁର ହେଲାଣି, ଅବାଗିଆ ପିଲା ଦି’ଟା ଛଡାଟିଏ ନେଇ ନାହାନ୍ତି ସାଙ୍ଗରେ, ପୁଅ କେବେକାର ପତଳା ସ୍ୱେଟର୍ ଖଣ୍ଡେ ପିନ୍ଧିଛି, ଆସି ଚଇତ୍ରମାସ ହେଲାଣି, ଇଏ କ ବେହେଲ ପାଗ, ଇତ୍ୟାଦି ନାନାଦି ମନ୍ତବ୍ୟ କରିବା ପାଇଁ କରଣବାଳା ବାରମ୍ବାର ଜେଜେ-ନାତିଙ୍କ ଶୋଇବା ଘର ଭିତରକୁ ପଶି ଆସୁଥିଲେ । ସେଥିରୁ ବୁଝିବାକୁ ହେବ ନାହିଁ ଯେ ସ୍ୱାମୀଙ୍କ ହାଣ୍ଡି ମୁହଁ ସାଧାରଣ ଅବସ୍ଥାକୁ ଫେରି ଆସିବଣି, ସେ ଏଇ ଆଶ୍ୱାସନାଟିକ ପାଇ ସାରିଥିଲେ । ହାଣ୍ଡି ଫାଟି ଯାଇ ବର୍ଷା ଝରେଇ ପାରେ ଏଭଳି ଆଶଙ୍କା ମଧ୍ଯ ତାଙ୍କ ମନକୁ ଛୁଉଁ ନଥିଲା । ଏ ବିଷୟରେ ପ୍ରଶ୍ନ କଲେ ସେ ହୁଏତ ତାଙ୍କ ଚଉଡ଼ା ହସ ଖୋଲି ଦେଇ କୁହନ୍ତେ, ମଲା ! ରାଗ ହେଉ ସରାଗ ହେଉ ତାକୁ ଜଣେଇବା ପାଇଁ ପରିଶ୍ରମ ଦରକାର ତ ?

ପ୍ରକୃତ ପକ୍ଷେ ଗଣେଶ୍ୱର ବାବୁଙ୍କ ରାଗ ସେଇ ସାମାନ୍ୟ ଉତ୍ତେଜନା ପରେ କେତେବେଳୁଁ ଉଭେଇ ଗଲାଣି । ତାଙ୍କ ଆଖିକୁ ଅବଶ୍ୟ ନିଦ ଆସିନାହିଁ । ଭୂଷା ନିଘୋଡ଼ ନିଦରେ ନ ଶୋଇଲା ଯାଏଁ ସେ ଶୋଇବେ କେମିତି ? କିନ୍ତୁ ଦେଖାଗଲା ଯେ ଭୂଷା ଉତ୍ତମ ରୂପେ ଶୋଇ ଯାଇଥିବାର ଯଥେଷ୍ଟ ନିଦର୍ଶନ ମିଳିଲେ ମଧ୍ଯ ସେ ଚେଇଁ ରହିଛନ୍ତି । କାରଣ ଝରକା ବାଟେ ମନ୍ଥର ମେଘମାଳାର ଦୃଶ୍ୟ ତାଙ୍କ ବାଟ ଓଗାଳିଥିଲା । ଐରାବତ ମାନେ ତାଙ୍କୁ ଘେରି ଯାଇଥିଲେ । କହୁଥିଲେ ଆମରି ସାଙ୍ଗରେ ମିଶି ଯା’ ନ ଶୋଇ ପାରିବାର ଦୁଃଖ ରହିବ ନାହିଁ । ଆମେ ତୋ’ ଡାକଗାଡ଼ିର ଅପର ପାଖ, ବୁଝିପାରୁନୁ ? ବିଶ୍ୱାସ କରୁନୁ ? ଗତିରେ ଗମନ ନାହିଁ, ରତିରେ ରମଣ ନାହିଁ, କଳାକାହ୍ନୁ ଉଦ୍ଧଟ ନୁହେଁ କି ଉଚ୍ଛନ୍ନ ନୁହେଁ, ଏଇ ମୋହନ ଚେତନକୁ ବି’ ଛୁ ନାହିଁ କରିଦେବୁ ? ଦେଖୁନୁ, ଏଇ ଫଡ଼ଫଡ଼ିଆ ଚଢ଼େଇ ଖଣ୍ଡିକ ଯେ ମେଘରୁ ଟେଲିଗ୍ରାଫ୍ ତାରକୁ ତାରରୁ ନିହନିହକା ଡାଳକୁ , ଡାଳରୁ ଶ୍ୟାମଳରେ ଲୁଚିଥିବା ପୋକକୁ , ପୋକରୁ ପୁଣି ଆକାଶକୁ ଅନଉଛି ବିକଳରେ, ସେ ବି’ କେମିତି ଆମ

ତାଲରେ ପଡ଼ୁଛୁ ? ସେ ବ' ଭୁଲ ପଡ଼ିବ, ଅଣ୍ଟାକୁ ଗୁଞ୍ଜିଦେବ ନିଜ ଦେହ ଭିତରେ, ଆଉ ଆମକୁ ହେଜିବ । ଏଇ ଅଦ୍ଭୁତ ଆବେଶଟି ତୋ'ର, ଖାସ୍ ତୋର ପାଇଁ । ହୁଏତ ହଜାରେ କର୍ମର, ଅଶ୍ରୁର, ଅବଶେଷ ଅଛି ଏଥିରେ, କାରୁଣ୍ୟରେ ଜୁଡ଼ୁବୁଡ଼୍, କିନ୍ତୁ ଭୟ ନାହିଁ···ସେ ନିୟୂ ହାବୁଡ଼ିପିବ, ଧଇଁସଇଁ ହେବ, ମାଡ଼ ବସିବ ତୋ'ର ଚେତନାକୁ—

ଏଇ ସମୟରେ ଭୂଷା ନାମକ ମୂର୍ତ୍ତିମନ୍ତ ନିୟୂ ମାଡ଼ ବସିଲା ତାଙ୍କୁ । ପ୍ରଥମେ ଗହମ ନିଦରୁ ଉଠି ଫେଁକିନ ହସିଲା ଜେଜେଙ୍କୁ ଚାହିଁ । ଘଣ୍ଟାଏ ଦେଖୁଛି ଏଇ ଅଦ୍ଭୁତ ଲୋକଟି, ହୋଇପାରେ ମିତ, ଫେର୍ ଆସି ପହଞ୍ଚିଗଲାଣି । ମାଡ଼ ବସ ତାକୁ । ଗଣେଶ୍ୱରବାବୁ ତାକୁ ତାଙ୍କ ଘୋଡ଼େଇ ହୋଇଥିବା ଶାଲ ଭିତରକୁ ନେଇ ଆସିବା ଯାଏ ତା'ର ତର ସହିଲା ନାହିଁ । ସେ ଶାଲ ଫାଲ ନ ମାନି ତାଙ୍କ ଉପରେ ଚଢ଼ଉ କଲା, ଆଉ ତାଙ୍କ ଗୁମ୍ଫ ଭିତରେ ହାତ ପୂରେଇ ସେଥିର ଶୁଭ୍ର କେଶକୁ ମୁଠା ମୁଠା କରି ଧରିଲା । କିନ୍ତୁ ସେ ଜେଜେଙ୍କୁ ଡରଉଥିଲା ମାନି, ଏଣୁ ଭାବରେ ପୁଣି ହୁଁ ହୁଁ ହୋଇ ହସିଲା ଓ ସେଇ କେଶରେ ମୁହଁ ଗୁଞ୍ଜିଲା।···ପ୍ରଥା-ନମେ ତା'ର ଠିକ ଆଙ୍ଗୁଳି ଗୁଡ଼ିକ ତାଙ୍କ ଦେହକୁ କେବଳ ଖିମ୍ବୁଛି ଖିମ୍ବୁଛି କଲା ଓ ଗଣେଶ୍ୱରବାବୁ ତା'ର ଅନୁଭବକୁ ସର୍ବାଙ୍ଗରେ ଗ୍ରହଣ କରିବାକୁ ଲାଗିଲେ । ଶାଲ ଭିତରୁ କେବଳ ଭୂଷାର ଜୁଲୁଜୁଲୁ ଆଖି ଦୁଇଟି ଦିଶୁଥିଲା ବାହାରକୁ, କୋରଡ଼ ଭିତରୁ ଗୁଣ୍ଡୁଚି ମୂଷା ଅନେଇଲା ପରି । କିଛି ସମୟ ପୂର୍ବରୁ ବୋଧା ଐରାବତମାନେ ଯେଉଁ ପାଠ ପଢଉଥିଲେ ଗଣେ-ଶ୍ୱରବାବୁଙ୍କୁ, ତାହା ଅଧା ରହିଗଲା । ଗଣେଶ୍ୱରବାବୁଙ୍କ ଚେତନାରେ ଯେଉଁ ଏକ ମହାନୁଭବ ଦେବତାର ସ୍ପର୍ଶ ବାଜୁଥିଲା, ଯେଉଁଥିରେ ସମୟର ତାଡନା ନାହିଁ, ହେଲେ ତା'ର ନିୟୂ ପଞ୍ଚୁରୁଛି । ନିୟୂର ଅନ୍ୟ ନାଆଁ ନୀଡ଼ା ।

ଏଇ ମୁହୂର୍ତ୍ତରେ ହଜାରେ କରଣ୍ଡୋଳା କ ନରେଶ ନନ୍ଦିନୀ ତାଙ୍କୁ ନିସ୍ତ୍ରିପୁତା ନାମକ ବସ୍ତୁଟିକୁ ଚହ୍ଲେଇ ପାରି ନ ଥାଆନ୍ତେ । ସେ ଆଶ୍ଚର୍ଯ୍ୟ ହୋଇ ପଚାରନ୍ତେ ସେମାନଙ୍କୁ—ଏଁ ? କାହା କଥା କହୁଛ ତମେ ?

ନରେଶ ଓ ନନ୍ଦିନୀ ଧଇଁସଇଁ ହୋଇ ଫେରିଲେ ଘରକୁ । କାରଣ ମେଘ ଛୁଟିଗଲେ ମଧ୍ୟ ପୁଣି ଆସିପାରେ ଏଇ ବାହାନାରେ ଦୁହେଁ ରାସ୍ତାରେ

ଦୌଡ଼ିବାକୁ, ଡେଇଁ ଡେଇଁ ଆସିବାକୁ ବାଧ୍ୟ ହୋଇଥିଲେ । ସେଇଠୁଁ ଯାଇଁ ବାପାଙ୍କ ପାଖରେ ପହଞ୍ଚିଲେ । ଗୁରୁଜନଙ୍କ ଆଗେ ଉଚ୍ଛୁଳା ହସ ଓ ଉଚ୍ଚାବାଚର ଆମର୍ଯ୍ୟାଦା ଦେଖେଇଲେ ବୋଲି ମନେ ହେବ, କିନ୍ତୁ ତାଙ୍କର ଚାହାଣୀରୁ ଜଣାପଡୁଥିଲା ଯେ ଆଜିକାର ଏଇ ଆନନ୍ଦ ମୁହୂର୍ତ୍ତରେ ସାମାନ୍ୟ ଲୋକାଚାରକୁ ଜଗିବା ଅବାନ୍ତର । ଯେହେତୁ ସେମାନେ ତାଙ୍କ ବାପାଙ୍କୁ ପ୍ରଭୂତ କ୍ଷମା ଓ ଉଦାରତାରୁ ବଳି ଭଲ ପାଇବା ଦେବାକୁ ମଧ୍ୟ ପ୍ରସ୍ତୁତ ଅଛନ୍ତି । ବଞ୍ଚିରହନ୍ତୁ ବାପା ଆମର ଆହୁରି ଶହେ ବର୍ଷ, ଆମେ ତାଙ୍କୁ ଭଲ ପାଉ, ଏପରିକି ତାଙ୍କର ଦଦରା କଣ୍ଠ, ତାଙ୍କ ନିଷ୍କର୍ମ ନିରବତା··· ବାର୍ଦ୍ଧକ୍ୟର ଦୁଆର ବନ୍ଦରେ ଅଛନ୍ତି ଏଇକ୍ଷଣି, ଯାଆନ୍ତୁ ଭିତରକୁ, ଆହୁରି ଭିତରକୁ, ଚିନ୍ତା ନାହିଁ···କାହିଁକି ନା ଜଣିବାର ଦାୟିତ୍ବ ଆମର ।

ଏଥର ଆଗଚଲି ନନ୍ଦିମାଙ୍କୁ ସୁଯୋଗ ଦିଆଗଲା ନାହିଁ । ନରେଶ ଚନ୍ଦ୍ରକିନ ଗାଇଗଲେ ଗଡ଼ଗଡ଼ ହୋଇ—ବାପା, ସବୁ ଠିକ୍ ହୋଇଗଲା ···ସେମାନେ ସମସ୍ତେ ଖୁବ୍ ଭଲ ମଣିଷ । ତାଙ୍କ ଭିତରୁ ଜଣେ ତା' ନାଆଁ ପାଣ୍ଡେ, ମୋ' ସାଙ୍ଗରେ ପଢୁଥିଲା ପରା !··· ସେଥିପାଇଁ ନୁହେଁ, ସେମାନେ ମୋତେ ବଧେଇ ଦେଲେ, କହିଲେ ଆମେ ଆପଣଙ୍କୁ ଚାହୁଁ··· ଅବଶ୍ୟ ମୁଁ ତାଙ୍କ ପାର୍ଟିରେ ମିଶିବି ବୋଲି ଲେଖା ହୋଇନାହିଁ, ତେବେ ମୁଁ ଯାହା ଚାହୁଁଥିଲି, ମାନେ ଆମେ ଯାହା ଚାହୁଁଥିଲୁ (ଏଇଠି ନନ୍ଦିମା ଫିକ୍‌କିନି ନ ହସିଲେ ଚଳି ଥାଆନ୍ତା) ସେଇଆ ହେଲା···ଅବଶ୍ୟ ଆମକୁ ଅଭାବରେ ରହିବାକୁ ପଡ଼ିବ ନାହିଁ, ତା'ର ବ୍ୟବସ୍ଥା ସେମାନେ କରିବେ ···କିନ୍ତୁ ମୂଳ କଥା ହେଉଛି ଆମକୁ କାମ ମିଳିଗଲା, ନିଜ ପରି କାମ । ବୁଝିଲେ ନା ବାପା ? ମାନେ ଯେଉଁଥିରେ—

ଭାବାବେଗରେ ଥଙ୍ଗ ଥଙ୍ଗ ହାଇଫେନ୍‌ରେ ନନ୍ଦିମା ଯୋଡ଼ିଦେଲେ ନିଜକୁ । କହିଲେ, ମାନେ ଯେଉଁଥିରେ ଆତ୍ମାକୁ ଶାନ୍ତି ମିଳିବ···

କିନ୍ତୁ ସାମାନ୍ୟ ଭରତର ସ୍ଖଳନ ଉପରେ ପରିବାରର ଆଉ ଦୁଇଜଣ ସଦସ୍ୟ ମଧ୍ୟ ଅଜାଣ୍ତେ ହୋଇ ପଡ଼ିଲେ । ନିଜକୁ ବ୍ୟକ୍ତ କରିବାର ସୁଯୋଗ ପାଇଲେ ଏତେବେଳକେ ।

ପ୍ରଥମତଃ ଭୂଷା ଯେ ଜେଜେଙ୍କ ଦେହଲଗା ହୋଇ ସୁଖ କରୁଥିଲା ଏତେ ବେଳଯାଏଁ ବେଶ୍ ଜୋର୍‌ରେ ଚିତ୍କାର କଲା । ଆଗରୁ ବାପି-ମାମିଙ୍କ ଆଡ଼କୁ ହାତ ବଢେଇ କୁଁ କୁଁ ହେଉଥିଲା, କେହି ସେଥିପ୍ରତି ଧ୍ୟାନ ଦେଉ ନଥିଲେ । କିନ୍ତୁ ଚିତ୍କାରକୁ ନ ଶୁଣିବେ କେମିତି ଦେଖିବା ତ ! ପଛ କଥା ପଛରେ । ବର୍ତ୍ତମାନ ସେ ଅସୁଖୀ । ସେ ବାପି-ମାମିଙ୍କ ଭୂଷା । ମୋତେ ନେଉଛ ନା ନାହିଁ ? ଗଣେଶ୍ୱରବାବୁ ତା'ର ରଙ୍ଗଢ଼ଙ୍ଗକୁ ବେଶି ଲକ୍ଷ୍ୟ କରୁଥିଲେ । ନନ୍ଦିନୀଙ୍କ ଆତ୍ମାମୂଳକ ଉକ୍ତି ତାଙ୍କ ଶ୍ରବଣରେ ପୂରାପୂରି ପହୁଞ୍ଚିଥିଲା ବୋଲି ବୋଲି କହି ହେବନାହିଁ ।

ଦ୍ୱିତୀୟରେ କରଣବାଳା ସେମାନଙ୍କୁ ଶୁଣେଇ ପାରିଲେ—

"କ'ଣ କାମ କାମ ହଉଛ ମ ! ଆସି ଘଣ୍ଟାଏ ହେଲାଣି କହି ହଉଚି ମୁଁ, ଯାଅ ଆଗେ ପୋଛିପୋଛି ହୋଇ ଲୁଗା ବଦଳେଇ ଆସ ! ନମୁନିଆ ହେଲେ କୋଉ କାମ ମୁଣ୍ଡେଇବ ତମକୁ ?"

× × × ×

ନିରବଧି କାଳ ଇତି ମଧ୍ୟରେ ତିନୋଟି ବର୍ଷରୁ ବେଶି ଅତିକ୍ରାନ୍ତ କରି ସାରିଲାଣି । ନରେଶ ଓ ନନ୍ଦିନୀଙ୍କୁ ନମୁନିଆ ନ ହେଲେ ମଧ୍ୟ ଛୋଟବଡ଼ ନାନାବିଧ ଦୁଃଖକଷ୍ଟ ଭୋଗିବାକୁ ପଡ଼ୁଛି । ସେଥିମଧ୍ୟରୁ ଉଲ୍ଲେଖ-ଯୋଗ୍ୟ ହେଉଛି ଯେ ଥରେ ରାତିରେ ସ୍କୁଟର ଚଲେଇ ପାର୍ଟି ଅଫିସରୁ ଫେରିଲା ବେଳେ (କହିବା ବାହୁଲ୍ୟ ଯେ ଦୁହେଁ ଜ. ବ. ପାର୍ଟିରେ ଯୋଗ ଦେଇ ସାରିଲେଣି) ନରେଶ ରାସ୍ତାରେ ଶୋଇଥିବା ଗୋଟିଏ ଷଣ୍ଢ ସାଙ୍ଗରେ ଧକ୍କା ଲଗେଇଲେ । ଫଳରେ ହାତଗୋଡ଼ ଭାଙ୍ଗି ତିନିମାସ ଶଯ୍ୟାଶାୟୀ ହୋଇ ରହିଲେ । ସମାଲୋଚକମାନଙ୍କୁ ମୁହେଁ ମୁହେଁ ଜବାବ୍ ଦେଲେ—"ରଖ ତମ ସ୍ପିଡ୍ ଲିମିଟ୍ ! ବଡ଼କଥା ହେଉଛି ଦେଶର ସ୍ପିଡ୍ । ବଳଦ-ଗାଡ଼ିକୁ ରାତାରାତି ଜେଟ୍ ପ୍ଲେନ୍ ବନେଇବାକୁ ପଡ଼ିବ ନ ହେଲେ ଆମେ ପଛରେ ପଡ଼ିଯିବା···ବୁଝିଲ ?" ଆଉ ଏକ ଘଟଣା ହେଉଛି ଯେ ନନ୍ଦିନୀ ଥରେ ନାରୀଗୁଣର ଉପେକ୍ଷା କରି ଜନୈକ ସହକର୍ମୀଙ୍କୁ ଜବର୍ ଚାପୁଡ଼ାଏ ମାରିଲେ, କାହିଁକନା, ଲେକଟା ପାର୍ଟିର ବରିଷ୍ଠ ନେତା ରାମଶଙ୍କରଙ୍କର ଗୃହିଣୀଙ୍କୁ ମାଇଚିଆ ବୋଲି କହିଲା । ବନ୍ଧୁ ପାଣ୍ଡେର ଚେଷ୍ଟାରେ ନିଆଁ

ଲଭଗଲା କୌଣସି ମତେ, ନ ହେଲେ ପରିଣାମ ଭୟାବହ ହୋଇ ଥାଆନ୍ତା । କିନ୍ତୁ ମାସକଯାକ ନନ୍ଦିନୀ ଯେମିତି ଚଡ଼ ଚଡ଼ ବଡ଼ ବଡ଼ ହେଉଥିଲେ ଓ ଭୂଷାକୁ ଅଯଥାରେ ପିଟୁଥିଲେ ତା’ର ନିଆଁ ଝୁଲ ଗଣେଶ୍ୱରବାବୁଙ୍କ ଚେତନାରେ ଗୃଙ୍କନ ଲାଗି ଯାଉଥିଲା ବେଳେ ବେଳେ । ଥରେ ସେ ମୁହଁ ଖୋଲିବାକୁ ବାଧ୍ୟ ହେଲେ । ଶୁଣେଇ ଶୁଣେଇ କହିଲେ— “ମୁଁ ସେଇ ଦିନଠୁଁ ମନା କରିଛି ଯେ କୋଉ ପାର୍ଟିଫାର୍ଟିରେ ମିଶ ନାହିଁ, ସେମାନେ ତମକୁ ଶାନ୍ତିରେ ବଞ୍ଚିବାକୁ ଦେବେ ନାହିଁ···।” ସେ କେବେ କାହାକୁ ମନା କରିଥିଲେ ବୋଲି କାହାର ମନେ ପଡ଼ିଲା ନାହିଁ । ତଥାପି ନରେଶ ଓ ନନ୍ଦିନୀ ଅବିଳମ୍ବେ ଯୋଡ଼ି ହୋଇ ଛିଡ଼ା ହେଲେ ତାଙ୍କ ସାମ୍ନାରେ, ଏବଂ ଯୁବବାଣୀ ଶୁଣେଇଲେ ଛଡ଼ାଛଡ଼ି ହୋଇ । ଯାହାର ସାରାଂଶ ହେଲା—

ବାପା, ଶାନ୍ତିରେ ରହିବା ପାଇଁ ଆମେ ଆସି ନାହୁଁ ସଂସାରକୁ । ପଡ଼ୁଉଠି ଲହୁଲୁହାଣ ହୋଇ ମଧ୍ୟ ଆମକୁ ଧାଇଁବାକୁ ହେବ । ଲଢ଼େଇ କରିବାକୁ ହେବ । ନ ହେଲେ ଏ ଦେଶ ଆଗେଇବ କେମିତି ? କିନ୍ତୁ ଆପଣ ବ୍ୟସ୍ତ ହେବେ ନାହିଁ (ଆପଣ ଶାନ୍ତିରେ ରହନ୍ତୁ, ଭଗବାନ୍ ଆପଣଙ୍କର ମଙ୍ଗଳ କରନ୍ତୁ)···ଆମେ ବୁଝିବୁ ଆମ କଥା··· ଆପଣ ଦୟା କରି···

ଗଣେଶ୍ୱରବାବୁଙ୍କ କିଛି ପରିବର୍ତ୍ତନ ହୋଇଛି କି ନାହିଁ ବିଚାର କରିବା ନିରର୍ଥକ ମନେ ହୋଇପାରେ । ମୁଣ୍ଡରେ ଯେଉଁ କେତେକ ଶୁଭ୍ର କେଶ ଅଛି, ସେଥିରୁ କେତୋଟି ଝଡ଼ି ଗଲଣି, ମାଂସଳ ମୁହଁର ମାଂସପେଶୀ ଆହୁରି କେତେଦୂର ଓହଳି ଗଲଣି, ପ୍ରଶସ୍ତ ଭାଲରେ ଆଉ କେଇଟା ଗାର ପଡ଼ିଲଣି, କଣ୍ଠସ୍ୱର ଆହୁରି ଦଦରା ହେଲଣି କି ନାହିଁ, ଏ ସବୁର ହିସାବ କରିବା ଅନାବଶ୍ୟକ । ହାବଭାବ ମଧ୍ୟ କିଛି ବଦଳିଛି ବୋଲି ଜଣା ପଡ଼ୁ ନାହିଁ ତ ? କହିବାକୁ ଗଲେ ଧାବନ-ବିମୁଖ ଗଣେଶ୍ୱରବାବୁଙ୍କ ଯେ କୌଣସି ଲକ୍ଷଣ ଉପସର୍ଗ ଧାଇଁବ କେମିତି ? ସତ କଥା । ଯାହା ବଢ଼ିଛି ବା ଛୁଉଁଛି, ଧୀରେ, ଅତି ଧୀରେ । କାହାର କାମ ନାହିଁ ତାକୁ ତାକୁ ବସି ଲକ୍ଷ୍ୟ କରିବ ? ଦେଖିବ ଯେ କେମିତି ବଗିଚାରେ ବୁଲୁ ବୁଲୁ ହଠାତ୍ ହସୁଛନ୍ତି ମନକୁ ମନ ? କୁଲକାନ ପ୍ରାୟ ପଡରଟୋପର ଭିତରୁ

କୁନ କୋବିଫୁଲଟିଏ ଉଙ୍କି ମାରୁଛି, ଟମାଟୋର ଗାଲ ଲାଜେଇ ଲାଜେଇ ରସରେ ଟଳ୍‌ଟଳ୍ ହୋଇ ଗଲାଣି, ମୋତେ ଉଠେଇ ନଅ ବୋଲି ନେହୁରା ହେଉଛି, ପୁସି ବିଲେଇ ଚୁପ୍‌ଚାପ ବସି ପୋକ ଖୁମ୍ପୁଥିବା ଚଢ଼େଇମାନଙ୍କୁ ଅନେଇଛି, କୁଁକାଁ ହୋଇ ଚଢ଼େଇଙ୍କୁ ନକଲ କରୁଛି, ସତେ କି ସେଇଥିରେ ସେମାନେ ବୋକା ବନିଯାଇ ତା' ଉପରେ ପଡ଼ିବେ, ଇତ୍ୟାଦି ନାନାଦି ଇତର ଦୃଶ୍ୟରେ ଆପଣା ହସ ହସିବାର ପ୍ରବଣତା କ'ଣ ସତେ ଆଗରୁ ନଥିଲା ? ମାଙ୍କଡ଼ମାନେ କସି ବାଇଗଣ ଖାଇଗଲେ କ୍ଷତି ନାହିଁ, କିନ୍ତୁ ସେଥିରୁ ଅଧେ ଦାନ୍ତେଇ ଫିଙ୍ଗି ନଷ୍ଟ କରି ଦେଲେ, ବିନ୍ ଗଛଗୁଡ଼ିକ ମଧ୍ୟ ଉପାଡ଼ି ନାରଖାର କରି ଦେଲେ, ଅକାରଣ ଧ୍ୱଂସର ଏହି ପ୍ରକାର ଲୀଳା ଦେଖି ସେ କ'ଣ ଆଗରୁ ବ୍ୟଥିତ ହେଉ ନ ଥିଲେ ? ଭ୍ରୂରୁ କୁଞ୍ଚେଇ ଗୁମ୍ ହୋଇ ବସି ରହୁ ନ ଥିଲେ କିଛିକ୍ଷଣ ? ଉତ୍ତର ମାଗିଲା ପରି ବଗିଚାରୁ ଦୂରକୁ, ଦିଗ୍‌ବଳୟକୁ ସେଇଠୁଁ ଆକାଶକୁ ଅନଉ ନ ଥିଲେ ? କିନ୍ତୁ ଅନ୍ତତଃ କିରଣବାଳା ଲକ୍ଷ୍ୟ କରି ପାରି ଥାଆନ୍ତେ (କେତେ ବର୍ଷ ହେଲା ସେ ଭିନ୍ନ ବିଛଣାରେ ଶୋଉଛନ୍ତି ବୋଲି ତାଙ୍କୁ କ୍ଷମା କରାଯାଇ ନ ପାରେ ) ଯେ ଶୋଇବା ଅବସ୍ଥାରେ ସେ ପୂର୍ବାପେକ୍ଷା ଅସହାୟ ଦିଶୁଛନ୍ତି, ମନେ ହେଉଛି ସେ କ'ଣ ଖୋଜୁଛନ୍ତି ମିଳିବାକୁ ନାହିଁ, ବିଶେଷତଃ ତାଙ୍କ ଡାହାଣ ହାତ ପାଖ ତକିଆକୁ ଅଯଥାରେ ଅଣ୍ଡାଳୁଛି, ଆଉଁସୁଛି··· ଯେହେତୁ ଭୂଷା ନାହିଁ । ବଡ଼ ହୋଇଗଲାଣି । ତାକୁ ଆଉ ଧୋ' ବାୟା କହି ଶୁଆଇ ପକାଇବାର ପ୍ରଶ୍ନ ଉଠୁ ନାହିଁ । ବେଳେ ବେଳେ ଅବଶ୍ୟ ସେ ମଜା ଦେଖିଲା ପରି ଜେଜେଙ୍କୁ ଆସି କୁହେ—ଜେଜେ, ମୁଁ ତମ ପାଖରେ ଶୋଇବି ଆଜି । ମୋତେ ଧୋ' ବାୟା ଗୀତ ଗାଇ ଶୁଆଇ ପକାଇବ, ଆଚ୍ଛା ? ପୁରୁଣା ଦୃଶ୍ୟର ପୁନରାବୃତ୍ତି ହୁଏ । କିନ୍ତୁ ଭୂଷା ଶୋଇବ କ'ଣ ହସୁଥାଏ । ଏବଂ ଗଣେଶ୍ୱରବାବୁ ଗୀତ ଗାଇବା ମଝିରେ ଅଟକି ଯାଆନ୍ତି ଅନେକ ସମୟ । ତାଙ୍କ ମୁହଁ କାନ୍ଦୁରା ଯଥା ଅସନା ଦେଖାଯାଏ କହିଲେ ଅତ୍ୟୁକ୍ତି ହେବ ନାହିଁ ।

କିରଣବାଳା ଏଭଳି ଦୃଶ୍ୟ ଦେଖିଲେ ନାହିଁ କି ଦେଖି, ଦେଖି ପାରିଲେ ନାହିଁ । ଅଥଚ ମାଆପୁଅ କଥାଭାଷା ହେଲାବେଳେ ଥରେ ଦୁଃଖ ପ୍ରକାଶ କରି କହିଲେ,—"ଜାଣିଚୁ ? ଆଜିକାଲି ଖବରକାଗଜ ବି

ଭଲକରି ପଢ଼ୁନାହାନ୍ତି ମ ! ମିନିଟିକରେ ଆଖିବୁଲେଇ ଫିଙ୍ଗି ଦେଉଛନ୍ତି । ମୁଁ ଥରେ ପଚାରିଲି ଯେ କହିଲେ—କ'ଣ ମିଳିବ ସେଥିରୁ ? ସମସ୍ତଙ୍କରି ସେଇ ଏକାକଥା । ହମ ହମ, ନହେଲେ ହନ୍ତସନ୍ତ । ମୋର ଚିମରି ହେଉ କି ଜାତିର ଦେଶର ହେଉ । ଆଜି କଥା ମଝିରେ ଭୂତ ଲଗିଲାପରି ପଚାରନ୍ତି—ଆଚ୍ଛା, ନରୁ କ'ଣ କରୁଛି ଆଜକାଲି ?" ସେଇଠୁ ଦୁହେଁ ସମବେଦନାର କାରଣ ସତ୍ତ୍ୱ ଅଳ୍ପ ବହୁତ ହସ ହସିବାକୁ ବାଧ୍ୟ ହେଲେ ।

ଏହି ପର୍ଯ୍ୟାୟରେ ନରେଶ ହଠାତ୍ ସକାଳୁକଣ୍ଠାରେ ଗୁରୁଗମ୍ଭୀର ଘୋଷଣା କଲେ—"ମୁଁ ଆସନ୍ତା ଇଲେକ୍‌ସନ୍‌ରେ ଛିଡ଼ା ହେଉଛି, ଡ଼. ବ. ପାର୍ଟି ତରଫରୁ । ପାଣ୍ଡେ କଥା ଦେଇଛି ମୋତେ । କଅଣ ··ଆପତ୍ତି ଅଛି କାହାର ?"

ଉତ୍ତରରେ ଭୂଷା କ'ଣ ବୁଝିଲା କେଜାଣି, ତାଳଠାଏ ମାରିଲା । ନନ୍ଦମା ଖଣ୍ଡେ ଦୂରେ ଥାଇ ମୁର୍‌କି ମୁର୍‌କି ହସିଲେ ଯଥା ସେ ଏଇ ମିଷ୍ଟାନ୍ନର ରଚୟିତା । କିରଣ ବାଳା ହସିଲେ ଏ କୂଳରୁ ସେ କୂଳଯାଏଁ । ସ୍ୱାଭାବିକରୁ ଅଧିକ ବୋଲି କହିବାକୁ ହେବ । କିନ୍ତୁ ଗଣେଶ୍ୱରବାବୁ ବାରମ୍ବାର 'ଭଲ ଭଲ' କହିବା ସତ୍ତ୍ୱେ ପୁଅର ମୁହଁକୁ ଅନେଇ ରହିଲେ, ବହୁତ ସମୟ । ମନେହେବ ସେ ତା'କୁ ନୂଆକରି ଦେଖୁଛନ୍ତି, କିମ୍ବା ସ୍ମୃତିଗଦାରେ ତା'ର କେଉଁ ପିଲାଦିନର ପୁରୁଣା କଥାକୁ ଖୋଜୁଛନ୍ତି, ଯେଉଁଥିରୁ ତାଙ୍କର ଭାବିବା ଉଚିତ ଥିଲା ଯେ ଏମିତି ଘଟିପାରେ··· ।

ପରବର୍ତ୍ତୀ ତିନୋଟି ଦିନ ମେଳା ମଉଚ୍ଛବର ଦିନ ବୋଲି ମନେ ହେଲା । ନାନା ବର୍ଣ୍ଣ, ବୟସ ଓ ଭେକବିଶିଷ୍ଟ କର୍ମୀମାନେ ଆସିଲେ, ଗଲେ । ଥରେ କିରଣବାଳା ଗରମାଗରମ ଆଲୋଚନା ପରେ ଘରୁ କାହାରି ଆସୁଥିବା ଦଳ ଭିତରେ ଜଣକଆଡ଼କୁ ସନ୍ତର୍ପଣରେ ହାତ ଦେଖାଇ ସ୍ୱାମୀଙ୍କୁ କହିଲେ ଫୁସ୍ ଫୁସ୍ ହୋଇ—ଏଇ ହେଉଛି ପାଣ୍ଡେ । ନରୁ କହୁଥିଲା ଯେ ଆମ ପାର୍ଟି ଜିତିଲେ ସେ ମୁଖ୍ୟମନ୍ତ୍ରୀ ହେବା ବିଚିତ୍ର ନୁହେଁ । କିନ୍ତୁ ଦୁଃଖର ବିଷୟ ଗଣେଶ୍ୱରବାବୁ ତାକୁ ଭଲ ଭାବରେ ଲକ୍ଷ୍ୟ କରି ପାରିଲେ ନାହିଁ । ସେ ସମବେତ ହାତହଲା ବଡ଼ବୋଲର

ଭଙ୍ଗୀସବୁ ଲକ୍ଷ୍ୟ କରୁଥିଲେ ଓ ତାଙ୍କର ଭୟ ହେଉଥିଲା ଯେ ଏଥର ଏଇଆ ଚାଲିବ ଏ ଘରେ । ହଉ । ଖୋଦ୍ ପ୍ରଧାନମନ୍ତ୍ରୀଙ୍କର ମଧ୍ୟ ଜଣେ ବାପା ରହିବା ଉଚିତ ଓ ବାପାଙ୍କ ପାଇଁ ଚେନାଏ ଆକାଶ । ଏବଂ ସୁଖର କଥା ଯେ ସେ ଦିନେ ବୋଧ ୁର ଗାଲରେ ତଥା ଓଠରେ ଜଳଜଳ ହୋଇ ଦିଶୁଥିବା କ୍ଷତଚିହ୍ନର କାରଣ ଠଉରେଇ ପାରି ନଥିଲେ । ତା' ହେଲେ ହୁଏତ ସେ ପୁଅର ଉଲ୍ଲାସ-କ୍ରୋଧର ପାରା କେତେ ଉପରକୁ ଉଠିଲାଣି ଜାଣିପାରି ଆହୁରି ଶଙ୍କି ଯାଇ ଥାଆନ୍ତେ ।

କିନ୍ତୁ ଚତୁର୍ଥ ଦିନର ସଞ୍ଜବେଳେ (ସେଇଦିନର ସଞ୍ଜଟି ଅତି ମନୋରମ ଥିଲା, ଆକାଶରେ ଖଣ୍ଡି ଖଣ୍ଡି ନାଲିମେଘ କେଇଟା କଡ଼େଇରେ ଅପେକ୍ଷା କରିଥିବା ଛେନାଚାଡ଼ଆ ପରି ଦିଶୁଥିଲା ଏବଂ ପୃଥିବୀର ବାଇଗଣ କିଆରୀରେ କେଜାଣି କେତେ କଳା କଳା ପେଣ୍ଡି ବାଇଗଣ ଦୁଲି ଝୁଲୁଥିଲା) ନରେଶ ଝଡ଼ପରି ପଶି ଆସିଲେ ଘର ଭିତରକୁ ଏବଂ ଉଚ୍ଚ ସ୍ୱରରେ ଶୁଣେଇଲେ ସମସ୍ତଙ୍କୁ, ସ୍ୱରରେ ଉଲ୍ଲାସ ନଥିଲା, କେବଳ କ୍ରୋଧ—

"ଦେଲେ ନାହିଁ ସେମାନେ ! ଠିକ୍ଅଛି, ଆଇ ଡୋଣ୍ଟ୍ କେଆର୍ ! ମୁଁ ଲଢ଼ିବି । ନରେଶ ବର୍ମାକୁ ଚିହ୍ନନ୍ତି ନାହିଁ ସେମାନେ । ମୁଁ ହେବି ସ୍ୱାଧୀନ ପ୍ରାର୍ଥୀ । ବୁଝିଲୁ ବୋଉ—"

ଲମ୍ବି ଯାଉଥିବା ସ୍ତବ୍ଧତାକୁ କାଟିଦେଇ କିରଣବାଳା ପଚାରି ବସିଲେ ।

"ଆଲେ, ଏମିତି, କ'ଣ ହେଲା ?"

"ଶଳା ପାଣ୍ଡେ ! ସେଇ ସବୁ ନାଟର ଗୋବର୍ଦ୍ଧନ ।"

ସେଇ ଦିନଠାରୁ "ଶଳା ପାଣ୍ଡେ" ପଦଟି ମନ୍ତ୍ରଶକ୍ତି ଭାବରେ କାମଦେଲା । ଅବଶ୍ୟ ନରେଶ ସ୍ୱାଧୀନ ପ୍ରାର୍ଥୀ ହୋଇ ଲଢ଼ିବାର ନିଷ୍ପତ୍ତିକୁ ଘରଭିତର ପରିଚୟ ଛଡ଼ା ଆଉ କିଛି କୁହାଯାଇ ନପାରେ । ତଥାପି ପରିବାରବର୍ଗ ତଥା ସହକର୍ମୀମାନେ ବେଳେ ବେଳେ ନିରାଶ ହୋଇ ପଡୁଥାଆନ୍ତି । ମନେ ହେଉଥାଏ ଯେ ନରେଶ ବର୍ମାଙ୍କର ଲୋକପ୍ରିୟତା ଷ୍ଟକ୍ରର

ଓ ତା'ର ହ୍ୟାଣ୍ଡଲ୍‌ରୁ ଧୂଆଁ ଉଡ଼େଇ ଗର୍ଜୁଥିବା ଇଞ୍ଜିନ୍‌ର ହଣାଣି ମହାପରାକ୍ରମୀ ଡ.ବି.ସି. ଓ ବି.ଡ଼.ପି ବନାମ ବିଶାଳ ଦେଶ ପରିଷଦ୍‌ଙ୍କ ବିରାଟ ଶୋଭାଯାତ୍ରା, କାର୍ କପ୍‌ଲଗା ଲଉଡ୍ ସ୍ପିକର୍‌ର ସତସତିକା ଗର୍ଜନ ସାମ୍‌ନାରେ ସାରଙ୍ଗର ପତଆର୍ ମାତ୍ର । କିଛି ହେବନାହିଁ । ପ୍ରେ ଜିତିବ ସେ ଜିତିବ । ମଝିରେ ଆମେ ଲୋକହସା ହେବା । କିନ୍ତୁ ସେତିକିବେଳେ "ଶଳା ପାଣ୍ଡେ" ପଦଟି ଉଚ୍ଚାରଣ କଲେ ଦେହମନରେ ଜୋର୍ ଆସିଯାଏ । ନରେଶ ହାତ ମୁଠେଇ ଉଠିଯାନ୍ତି ଉପରକୁ, କମ୍ପା ଟେବୁଲ ଉପରେ ବାଡ଼ାନ୍ତି, କହନ୍ତି—ପ୍ରିନ୍‌ସିପ୍‌ଲ୍ ! ଅସଲ ହେଉଛି ପ୍ରିନ୍‌ସପଲ୍ । ହାରିଜିତରେ ଯାଏ ଆସେ ନାହିଁ । ଶଳା— । ଅନ୍ୟମାନେ ପାଳି ଧରନ୍ତି । ଭୁଷା ଓପସ୍ୱରକ ମତେ ବସେଇ ବସେଇ ଶା-ଆ-ଳା ବୋଲି କୁହେ, ବଡ଼ମାନେ ହସିଉଠି ତା'କୁ ଚୁପ୍ କରିବାପାଇଁ । ଗଣେଶ୍ୱର ବାବୁ ମଧ୍ୟ ନିଶବ୍ଦରେ ପଦଟିକୁ ପଇଟେଇବାକୁ ଚେଷ୍ଟା କରନ୍ତି, କିନ୍ତୁ ତାଙ୍କର ନିକଳନିଶ୍ୱାସ ପୁଷି ହଲେଇ କଥା ମନେପଡ଼େ । ସେ ଅବେଳାରେ ହସି ଉଠନ୍ତି ।

କାହାର ଜାଣିବାର ଉପାୟ ନଥିଲା, ସେ ମନେ ମନେ ସ୍ଥିର କରି ସାରିଲେଣି ଯେ ପୁଅ ହାରିବ । ସମ୍ଭବତଃ ଅମାନତ ଉଡ଼ି ଯାଇପାରେ । ଭଲ ହେବ, ତା'ହେଲେ ସେ ଏଇ ଧନ୍ଦା ଛାଡ଼ିଦେବ । ଆଉ ମୁଁ ତାକୁ ତା'ର ପିଲାଦିନର ସଉକ ଫଟୋଗ୍ରାଫିରେ ଭର୍ତ୍ତି କରେଇବି । କିମ୍ବା ଗୋଟାଏ ଦୋକାନ ଖୋଲ୍ । ବ୍ୟାଙ୍କ୍‌ରେ ଯାହା କିଛି ବାକି ଅଛି ସବୁ ବଢ଼େଇଦେବି ତା' ହାତରେ । ମୋର କୋଉ ନଅଟା କି ଛଅଟା ଅଛନ୍ତି କି···

ଭୋଟଗ୍ରହଣର ପୂର୍ବ ରାତି । ରାତି ଅଧରେ ଗଣେଶ୍ୱରବାବୁଙ୍କ ନିଦ ଭାଙ୍ଗିଗଲା । ମନେହେଲା ସମୁଦ୍ର ମାଡ଼ି ଆସୁଛି ଘରଆଡ଼େ । କ୍ଷମଣକେ ବୁଝିଲେ ଯେ ସମୁଦ୍ର ନୁହେଁ, ମଣିଷଙ୍କ କୋଳାହଳ । ତଥାପି ସେ ବିଛଣା ଛାଡ଼ି ଉଠି ନ ଥାଆନ୍ତେ, କାରଣ ଘରେ ଏମିତିକା ରାତି ଅଧିଆ ପାଟିଗୋଳ ନୂଆ ନୁହେଁ ଆଜିକାଲି । କିନ୍ତୁ ଯେତେବେଳେ ନନ୍ଦମା "ମିଛ ! ମିଛ !" ବୋଲି ଗୋଟାଏ କଳକଳଆ ରଡ଼ି କଲେ ଓ ତା' ସାଙ୍ଗକୁ ଭୁଷା ବଡ଼ ପାଟିରେ କାନ୍ଦି ଉଠିଲା, ପୂର୍ବେ ଯେମିତି କାନ୍ଦୁଥିଲା, ସେ ଆଉ ଶୋଇ ରହି

ପାରିଲେ ନାହିଁ । ଉଠିପଡ଼ି ପଚାରିଲେ ସେମାନଙ୍କ ପାଖରେ ଓ କ'ଣ ହେଲା କ'ଣ ହେଲା ବୋଲି ପଚାରି ବସିଲେ ।

କାହାରିଠାରୁ ଉତ୍ତର ମିଳିଲା ନାହିଁ । କେରାଣୀବାବୁଙ୍କ ପାଟିରୁ କଥା ବାହାରୁ ନଥିଲା । ସେ ଖାଲି ସ୍ତ୍ରୀ' ମୁହଁରୁ ତା ମୁହଁକୁ ଅନାଉଥାଆନ୍ତି ଓ ଗଳ ଗଳ କରି ଲୁହ ଢାଳୁଥାଆନ୍ତି । ଭୂଷା ତାରି କାନ୍ଦୁରି ମୁହଁକୁ ମାମିର ପଣତକାନରେ ଲୁଚୁଥାଏ, ଆଖିବୁଜା ହୋଇ ଘଷୁଥାଏ । ଏବଂ ନନ୍ଦମା ନଜକୁ ଛଡ଼େଇଆଣି ଗର୍ଜୁଥାଆନ୍ତି, ମୁଁ ଯିବି ମୋତେ ନେଇ ଚାଲ ବୋଲି ପାଟି କରୁଥାଆନ୍ତି । ଅନ୍ୟମାନେ ଏକାସାଙ୍ଗରେ କ'ଣ ସବୁ କହୁଥାଆନ୍ତି, କିଛି ବୁଝି ହେଉନଥାଏ । ତାଙ୍କ ଭିତରୁ ଜଣେ ଅଗ୍ରଣୀ ହୋଇ ସମସ୍ତଙ୍କୁ ଥାପୁଡ଼େଇ ଚାଲିଥାଏ, ଗଣେଶ୍ୱର ବାବୁଙ୍କୁ ମଧ୍ୟ ବାଦ୍ ଦେଲାନାହିଁ ।

କେତେବେଳକେ ଗଣେଶ୍ୱରବାବୁ ବୁଝିଲେ ଯେ ପୁଅକୁ କିଏ ମାଡ଼ ମାରି ଲହୁଲୁହାଣ କରି ଛାଡ଼ି ଦେଇଛି ରାସ୍ତା କଡ଼ରେ । ନା, ତାକୁ ଡାକ୍ତରଖାନାକୁ ନେଇଗଲେଣି । ଇଞ୍ଜିନ୍ ନଶାଣି ପତାକାଗୁଡ଼ା ଖେଳେଇ ହୋଇପଡ଼ିଥିଲା ତା' ଦେହ ପାଖରେ । ରକ୍ତ ବହୁଥିଲା ? କେତେ ରକ୍ତ ? କଥା କହୁନାହିଁ ?--- କେହି ସଠିକ୍ ଉତ୍ତର ଦେଉ ନାହାନ୍ତି ।

କାହିଁକି ଦେବେ ନାହିଁ ? ମୁଁ କ'ଣ ତା' ବାପା ନୁହେଁ ?

ମୁଁ କାନ୍ଦି ପାରିବି ନାହିଁ । କାହିଁକନା ମୋ'ର ଏତେ ରାଗ ଆସୁଛି ଯେ ଛାତି ଫାଟିଗଲାପରି ଲାଗୁଛି । ଆଖିରୁ ଲୁହ ବାହାରିବ ନାହିଁ । ସେଇଠୁଁ ସେ କ୍ରୋଧର ନମୁନା ଦେଖାଇ ଭଙ୍ଗା ଗଳାକୁ ଯଥାସମ୍ଭବ ଉଚ୍ଚେଇ କହିଲେ—

"ମୋତେ କୁହ । କୋଉ ପାର୍ଟି ଏ କଥା କହିଛି ? ସେ କ'ଣ କାହାର ଭୋଟ ଛଡ଼େଇ ନେଉଥିଲା ? ସତରେ ଜିତି ଯାଉଥିଲା ? କୋଉ ଶଳା"—ଗଣେଶ୍ୱରବାବୁଙ୍କ ପାଟିରୁ ଶଳା ଶବ୍ଦ ବୋଧହୁଏ ଆଗରୁ କେହି କେବେ ଶୁଣି ନଥିଲେ ।

କ୍ରୋଧକାନ୍ଦଣାର ଏଇ ରୋଜ ଭିତରେ ମଧ୍ୟ ଜଣେ କାଏ ହପ୍ପି ପକାଇଲା । କହିଲା, "ମଉସା, ପ୍ରକୃତରେ ନରେଶ ବର୍ମାଙ୍କୁ କେହି ମାରିବାକୁ ଚାହିଁ ନଥିଲେ । ଚାହିଁଥିଲେ ଜଣେ ପ୍ରାର୍ଥୀ ମରିଯାଉ । ତା’ ହେଲେ ଭୋଟ ଦିଆ ବନ୍ଦ ହୋଇଯିବ । ତାଙ୍କ ଦଳ ଜିତିବ ଆରଥରକୁ ।"

"ଏଁ ?"

ଗଣେଶ୍ୱରବାବୁ ବଲବଲ ହୋଇ ତା’ ମୁହଁକୁ ଚାହିଁଲେ । ତାଙ୍କ ମୁଣ୍ଡରେ କିଛି ପଶିଲା ନାହିଁ । ଭଗବାନ, ଏ୍ୱା’ର ମାନେ କଅଣ ? ଭୁଙ୍ଗାଟାକୁ ମାରିଦେବେ ମୋ ପୁଅକୁ ? ?

ଡାକ୍ତରଖାନାକୁ ଯିବା ବାଟଯାକ ସେ ଆଉ କିଛି ପ୍ରଶ୍ନ ପଚାରିଲେ ନାହିଁ । ଗୁମ୍ ହୋଇ ବସି ରହିଲେ, ସେତିକି ଏମାନଙ୍କୁ ପଚାରି ଲାଭ ନାହିଁ । ପୁଅକୁ କ’ଣ କହିବେ ବୋଲି ଠିକ କରି ରଖୁଛନ୍ତି ମନେ ମନେ ।

ଡାକ୍ତରଖାନାରେ ଏକପ୍ରକାର ଆଶ୍ୱାସନା ମିଳିଲା ଯେ, ରୋଗୀ ବଞ୍ଚିଯାଇ ପାରେ । କିନ୍ତୁ ଗଣେଶ୍ୱର ବାବୁଙ୍କ ଉପରେ ହସର ଉଦ୍ରେକ ହେଲାନାହିଁ, ଯେମିତିକି ସେ ଏମାନଙ୍କ କଥାରେ ବିଶ୍ୱାସ କରନ୍ତି ନାହିଁ । ପୁଅର ଔଷଧ ବାପକୁ ଜଣା ।

ନିମୀଳିତଚକ୍ଷୁ ରୋଗୀର ବେଡ୍ ପାଖରେ ସେ ଦୁରେଇ ହୋଇ ଛିଡ଼ା ହେଲେ । ସଭିଏଁ ନିୟମ ଅନୁଯାୟୀ ଜଣକ ପରେ ଜଣେ ତା’ ପାଖକୁ ଯାଇ ଫେରି ଆସିଲା ପରେ ଯାଇଁ ଗଲେ । ପୁଅର ଦେହରେ ହାତ ରଖିଲେ । ସେଇଠୁଁ ଏକ ଅସମ୍ଭାଳ ଆବେଗରେ ତାଙ୍କ ପାଟି ପାକୁ ପାକୁ ହେଲା । ହାତ ଧୀରେ ଧୀରେ ପଡ଼ିଲା ଉଠିଲା । ସେତିକି ସେ କହୁଛନ୍ତି—ଧୋରେ ବାପ୍ପା···

ଭାଗ୍ୟ ଭଲ, ପରିବାର ମଧ୍ୟରୁ କେହି ତାଙ୍କର ଏଇ କାରବାର ଦେଖି ପାରିନଥିଲେ । ନହେଲେ ତାଙ୍କୁ ଟାଣି ଟାଣି ବାହାରକୁ ନେଇ ଆସି ଥାଆନ୍ତେ ଓ ଚେତା ନଆସିବା ଯାଏ ପୁଅର ପାଖ ମାଡ଼ିବାକୁ ଦେଇ ନ ଥାଆନ୍ତେ ।



# ଲେଖକଙ୍କର ଅନ୍ୟାନ୍ୟ ଗ୍ରନ୍ଥ

**ଗଳ୍ପ ସଂକଳନ** (ଓଡ଼ିଆ) : ଭଂଗା ଖେଳନା, ଘରବାହୁଡ଼ା, ଲକ୍ଷ ବିହଂଗ, ମଣିହରା, ଠାକୁରଘର, ନାଲିଗୁଲୁଗୁଲୁ ସାଧବ ବୋହୂ, ଗମନ, ଖେଳର ନାଆ ରଂଗ, ଭଗ୍ନ ପାଉଁଶ ।

**କବିତା ସଂକଳନ** (ଓଡ଼ିଆ) : ମିନ୍ନ କାମନା ।

**ପ୍ରବନ୍ଧ ସଂକଳନ** (ଓଡ଼ିଆ) ଲେଖକର ସଂସାର ।

**ଗଳ୍ପ ସଂକଳନ** (ଇଂରାଜୀ) Death of Indian, Wild Peacock and other Stories

**କବିତା ସଂକଳନ** (ଇଂରାଜୀ) : Faces in the Dark.